# ଚର୍ଚ୍ଚାରେ

(ନିଜସ୍ୱ ସ୍ତମ୍ଭ ଓ ପ୍ରବନ୍ଧ ସଙ୍କଳନ)

ଗୌରାଙ୍ଗ ଚରଣ ପରିଡ଼ା

ପ୍ରେମଶୀଳା ପ୍ରକାଶନୀ

# ଚର୍ଚ୍ଚରେ

ଲେଖକ :
ଗୌରାଙ୍ଗ ଚରଣ ପରିଡ଼ା
ସର୍ବୋଦୟନଗର ପୁରୀ-୨ (ଓଡ଼ିଶା)
୯୮୬୧୪୬୯୩୨୮



ପ୍ରକାଶକ :
ପ୍ରେମଶୀଳା ପ୍ରକାଶନୀ
ସର୍ବୋଦୟନଗର ପୁରୀ-୨ (ଓଡ଼ିଶା)
(୦୬୭୫୨)୨୫୧୬୦୦

ପ୍ରଥମ ସଂସ୍କରଣ :
ଡେଲାଙ୍ଗ ମହୋତ୍ସବ
ଏପ୍ରିଲ, ୨୦୧୭

ଅକ୍ଷର ବିନ୍ୟାସ :
ଶ୍ୱେତପଦ୍ମା କମ୍ପ୍ୟୁଟର୍ସ
ସର୍ବୋଦୟନଗର, ପୁରୀ

ମୁଦ୍ରଣ : ବିଶ୍ୱମୁକ୍ତି ପବ୍ଲିକେଶନ
ଭୁବନେଶ୍ୱର-୨୩
ମୋ: ୯୪୩୮୩୬୨୩୯୩

ମୂଲ୍ୟ : ଟ.୨୦୦/-
(ଦୁଇଶହ ଟଙ୍କା ମାତ୍ର)



# Charchare

*Writer:*
**Gourang Charan Parida**
Sarbodayanagar,
Puri-2 (Odisha)
9861469328



*Publisher:*
**Premasila Prakashani**
Sarbodayanagar,
Puri-2 (Odisha)
(06752) 251600

*First Edition:*
**Delanga Mahostava**
**April, 2017**

*DTP:*
**Swetapadma Computers**
Sarbodayanagar,
Puri-2 (Odisha)

*Printer:*
Vishwamukti Publication
Bhubaneswar-23

**Price : ₹ 200/-**
**(Rupees Two Hundred Only)**

# ଲେଖକୀୟ ଅଭିମତ

ଏ ପୁସ୍ତକରେ ସନ୍ନିବେସିତ ସମସ୍ତ ପ୍ରବନ୍ଧ ମୋର ନିଜସ୍ୱ । ଦୈନିକ ଓଡିଆ ଖବର କାଗଜ,'ଓଡିଶା ଭାସ୍କର'ରେ 'ଚର୍ଚ୍ଚାରେ' ନାମକ ଏକ ସ୍ତମ୍ଭରେ ଏ ସବୁ ପ୍ରବନ୍ଧ ପୂର୍ବରୁ ପ୍ରକାଶ ପାଇସାରିଛି ।

ଚର୍ଚ୍ଚାରେ ଏହି କାଗଜରେ ଦୀର୍ଘ ଆଠ ବର୍ଷ ଧରି ମୋର ଏକ ବେଶ୍ ପରିଚିତ ସାପ୍ତାହିକ ସ୍ତମ୍ଭ ଥିଲା । ଏଥିରେ ପ୍ରକାଶିତ ପ୍ରାୟ ଚାରି ଶହ ପ୍ରବନ୍ଧ ଭିତରୁ ଏ ପୁସ୍ତକ ପାଇଁ ସେଥିରୁ ଅଳ୍ପ କିଛି ବାଛିଛି । ଓଡଶା ଭାସ୍କରର ତତ୍‌କାଳୀନ ସମ୍ପାଦକ ଶ୍ରୀଯୁକ୍ତ ଭାସ୍କର ପରିଛା ଏ ସବୁ ସ୍ତମ୍ଭକୁ ନେଇ ଏକ ପ୍ରବନ୍ଧ ସଂକଳନ କରିବାକୁ ଅନେକ ସମୟରେ ପରାମର୍ଶ ଦେଉଥିଲେ ଏବଂ ଏଥିପାଇଁ ସମସ୍ତ ସାହାଯ୍ୟ କରିବାକୁ ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ । ଡେରି ହେଲେ କାଳେ ହୁଏତ ଅନେକ ପ୍ରକାଶିତ ସ୍ତମ୍ଭ ତା'ର ପ୍ରାସଂଗିକତା ହରାଇପାରେ, ଏ ଆଶଙ୍କା ଥିଲା । ସୁତରାଂ ସବୁ ସମୟ ପାଇଁ ପ୍ରାସଙ୍ଗିକତାକୁ ଦୃଷ୍ଟିରେ ରଖି ଏ ସଂକଳନ ନିମନ୍ତେ ପ୍ରବନ୍ଧ ଚୟନ କରିଛି । ପ୍ରକାଶ ଥାଉକି, 'ଚର୍ଚ୍ଚାରେ' ମୋର ଚତୁର୍ଥ ପୁସ୍ତକ । ଆଶାକରେ, ସାମାଜିକ ତଥା ସମସାମୟିକ ଘଟଣାବଳୀ ଉପରେ ରୁଚି ରଖିଥିବା ପାଠକ ବନ୍ଧୁମାନଙ୍କୁ ଏ ପୁସ୍ତକ ନିଶ୍ଚୟ ଭଲ ଲାଗିବ । 'ସଂବାଦ ସାହିତ୍ୟ' ଧାରାରେ ଏ ପୁସ୍ତକ ମୋର ଅନ୍ୟ ଏକ ସୃଷ୍ଟି । ଗଦ୍ୟ ଉପସ୍ଥାପନାର ମୋର ଏକ ସ୍ୱତନ୍ତ୍ର ଶୈଳୀ ଏହା ବହନ କରେ । 'ସମୟ ସୁଅ' ମୋର ପ୍ରଥମ୍ ଏତାଦୃଶ ରଚନା ଥିଲା ।

କୌଣସି ଏକ ଖବର କାଗଜର ସଂପାଦକୀୟ ପୃଷ୍ଠାରେ ସ୍ତମ୍ଭ ଲେଖିବା ଏହା ଏକ ସ୍ୱତନ୍ତ୍ର ଲେଖା କାରିଗରି । ଏକ ନିଆରା କୌଶଳ । ନିର୍ଦ୍ଦିଷ୍ଟ ସ୍ଥାନ ଭିତରେ ଏକ ପଠନଯୋଗ୍ୟ ଏବଂ ସର୍ବ ଗ୍ରହଣୀୟ ପ୍ରବନ୍ଧଟିଏ ଲେଖିବାପାଇଁ ଏଥିରେ ବାଧ୍ୟତା ଥାଏ । ଆନକ ସମୟରେ ଏଥିରେ ସମ୍ବାଦ ଜନୀତ ତଥ୍ୟ ଥାଏ । ତତ୍ତ୍ୱ ବି ଥାଏ । ସେଇଥିପାଇଁ ପ୍ରତି ସ୍ତମ୍ଭ ଏକ ପ୍ରବନ୍ଧ, ପ୍ରତି ପ୍ରବନ୍ଧ କିନ୍ତୁ ସ୍ତମ୍ଭ ନୁହେଁ । ସାହିତ୍ୟର ଏକ ନୂଆ ଧାରା ଏ ସ୍ତମ୍ଭ ଲେଖା । ସୁତରାଂ ସମ୍ବାଦ ସାହିତ୍ୟ ।

ଏ ପୁସ୍ତକ ପ୍ରକାଶନରେ ଅକୁଣ୍ଠିତ ସାହାଯ୍ୟ ପାଇଁ ବନ୍ଧୁ ବିମଳ ପ୍ରସାଦ ଦାସ, ଶ୍ରୀକାନ୍ତ ମହାନ୍ତି ଓ ବିକାଶ ପଟ୍ଟନାୟକଙ୍କୁ ଧନ୍ୟବାଦ ଜଣାଉଛି ।



# ସୂଚୀପତ୍ର





# ପୁନଶ୍ଚ ପାଞ୍ଚାଳି

କନ୍ୟା ଭ୍ରୂଣ ହତ୍ୟା ନେଇ ଏବେ ଏକ ପ୍ରଚାରପତ୍ର ଦେଖିବାକୁ ମିଳିଲା। ପ୍ରଚାରପତ୍ରରେ ଲେଖା ଥିଲା – 'ପୁଅମାନେ ସାବଧାନ ! ଏଣିକି ବାହା ହେବାକୁ ଆଉ ଝିଅ ମିଳିବେନି – ମେନ୍ ବି ଆୱାର ! ବ୍ରାଇଡ୍‌ସ୍ ଗେଟିଙ୍ଗ୍ ସ୍କାର୍ସ।'

ପ୍ରଚାରପତ୍ରରେ ଲେଖାଟି କିଛିଙ୍କ ପାଇଁ ଟିକିଏ ବିରକ୍ତିକର ହେଲେ ବି ଏହା ଥିଲା ବେଶ୍ ଭାବ ଉଦ୍ଦୀପକ। ଏହା ସତ ଯେ ବିବାହଯୋଗ୍ୟ ଝିଅଙ୍କର ଏଣିକି ଅଭାବ ଦେଖାଦେବ ଏବଂ ବିବାହ ତଥା ପରିବାର ନେଇ ଆଗାମୀ ସମାଜରେ ଏହା ଏକ ସମସ୍ୟା ହୋଇଯିବ।

ଜନଗଣନାର ପରିସଂଖ୍ୟାନ କହେ – ଝିଅଙ୍କ ସଂଖ୍ୟା ପୁଅଙ୍କ ତୁଳନାରେ କ୍ରମଶଃ କମୁଛି। କାରଣ ହେଉଛି, ଝିଅଟିଏ ଜନ୍ମ ପୂର୍ବରୁ ଗର୍ଭାଶୟରେ ଏହାର ଲିଙ୍ଗ ଚିହ୍ନଟ କରି ହତ୍ୟା ହେଉଛି ଏବଂ ବାଲ୍ୟାବସ୍ଥାରେ ଅବହେଳିତ ହୋଇ ଶିଶୁ କନ୍ୟାର ମୃତ୍ୟୁ ସଂଖ୍ୟା ବଢୁଛି। ଝିଅଟି ଯେମିତି ଏଠି ଏକ ଅଲୋଡ଼ା ପଦାର୍ଥ।

କନ୍ୟା ଭ୍ରୂଣର ଆତ୍ମଚିତ୍କାର ନେଇ ଟେଲିଭିଜନ୍‌ମାନଙ୍କରେ ସୁନ୍ଦର ଏକ ବିଜ୍ଞାପନଟିଏ ସଂପ୍ରତି ଦିଆ ହୋଇଛି । ସେଇ ବିଜ୍ଞାପନର ସାରାଂଶ ଏଇଠି ମନେ ପକାଇ ଦେବାକୁ ଇଚ୍ଛା।

ଭ୍ରୂଣ ଲିଙ୍ଗ ଚିହ୍ନଟ ପାଇଁ ଉଦ୍ଦିଷ୍ଟ ଥିବା ଏକ ଡାଇଗ୍ନୋଷ୍ଟିକ୍ ଅଲଟ୍ରାସାଉଣ୍ଡ୍ କେନ୍ଦ୍ରରେ ଡାକ୍ତର ଜଣକ ଜଣେ ମହିଳାଙ୍କ ଗର୍ଭ ପରୀକ୍ଷା କରୁଥିଲେ। କନ୍ୟା ଭ୍ରୂଣ ଚିହ୍ନଟ ହେଲେ ଏହାର ଗର୍ଭପାତ ହେବ ବୋଲି ସ୍ଥିର ହୋଇଥିଲା। ହଠାତ୍ ଷ୍ଟେଥୋ ଦେଇ କଅଁଳ ସ୍ୱରଟିଏ ଡାକ୍ତରଙ୍କୁ ଶୁଭିଲା। ସ୍ୱର ଥିଲା – 'ଡାକ୍ତର ଅଙ୍କଲ୍ ! ମୁଁ ଗୋଟିଏ କନ୍ୟା ଭ୍ରୂଣ। ଆଉ ପରୀକ୍ଷାର ଆବଶ୍ୟକତା ନାହିଁ। ଏ ଷ୍ଟେଥୋ ମୋର ଡାଡିଙ୍କୁ ଦିଅନ୍ତୁ। ଡାଡି ଆପଣଙ୍କ ପାଖରେ ଅଛନ୍ତି ନା' ?

ଡାକ୍ତର ଆଶ୍ଚର୍ଯ୍ୟ ହୋଇଗଲେ। ଆଉଥରେ ଷ୍ଟେଥୋ ପକାଇ ଗର୍ଭପରୀକ୍ଷା କଲେ। ପୁଣି ସେଇ ସ୍ୱର ଶୁଭିଲା – 'ଡାଡିଙ୍କୁ ଷ୍ଟେଥୋ ଦିଅନ୍ତୁ ପ୍ଲିଜ୍।'

ଡାକ୍ତର ବାବୁ ପାଖରେ ଛିଡ଼ା ହୋଇଥିବା ଯୁବକଙ୍କୁ ତାଙ୍କର ଷ୍ଟେଥୋ ଦେଲେ ଏବଂ ଗର୍ଭାଶୟରୁ ଆସୁଥିବା ସ୍ୱରକୁ ଶୁଣିବାକୁ ଇଶାରା କଲେ।

ଏଥର କିନ୍ତୁ କନ୍ୟା ଭ୍ରୂଣର ଆବେଦନ ବେଶ୍ ଆବେଗିକ ହେଲା। ଭ୍ରୂଣଟି କହୁଥିଲା, 'ଡାଡି ! ମୁଁ ତୁମରି ଝିଅ । ମୋତେ ତୁମେ ମାର ନାହିଁ, ଡାଡି । ମୁଁ ଏ ପୃଥିବୀର ଆଲୋକ ଦେଖିବାକୁ ଚାହେଁ। ପାଣିର ସ୍ୱାଦ ଚାଖିବାକୁ ଚାହେଁ । ପବନର ବାସ୍ନା ବାରିବାକୁ ଚାହେଁ । ତୁମ କୋଳରେ ଅଳିଅଳରେ ବଢ଼ିବାକୁ ଚାହେଁ। ତୁମର ମୁଁ ଗେହ୍ଲା ଝିଅଟିଏ ହେବି, ଡାଡି ! ମୋତେ ଦୟା କରି ହତ୍ୟା କର ନାହିଁ। ଡୋଣ୍ଟ କିଲ୍ ମି ଡାଡ୍ ।'

ଭ୍ରୂଣ କନ୍ୟାର ଆବେଗିକ ଆର୍ତ୍ତଚିତ୍କାରର ସନ୍ଦେଶ ସୋନୋଗ୍ରାଫିକ୍ ସେଣ୍ଟରରେ କନ୍ୟା ହତ୍ୟା ପାଇଁ ଛିଡ଼ା ହୋଇଥିବା କେବଳ ସେ ପିତାମାତାଙ୍କ ପାଇଁ ନଥିଲା। କନ୍ୟା ଶିଶୁଟିକୁ ଅବାଂଛିତ କହି ଭ୍ରୂଣ ଅବସ୍ଥାରେ ତା'ର ହତ୍ୟା ପାଇଁ ଯେଉଁମାନେ ମାନସିକ ପ୍ରସ୍ତୁତିରେ ଅଛନ୍ତି ତାଙ୍କ ନିମନ୍ତେ ମଧ୍ୟ ଏହାଥିଲା ଏକ ଆକୁଳ ଆବେଦନ।

ହଁ, ପାଠକ ବନ୍ଧୁ ! ଭ୍ରୂଣ ହତ୍ୟା ଉପରେ ଗବେଷଣା କରୁଥିବା ଗବେଷକମାନେ କୁହନ୍ତି - ୧୯୮୧ରୁ ୧୯୯୧ ମସିହା ଭିତରେ ପ୍ରାୟ ପଚିଶ ଲକ୍ଷ କନ୍ୟା ଭ୍ରୂଣର ଏଠି ହତ୍ୟା ହୋଇଛି। ଏଇ ଧାରା କ୍ରମଶଃ ବଢ଼ିବାରେ ବି ଲାଗିଛି। ଜନ୍ମ ପୂର୍ବରୁ କନ୍ୟାକୁ ହତ୍ୟା କରି ଝିଅର ଭବିଷ୍ୟତ ଚିନ୍ତାରୁ ମୁକ୍ତି ପାଇଁ ଏହା କୁଆଡ଼େ ଏକ ସହଜ ମାଧ୍ୟମ। ବାସ୍ତବରେ ଇଏତ ଏକ ନରହତ୍ୟା ! ନରହତ୍ୟାର ଆଉ ସଂଜ୍ଞା କ'ଣ ?

ଗତ ଜନଗଣନା ଅନୁଯାୟୀ ଭାରତରେ ପ୍ରତି ଶହେ ପୁଅଙ୍କ ଭିତରେ ଝିଅଙ୍କ ସଂଖ୍ୟା ହେଉଛି ତେୟାନବେ। ପୃଥିବୀରେ ପ୍ରାୟ ସବୁ ଦେଶରେ ଏହି ସଂଖ୍ୟା ହେଉଛି ୧୦୦ : ୧୦୫। ଅର୍ଥାତ୍ ପ୍ରତି ଶହେ ପୁଅରେ ଝିଅଙ୍କ ସଂଖ୍ୟା ଶହେ ପାଞ୍ଚ। ଉତ୍ତର ଭାରତରେ ପୁଅ ଏବଂ ଝିଅଙ୍କ ଭିତରେ ଥିବା ଆନୁପାତିକ ସଂଖ୍ୟା ବେଶ୍ ଉଦ୍‌ବେଗଜନକ। ଏଠାରେ ପୁଅଙ୍କଠାରୁ ଝିଅମାନେ ପ୍ରାୟ ଦଶ ପ୍ରତିଶତ କମ୍ ହେଲେଣି। ଦିଲ୍ଲୀ, ପଞ୍ଜାବ, ହରିୟାଣା, ହିମାଞ୍ଚଳ ପ୍ରଦେଶ, ଜମ୍ମୁ ଏବଂ କାଶ୍ମୀର, ଗୁଜୁରାଟ, ମହାରାଷ୍ଟ୍ର, ରାଜସ୍ଥାନ, ମଧ୍ୟପ୍ରଦେଶ ଏବଂ ତାମିଲନାଡୁ ପରି ରାଜ୍ୟରେ ଝିଅ ଜନ୍ମରେ ହ୍ରାସ ଏତେ ବ୍ୟାପକ ଯେ ଏହା ଏ ଦେଶରେ ପୁଅଝିଅଙ୍କ ସଂଖ୍ୟାକୁ ବେଶ୍ ଅସନ୍ତୁଳିତ କରି ଦେଇଛି। ଜାତୀୟ ମହିଳା କମିଶନ ଏବେ ଚେତାବନୀଟିଏ

ଦେଇଛନ୍ତି - ଏହି ଦଶନ୍ଧିର ଶେଷ ବେଳକୁ ଝିଅଙ୍କ ସଂଖ୍ୟା ଏତେ କମିଯାଇଥିବ ଯେ ପ୍ରାୟ ଦୁଇକୋଟି ତିରିଶ ଲକ୍ଷ ପୁଅ ତାଙ୍କର ଜୀବନସାଥୀ ପାଇବାରୁ ବଞ୍ଚିତ ହେବେ। ଝିଅଙ୍କ ପ୍ରତି ବିମୁଖତା ଏବେ କେବଳ ଆଜିର ଘଟଣା ନୁହେଁ। ଭାରତର ପୁରୁଣା ପରମ୍ପରା ଏବଂ ସଂସ୍କୃତି ମଧ୍ୟ ଏଥିପାଇଁ ଦାୟୀ। ଝିଅ ଏବଂ ପୁଅ ଭିତରେ ଭାରତରେ ବେଶି ପାତରଅନ୍ତର କରାଯାଏ ବୋଲି ସାରା ପୃଥିବୀରେ ଏ ଦେଶ ବିରୁଦ୍ଧରେ ଏକ ଅପବାଦ ଅଛି।

ଝିଅଙ୍କୁ ନେଇ ଥିବା ଧାରଣା ଏଠି ଠିକ୍ ଏମିତି-ଝିଅ ଏଠି ପର ଧନ। ଅନ୍ୟ ଘରକୁ ବାହା ହୋଇଯିବାକୁ ଏହାର ଜନ୍ମ ବୋଲି ବିବେଚନା କରାଯାଏ ଏବଂ ବାହାଘରରେ ଯୌତୁକ କଥା ଭାବି ବାପ-ମା'ଙ୍କର ନିଦ ବି ଉଡ଼ିଯାଏ ଏବଂ ବାହା ନହୋଇପାରି ଘରେ ଝିଅଟିଏ ରହିଗଲେ ପରିବାର ପାଇଁ ଏହା ଏକ ବୃହତର ସମସ୍ୟା।

ଅନ୍ୟ ପକ୍ଷରେ ଏ ଧାରଣା ମଧ୍ୟ ଥାଏ ଯେ ପୁଅ ହେଉଛି ଘରର ସମ୍ପତ୍ତି। ପରିବାରର ଆୟ ବୃଦ୍ଧିରେ ପୁଅ ହିଁ ଏକ ସଫଳ ସହାୟକ। ମରିଗଲା ପରେ ପୁଅ ମୁଖାଗ୍ନି ଦେବ। ପୂର୍ବ ପୁରୁଷଙ୍କୁ ପିଣ୍ଡ ଦେବ। ଝିଅର ତେଣୁ ଦରକାର କ'ଣ?

ଏପରି ଏକ ସନାତନୀ ଅମାନବୀୟ ଚିନ୍ତା ଭାରତୀୟ ମାନସିକତାକୁ ଅନେକ ବର୍ଷ ଧରି ଜାବୁଡ଼ି ରଖିଛି। ଫଳ କେବଳ ଏଇଆ ହୋଇଛି, କନ୍ୟା ଭ୍ରୂଣ ହତ୍ୟା ବିନା ସଂକୋଚରେ ହେଉଛି। ଔଷଧ ତଥା ସୁଷମ ଖାଦ୍ୟ ନ ଦେଇ କନ୍ୟା ଶିଶୁକୁ ଅବହେଳିତ କରିବାର ନଜିରର ଆଉ ଅଭାବ ରହୁନି।

ସୁତରାଂ କନ୍ୟା ବିରୋଧୀ ମାନସିକତା ହିଁ ଏଠି ପୁଅଙ୍କ ସଂଖ୍ୟା ବଢ଼େଇବାରେ ଲାଗିଛି ଏବଂ କନ୍ୟା ସଂଖ୍ୟା ହ୍ରାସ କରି ବିବାହ ପାଇଁ ଝିଅଙ୍କ ଅଭାବ ଭାରତରେ ଏକ ଆସନ୍ନ ସାମାଜିକ ସମସ୍ୟାଟିଏ ସୃଷ୍ଟି କରିଦେଇଛି।

ଏ ସମ୍ପର୍କରେ ସାଧାରଣରେ ପ୍ରଶ୍ନ ଆସେ, ଝିଅଙ୍କ ସଂଖ୍ୟା ଯଦି କମ୍ ହେଉଛି ବିବାହ ବଜାରରେ ଝିଅମାନେ ସଂପ୍ରତି ବଳକା ହୋଇ ଯାଉଛନ୍ତି କିପରି ? ପୁଅ ଅଭାବରୁ ଅନେକ ଝିଅ ତ ବାହା ହୋଇପାରୁ ନାହାନ୍ତି ? କାରଣ କ'ଣ ?
ବିଶ୍ୱବ୍ୟାଙ୍କର ମନିକା ଦାସଗୁପ୍ତ ଏହାର ଉତ୍ତର ଦେଇଛନ୍ତି ତାଙ୍କ ରିପୋର୍ଟରେ । ସେ କହନ୍ତି, ଏ ସମସ୍ୟା, ଏ ପଜ୍‌ଲ୍‌ର ଉତ୍ତର ହେଉଛି ପୁଅଝିଅଙ୍କ ବିବାହ ବୟସରେ ଥିବା ପାର୍ଥକ୍ୟ - ଏଜ୍ ଗ୍ୟାପ୍।

ଦାସଗୁପ୍ତ, ଭାରତୀୟ ବିବାହ ମାର୍କେଟ୍‌ରେ ଥିବା ପୁଅଝିଅଙ୍କ ସ୍ଥିତି ଏବଂ ସମୟକୁ ନେଇ ତିନି ଭାଗରେ ବିଭକ୍ତ କରିଛନ୍ତି। ପ୍ରଥମଟି ହେଉଛି ଉଣେଇଶ ଶତାବ୍ଦୀ; ଦ୍ୱିତୀୟଟି ବିଂଶ ଶତାବ୍ଦୀ ଏବଂ ତୃତୀୟଟି ହେଉଛି ବର୍ତ୍ତମାନର ଏକବିଂଶ ଶତାବ୍ଦୀ।

୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ପୁଅଝିଅଙ୍କ ବିବାହ ବୟସରେ ତାରତମ୍ୟ ଥିଲା ୭ବର୍ଷ । ବିଂଶ ଶତାବ୍ଦୀରେ କିନ୍ତୁ ଏଥିରେ ପରିବର୍ତ୍ତନ ଆସିଲା। ୧୯୩୧ ମସିହା ସୁଦ୍ଧା ଏହା ୬ବର୍ଷ ହେଲା। ୧୯୮୧ ବେଳକୁ ୫.୫ବର୍ଷ; ୧୯୯୧ରେ ୪ବର୍ଷ ଏବଂ ବର୍ତ୍ତମାନ ବିବାହ ପାଇଁ ବୟସର ପାର୍ଥକ୍ୟ ତିନି ବର୍ଷରେ ଅଛି। ଏକା ବୟସର ପୁଅଝିଅଙ୍କ ବିବାହ ହେଲେ ଯେ ଝିଅଙ୍କର ଅଭାବ ଦେଖାଦିଅନ୍ତା, ମନିକା ତାଙ୍କ ରିପୋର୍ଟରେ କହିଛନ୍ତି।

୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତରେ ପୁଅଝିଅଙ୍କ ଜନ୍ମ ମୃତ୍ୟୁହାର ପ୍ରାୟ ଏକା ଥିଲା। ଜନସଂଖ୍ୟା ତେଣୁ ବଢୁନଥିଲା ଏବଂ ବିବାହ ବୟସରେ ଥିବା ପାର୍ଥକ୍ୟ ବିବାହ ଉପଯୋଗୀ ଝିଅଙ୍କ ସଂଖ୍ୟା କମ୍ କରିଦେଉଥିଲା। ସେଥିପାଇଁ ତ ପୁଅମାନେ ଯୌତୁକ ନ ମାଗି ସେବେ ଝିଅ ପରିବାରକୁ କନ୍ୟା ମୂଲ୍ୟ ବା ବ୍ରାଇଡ୍ ପ୍ରାଇସ୍ ଦେଉଥିଲେ। ବିଂଶ ଶତାବ୍ଦୀ ପ୍ରାରମ୍ଭରେ କିନ୍ତୁ ଏଇ ଧାରାରେ ପରିବର୍ତ୍ତନ ଆସିଲା। ସ୍ୱାସ୍ଥ୍ୟସେବାରେ ଉନ୍ନତି ହେବା ହେତୁ, ମୃତ୍ୟୁହାର କମିଲା ଏବଂ ଜନସଂଖ୍ୟାର ବୃଦ୍ଧି ହେଲା। ବିବାହ ବୟସରେ ପାର୍ଥକ୍ୟ ଯୋଗୁଁ ବିବାହ ବଜାରରେ ଝିଅଙ୍କ ସଂଖ୍ୟା ପୁଅ ସଂଖ୍ୟାଠାରୁ ଅଧିକ ହେଲା। ମନିକା ଏକ ଉଦାହରଣ ଦେଇ ସ୍ପଷ୍ଟ କରିଦିଅନ୍ତି – ପ୍ରତିବର୍ଷ ଜନସଂଖ୍ୟା ବୃଦ୍ଧି ଯୋଗୁଁ ୨୦ବର୍ଷୀୟ ଝିଅଙ୍କ ସଂଖ୍ୟା ୨୫ବର୍ଷୀୟ ପୁଅଙ୍କଠାରୁ ଅଧିକ ହୋଇଗଲା। ଅର୍ଥାତ୍ ୧୯୮୦ମସିହାରେ ଜନ୍ମ ହୋଇଥିବା ପୁଅଙ୍କ ସଂଖ୍ୟା ୧୯୮୫ ମସିହାରେ ଜନ୍ମ ହୋଇଥିବା ଝିଅଙ୍କଠାରୁ କମ୍ ହେଲା; ଯଦିଓ ପ୍ରତି ହଜାରେ ଶିଶୁକନ୍ୟାଙ୍କ ଜନ୍ମ ହାର ପୁଅଙ୍କଠାରୁ ଅଳ୍ପ ଥିଲା। ଏଇଠି ତେଣୁ ୧୯ଶତାବ୍ଦୀର କନ୍ୟାମୂଲ୍ୟ ବିଂଶ ଶତାବ୍ଦୀରେ ଏକ ବ୍ୟାପକ ଯୌତୁକ ପ୍ରଥାରେ ପରିଣତ ହୋଇଗଲା।

ଏକବିଂଶ ଶତାବ୍ଦୀରେ କିନ୍ତୁ ବିବାହ ବଜାରରେ ଝିଅଙ୍କ ଅଭାବ ହେବ, ଏହା ରିପୋର୍ଟରେ ଅଛି। ଏହାର ତିନୋଟି କାରଣ ଦିଆଯାଇଛି। ପ୍ରଥମଟି ହେଉଛି ଜନସଂଖ୍ୟା ବୃଦ୍ଧି; ଦ୍ୱିତୀୟଟି ହେଉଛି ବିବାହ ପାଇଁ ଏଜ୍ ଗ୍ୟାପ୍‌ରେ ହ୍ରାସ ଏବଂ

ତୃତୀୟଟି ପୁଅଙ୍କ ଅନୁପାତରେ ଝିଅଙ୍କ ସଂଖ୍ୟା କମ୍। ବିଡ଼ମ୍ବନା ଯେ ଝିଅଙ୍କ ସଂଖ୍ୟା ହ୍ରାସ ପାଇଁ କନ୍ୟା ଭ୍ରୂଣ ଏକମାତ୍ର ବଳିଷ୍ଠ କାରଣ ହୋଇଯାଇଛି।

ସୁତରାଂ ଏକ ସମ୍ବେଦନଶୀଳ ସମାଜ ପାଇଁ ଏହା ଏକ ଉଦ୍‌ବେଗର ବିଷୟ। ସୃଷ୍ଟିର ସନ୍ତୁଳନକୁ ଏହା ବିଗାଡ଼ି ଦେଇଛି।

ଚୀନ୍ ଏବଂ କୋରିଆରେ ଏକ ସନ୍ତାନ ବିଶିଷ୍ଟ ପରିବାର ଯୋଜନା ଏବଂ ନିର୍ବାଚିତ ଭାବେ କନ୍ୟା ଭ୍ରୂଣ ହତ୍ୟା ଝିଅ ସଂଖ୍ୟାକୁ ଏତେ କମ୍ କରିଦେଲାଣି ଯେ ବିବାହ ପାଇଁ ସମସ୍ୟାଟିଏ ସେଠି ସୃଷ୍ଟି କରିସାରିଲାଣି ଏବଂ ଆଶଙ୍କା ହେଲାଣି, ସେ ଦେଶରେ କୌଣସି ସମୟରେ ବହୁପତି ବିବାହ ପ୍ରଥା ବା ପଲିଆଣ୍ଡ୍ରିକୁ ଏକ ସାମାଜିକ ଅଭ୍ୟାସ ରୂପେ ଗ୍ରହଣ କରାଯାଇପାରେ।

ଏହା ସତ ଯେ ଭାରତ ଶାସନର ଦିଗ୍‌ଦର୍ଶକମାନେ ଝିଅ ସଂଖ୍ୟା ହ୍ରାସ ନେଇ ଚୁପ୍ ହୋଇ ବସି ନାହାନ୍ତି। ଯୋଜନା ଅନେକ ଅଛି। ଯୋଜନାର କାର୍ଯ୍ୟକାରିତା କିନ୍ତୁ ସନ୍ଦେହରେ ରହିଛି।

ଏ ଧରନ୍ତୁ ପ୍ରିନାଟାଲ ଡାଏଗ୍ନୋଷ୍ଟିକ୍ ଟେକ୍‌ନିକ୍ ଆକ୍ଟ କଥା। ଭ୍ରୂଣ ହତ୍ୟା ରୋକିବାକୁ ଏ ଆଇନ। କନ୍ୟା ଭ୍ରୂଣ ନିରୂପଣ କରୁଥିବା ଡାକ୍ତରଙ୍କୁ ଦଣ୍ଡ ଦେବାକୁ ଏଥିରେ ବ୍ୟବସ୍ଥା ଅଛି। ତଥାପି ବି କନ୍ୟା ଭ୍ରୂଣର ଚିହ୍ନଟ ଏବଂ ହତ୍ୟା ହେଉଛି। ଭ୍ରୂଣର ଲିଙ୍ଗ ନିରୂପଣ ପାଇଁ ନୂଆ ନୂଆ ବୈଜ୍ଞାନିକ ଯନ୍ତ୍ର ବାହାରୁଛି ଏବଂ ବର୍ତ୍ତମାନ ୫୦୦୦ ଟଙ୍କା ଖର୍ଚ୍ଚ କରିଦେଲେ ଯେ ଭବିଷ୍ୟତରେ ପାଞ୍ଚ ଲକ୍ଷ ରହିଯିବ ଏ ନେଇ ବିଜ୍ଞାପନମାନ ଡାଏଗ୍ନୋଷ୍ଟିକ୍ କେନ୍ଦ୍ର ଆଗରେ ଝୁଲୁଛି।

ହଁ, ଏ ଆଲୋଚନା ଆଉ ଦୀର୍ଘ କରିବାକୁ ଚାହେନି। ଏହା ଠିକ୍ ଯେ, ପୁରୁଷ ଏବଂ ସ୍ତ୍ରୀ ସଂଖ୍ୟାର ସମତାକୁ ନେଇ ଏ ସୃଷ୍ଟି ସୁନ୍ଦର ହୁଏ ଏବଂ ଯୌତୁକ ସମସ୍ୟାର ସମାଧାନ କରିପାରୁନାହୁଁ ବୋଲି ଯେ ଶିଶୁ କନ୍ୟା ଅବାଞ୍ଛିତ ହୋଇଯିବ ଏ ଧାରଣା କୌଣସି ଏକ ସୁସ୍ଥ ସମାଜ ପାଇଁ ଅନୁକୂଳ ମଧ୍ୟ ନୁହେଁ। ଗାର୍ଗି, ଲୋପାମୁଦ୍ରା ଏ ଦେଶରେ ବି ଜନ୍ମ ହୋଇଥିଲେ।ଏ ସବୁ ନାରୀ ଥିଲେ। ଏଇ ମହିୟସୀ ମହିଳାଙ୍କୁ ନେଇ ଆମେ ଗର୍ବ କରୁ। ଆମରି ଜନ୍ମଦାତ୍ରୀ ମା’ ବି ଜଣେ ନାରୀ।

ଏ ଶେଷ କଥା – କନ୍ୟା ଭ୍ରୂଣକୁ ହତ୍ୟା କର ନାହିଁ, ପ୍ଲିଜ୍। ଏ ନାରୀ-ମର୍ଯ୍ୟାଦାର ପ୍ରଶ୍ନ।



# ସମାନ ନାଗରିକ ସଂହିତା

**ସ**ମାନ ନାଗରିକ ସଂହିତା ନେଇ ଭାରତ ବର୍ଷରେ ଅନେକ ସମୟରେ ଚର୍ଚ୍ଚା ଚାଲେ । ଗୋଟିଏ ରାଷ୍ଟ୍ର ଗୋଟିଏ ଆଇନ ବା ଯାହାକୁ ଇଂରାଜୀରେ କହିଲେ ଓ୍ୱାନ୍ ନେସନ ଓ୍ୱାନ୍ ଲ'ର ଆବଶ୍ୟକତା ନେଇ ବିତର୍କ ହୁଏ । ଏଇ ବିତର୍କକୁ ନେଇ ସପକ୍ଷ ଏବଂ ବିପକ୍ଷରେ ଲୋକ ବାଣ୍ଟି ହୋଇ ଯାଆନ୍ତି । କାରଣ ଗୋଟିଏ ସମାଜରେ ଧର୍ମ ହେଉଛି ସବୁଠାରୁ ବଡ ଏକ ସଂବେଦନଶୀଳ ପ୍ରସଂଗ ।

ଭାରତୀୟ ଜନତା ପାର୍ଟି (ବିଜେପି) ସମାନ ନାଗରିକ ସଂହିତା କଥା ବେଶି କହେ । ଦଳୀୟ ନିର୍ବାଚନ ଇସ୍ତାହାରରେ ଏଥିନେଇ ଉଲ୍ଲେଖ ବି ଥାଏ । ଭାରତୀୟ ଆଇନ ଆୟୋଗ ମଧ୍ୟ ବେଳେବେଳେ ନାଗରିକ ସଂହିତା ନେଇ ପ୍ରଶ୍ନ ମାଧ୍ୟମରେ ମତାମତ ଲୋଡ଼ନ୍ତି । ମାନ୍ୟବର ସୁପ୍ରିମ୍ କୋର୍ଟ ମଧ୍ୟ କେତେବେଳେ କେମିତି ଟିପ୍‌ପଣୀ ରଖନ୍ତି ।

ସମାନ ନାଗରିକ ସଂହିତା ବା ୟୁନିଫର୍ମ ସିଭିଲ କୋଡ ସଂପର୍କରେ ଭାରତ ସଂବିଧାନରେ ଥିବା ଏକ ବ୍ୟବସ୍ଥା କଥା ଏଠାରେ ଉଲ୍ଲେଖ କରାଯାଇପାରେ । ସଂବିଧାନର 'ରାଷ୍ଟ୍ରନୀତି ନିୟାମକ ତତ୍ତ୍ୱ' ବା 'ଡାଇରେକ୍ଟିଭ୍ ପ୍ରିନ୍ସିପୁଲ୍‌ସ ଅଫ୍ ଷ୍ଟେଟ୍ ପଲିସି' ପରିଚ୍ଛେଦର ୪୪ଧାରାରେ ଏହି କମନ ସିଭିଲ କୋଡର ଉଲ୍ଲେଖ ଅଛି । ଏହି ଧାରାରେ ସଂବିଧାନ ପ୍ରଣେତାମାନେ କହିଛନ୍ତି ଯେ ରାଷ୍ଟ୍ର ସବୁ ବର୍ଗର ନାଗରିକମାନଙ୍କ ପାଇଁ ଏକ ପ୍ରକାର ସିଭିଲ ସଂହିତା ପ୍ରଣୟନ କରିବ । (The state shall endeavour to secure for the citizens a uniform civil code throughout the territory of India) । ଜାତୀୟ ସଂହତି ଦୃଢ଼ କରିବାକୁ ଏହି ଧାରାକୁ ଭାରତ ସଂବିଧାନରେ ସନ୍ନିବେଶିତ କରାଯାଇଛି ବୋଲି କମନ ସିଭିଲ କୋଡର ସପକ୍ଷବାଦୀମାନେ ମତ ଦିଅନ୍ତି । ପୁନଶ୍ଚ ଏମାନେ ଦାବି କରନ୍ତି ଯେ ଏକ ସଭ୍ୟ ସମାଜରେ ଧର୍ମ ଏବଂ ବ୍ୟକ୍ତିଗତ ଆଇନ ମଧ୍ୟରେ କିଛି ସଂପର୍କ ନଥାଏ । ତେଣୁ ଧର୍ମ ସ୍ୱାଧୀନତା ପାଇଁ ଆମ ଦେଶରେ ସବୁଲୋକଙ୍କ ନିମନ୍ତେ ଏକ ସାମ୍ବିଧାନିକ ମୌଳିକ ଅଧିକାର ଥିଲାବେଳେ (ଧାରା-୨୫) ଧର୍ମକୁ ନାଗରିକମାନଙ୍କର ସମସ୍ତ ବ୍ୟକ୍ତିଗତ ଆଇନଠାରୁ ପୃଥକ୍ ରଖିବାକୁ ଏହି ୪୪ଧାରାରେ ଇଚ୍ଛାକୃତ ଭାବେ ବ୍ୟବସ୍ଥା

କରାଯାଇଛି। କିନ୍ତୁ ବିବାହ, ବିଚ୍ଛେଦ, ଉତ୍ତରାଧିକାର ଏବଂ ଭରଣପୋଷଣ ପରି ଅନେକ ବ୍ୟକ୍ତିଗତ ପ୍ରଶ୍ନ ଉପରେ ଗୋଟିଏ କମନ ସିଭିଲ କୋଡ ଆମ ଦେଶରେ କେବେ ପ୍ରଣୟନ ହେବ ତାହା ଭାରତ ସଂବିଧାନରେ ଉଲ୍ଲେଖ ନାହିଁ।

ଭାରତ ବର୍ଷରେ ବିଭିନ୍ନ ଧର୍ମାବଲମ୍ବୀ ବ୍ୟକ୍ତିମାନଙ୍କ ପାଇଁ ଅଲଗା ଅଲଗା ବ୍ୟକ୍ତିଗତ ଆଇନ ବା ପର୍ଶନାଲ ଲ' ଅଛି। ବିବାହ, ବିଚ୍ଛେଦ, ଉତ୍ତରାଧିକାର ଏବଂ ଭରଣପୋଷଣକୁ ଆଧାରକରି ଭାରତରେ ଭିନ୍ନ ଭିନ୍ନ ଆଇନ ରହିଛି ଏବଂ ଏହି ଆଇନରେ ସଂପୃକ୍ତ ସଂପ୍ରଦାୟର ରୀତି ନୀତି ପ୍ରଥାକୁ ପ୍ରାଧାନ୍ୟ ଦିଆଯଇଛି । ବିଭିନ୍ନ ବ୍ୟକ୍ତିଗତ ଆଇନରେ ଥିବା ତୁଳନାତ୍ମକ ବିଚାରର କିଛି କଥା ଏଠାରେ ସଂକ୍ଷେପରେ ପ୍ରକାଶ କରାଯାଇପାରେ।

'ବିବାହ' ଉପରେ ହିନ୍ଦୁମାନଙ୍କ ପାଇଁ ହିନ୍ଦୁ ମ୍ୟାରେଜ୍ ଆକ୍ଟ-୧୯୫୫ରେ ଭାରତରେ ପ୍ରଚଳିତ ଅଛି। ଏଥିରେ ଉଲ୍ଲେଖ ରହିଛି ଯେ କୌଣସି ହିନ୍ଦୁ ପୁରୁଷ ବା ସ୍ତ୍ରୀ ଗୋଟିଏ ମାତ୍ର ସ୍ତ୍ରୀ ବା ପୁରୁଷ ବିବାହ କରିପାରିବ। ମୁସଲିମ୍ ସ୍ତ୍ରୀମାନେ କିନ୍ତୁ ଇସଲାମିକ ଆଇନ ଅନୁଯାୟୀ ଗୋଟିଏ ପୁରୁଷ ବିବାହ କରିବାର ବ୍ୟବସ୍ଥା ଥିଲାବେଳେ ଜଣେ ମୁସଲିମ ପୁରୁଷ କିଛି ନିର୍ଦ୍ଦିଷ୍ଟ ଏବଂ ସୀମିତ ପରିସ୍ଥିତିରେ ଚାରୋଟି ସ୍ତ୍ରୀ ବିବାହ କରିପାରିବେ। ଅଥଚ ଖ୍ରୀଷ୍ଟିଆନ ଆଇନରେ ଏହି ଧର୍ମର ପୁରୁଷ ଏବଂ ସ୍ତ୍ରୀମାନଙ୍କ ପାଇଁ ଗୋଟିଏ ସ୍ତ୍ରୀ ବା ପୁରୁଷ ବିବାହର ବ୍ୟବସ୍ଥା ଅଛି।

ବିଚ୍ଛେଦ ବା ଡାଇଭର୍ସ ନେଇ ୧୯୫୫ ମସିହା ହିନ୍ଦୁ ମ୍ୟାରେଜ୍ ଆକ୍ଟ ପରେ ଏହା ଆଇନ ହୋଇଯାଇଛି ଯେ ଉଭୟ ହିନ୍ଦୁ ପୁରୁଷ ଏବଂ ସ୍ତ୍ରୀ କେବଳ ଏକ ପ୍ରକାର କାରଣ ନେଇ ପରସ୍ପର ଠାରୁ ବିଚ୍ଛେଦ ହୋଇପାରିବେ।ଏହି କାରଣ ଭିତରେ ପରକିଆ ପ୍ରୀତି, ନିଷ୍ଠୁରତା, ଧର୍ମ ପରିବର୍ତ୍ତନ, ମାନସିକ ବିକୃତିର ଉଲ୍ଲେଖ ଅଛି । ମୁସଲିମ୍ ମ୍ୟାରେଜ ଆକ୍ଟରେ ବର୍ଣ୍ଣିତ ଥିବା କାରଣକୁ ଭିତ୍ତି କରି ମୁସଲିମ୍ ମହିଳାମାନେ ନିଜ ସ୍ୱାମୀମାନଙ୍କ ଠାରୁ ଆଇନତଃ ଅଲଗା ହୋଇପାରିବେ। ଅଥଚ ତିନିଥର 'ତଲାକ୍' କହି ଜଣେ ମୁସଲିମ୍ ପୁରୁଷ ନିଜ ସ୍ତ୍ରୀକୁ ଛାଡ଼ପତ୍ର ଦେଇପାରିବ। ହାନାଫି ଲ'ରେ ଏହି ତଲାକ୍‌ରେ ସାକ୍ଷୀର ଉପସ୍ଥିତିକୁ ଅନାବଶ୍ୟକ କୁହାଯାଇଥିଲାବେଳେ ସିହା ଆଇନରେ କିନ୍ତୁ ଦୁଇଟି ସାକ୍ଷୀଙ୍କ ଉପସ୍ଥିତିରେ ତଲାକ୍ ହୋଇପାରିବ ବୋଲି ଉଦ୍ଧୃତ ଅଛି। ଅନ୍ୟପକ୍ଷରେ ୧୮୬୯ ଇଣ୍ଡିଆନ୍ ଡାଇଭର୍ସ ଆକ୍ଟ ଅନୁଯାୟୀ ଜଣେ ଖ୍ରୀଷ୍ଟିଆନ ପୁରୁଷ ବା ସ୍ତ୍ରୀ ନିଜର ବିବାହିତ ସଂପର୍କ ବାହାରେ ଅବୈଧ ଯୌନ ସଂପର୍କକୁ ଭିତ୍ତିକରି

ପରସ୍ପରଠାରୁ ସ୍ୱାମୀ ସ୍ତ୍ରୀର ସଂପର୍କ ଆଇନତଃ ଛିନ୍ନ କରିପାରିବେ।

ଭରଣପୋଷଣ ବା ମେଣ୍ଟେନାନ୍ସ ଉପରେ ୧୯୫୫ ମସିହା ହିନ୍ଦୁ ମ୍ୟାରେଜ୍ ଆକ୍ଟରେ ଉଭୟ ସ୍ତ୍ରୀ ଏବଂ ପୁରୁଷଙ୍କ ପାଇଁ ଭରଣପୋଷଣର ବନ୍ଦୋବସ୍ତ ହୋଇଛି ଏବଂ ଏହି ଭରଣପୋଷଣ ଭତ୍ତା କେବଳ ଦ୍ୱିତୀୟ ବିବାହ ପର୍ଯ୍ୟନ୍ତ ମିଳିପାରିବ। ପୁନଶ୍ଚ ୧୯୫୬ ମସିହା ହିନ୍ଦୁ ଆଡପସନ୍ ଆଣ୍ଡ ମେଣ୍ଟନାନ୍ସ ଆଇନ ଅନୁସାରେ ସ୍ତ୍ରୀର ସତୀତ୍ୱ ସନ୍ଦେହଜନକ ପ୍ରମାଣିତ ହେଲେ ଏହି ଭରଣପୋଷଣ ଦିଆଯାଇପାରିବ ନାହିଁ ବୋଲି ମଧ୍ୟ ଉଲ୍ଲେଖ ଅଛି। ଅଥଚ ୧୯୮୬ ମସିହା ମୁସଲିମ୍ ଓମେନ୍ (ରାଇଟ୍‌ସ୍ ଅନ୍ ଡାଇଭର୍ସ) ଆକ୍ଟ ପ୍ରଣିତ ହେଲାପରେ ଏହା ସ୍ଥିରୀକୃତ ହୋଇଛି ଯେ ଉଭୟ ମୁସଲିମ୍ ପୁରୁଷ ଏବଂ ସ୍ତ୍ରୀର ଇଚ୍ଛା ବିରୁଦ୍ଧରେ ଭାରତର କ୍ରିମିନାଲ ପ୍ରୋସେଜ୍ୟୁର କୋଡ ଭରଣପୋଷଣ ପାଇଁ ସେମାନଙ୍କ ପ୍ରତି ଲାଗୁ ହୋଇପାରିବ ନାହିଁ।

ଉତ୍ତରାଧିକାର ପାଇଁ ହିନ୍ଦୁମାନଙ୍କ ନିମନ୍ତେ ହିନ୍ଦୁ ସକ୍‌ସେସନ୍ ଆକ୍ଟ -୧୯୫୬ ପ୍ରଚଳିତ ହେଉଥିବା ବେଳେ ମୁସଲମାନଙ୍କର ଏହି ଉତ୍ତରାଧିକାରୀ ନିଯୁକ୍ତି କୋରାନ୍ ବର୍ଣ୍ଣିତ ନୀତି ଅନୁଯାୟୀ ହୁଏ ଏବଂ ଖ୍ରୀଷ୍ଟିୟାନମାନଙ୍କର ଉତ୍ତରାଧିକାର ବ୍ୟବସ୍ଥା ତାଙ୍କର ୧୯୨୫ ମସିହା ଇଣ୍ଡିଆନ ସକ୍‌ସେସେନ୍ ଆକ୍ଟ ଅନୁସାରେ ଭାରତରେ କାର୍ଯ୍ୟକାରୀ ହେଉଛି। ତେବେ ସବୁ ବ୍ୟକ୍ତିଗତ ଆଇନକୁ ଏକତ୍ର କରି ଗୋଟିଏ ସିଭିଲ ସଂହିତା କରିବା କିଛି ସହଜ କଥା ନୁହେଁ। ୧୯୪୦ ମସିହାରୁ ନ୍ୟାସନାଲ ପଲିଟିକାଲ କମିଶନରେ ଏହା ଆଲୋଚିତ ହୋଇଆସୁଛି ଏବଂ ଭାରତ ସଂବିଧାନର ପ୍ରସ୍ତୁତି ବେଳେ ମଧ୍ୟ ଏହି କମନ ସିଭିଲ କୋଡ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଧାରା ସଂବିଧାନରେ ରଖା ଯାଇଛି। କିନ୍ତୁ ସମାଲୋଚନା ହୁଏ, ସାରା ଭାରତ ପାଇଁ ଗୋଟିଏ ପ୍ରକାର ସିଭିଲ ଆଇନ କରିବାରେ ସଂବିଧାନ ପ୍ରଣେତାମାନଙ୍କର ବୋଧେ ବଳିଷ୍ଠ ଇଚ୍ଛା ନଥିଲା। କାରଣ କମନ ସିଭିଲ କୋଡକୁ ମୌଳିକ ଅଧିକାରଭୁକ୍ତ ନକରି, ଡାରେକ୍ଟିଭ୍ ପ୍ରିନ୍ସିପୁଲ୍‌ସ ଅଫ୍ ଷ୍ଟେଟ୍ ପଲିସି ଅନ୍ତର୍ଭୁକ୍ତ କରିବା ଦ୍ୱାରା ଏହା ନିର୍ବାଚନରେ ଭୋଟ ପାଇଁ ଏକ ପ୍ରଚାର ମାଧ୍ୟମ ହୋଇଯାଇଛି।

ପ୍ରକାଶ ଥାଉକି, ବିବାହ ତଥା ବିଚ୍ଛେଦ ପରି ପ୍ରତ୍ୟେକ ମଣିଷର ଅନେକ ଆବେଗିକ ଏବଂ ବ୍ୟକ୍ତିଗତ ପ୍ରଶ୍ନ, ବିଶ୍ୱାସ ତଥା ପ୍ରେମ ଦ୍ୱାରା ପ୍ରଭାବିତ ହୁଏ। ତେଣୁ ହଜାର ହଜାର ବର୍ଷର ପରମ୍ପରା ସମ୍ଭୁତ ଏହି ଭିନ୍ନ ଭିନ୍ନ ବ୍ୟକ୍ତିଗତ ପ୍ରଥାକୁ ନେଇ ଗୋଟିଏ ମାତ୍ର ବାଧ୍ୟ ଆଇନ କରିଦେଲେ ଯେ କେତେ ଦୂର ଏହା ସାଧାରଣ

ଗ୍ରହଣଯୋଗ୍ୟ ହେବ ତାହା ସହଜରେ ବିଶ୍ୱାସ କରିହେଉନାହିଁ।

ତଥାପି କମନ ସିଭିଲ କୋଡ୍ ସଂପର୍କରେ ଉଭୟ ସପକ୍ଷ ଏବଂ ବିପକ୍ଷବାଦୀଙ୍କ ଯୁକ୍ତି ବେଶ୍ ବିଶ୍ୱାସଯୋଗ୍ୟ ଲାଗେ। ବିଜେପି ସମେତ ସଂଘ ପରିବାର ସମାନ ନାଗରିକ ସଂହିତାକୁ ଜାତୀୟ ସଂହତିର ଏକ ଦୃଢ ପ୍ରାକ୍ ଆବଶ୍ୟକତା ବୋଲି କହନ୍ତି। ମୁସଲିମ୍ ରାଷ୍ଟ୍ର ହେଲେ ମଧ୍ୟ ତୁର୍କୀ ଏବଂ ମିଶରରେ ବିଭିନ୍ନ ଧର୍ମର ବ୍ୟକ୍ତିଗତ ଆଇନକୁ ନେଇ ଗୋଟିଏ ପ୍ରକାର ସିଭିଲ ଆଇନ କରାଯାଇଛି। ପାକିସ୍ତାନ ଏବଂ ବଙ୍ଗଳାଦେଶରେ ମୁସଲିମ୍ ସ୍ୱାମୀ ସ୍ତ୍ରୀଙ୍କ ବିଛେଦ ପାଇଁ ଟ୍ରିପ୍‌ଲ ତଲାକ୍ ପ୍ରଥା ନାହିଁ। ଭାରତରେ କିନ୍ତୁ ବହୁପତ୍ନୀ ତଥା ଏବଂ ପରିବାର ନିୟନ୍ତ୍ରଣ ଉପରେ ବିଭିନ୍ନ ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ନିୟମ, ଜାତୀୟ ସ୍ୱାର୍ଥ ଏବଂ ସଂହତିର ପରିପନ୍ଥୀ ହୋଇଛି ଏବଂ ପ୍ରାୟ ସବୁ ଧର୍ମରେ ଥିବା ଦୁର୍ବଳା ନାରୀମାନଙ୍କ ପ୍ରତି ଯେ ଆଇନ ମାଧ୍ୟମରେ ଅବିଚାର କରାଯାଉଛି ତାହା କମନ ସିଭିଲ ଆଇନର ସପକ୍ଷବାଦୀଙ୍କ ମତ। ଏହାକୁ ପ୍ରମାଣିତ କରିବାକୁ ଯାଇ ସଂଘ ପରିବାରର ନେତାମାନେ ମୁସଲିମ୍ ତୁଷ୍ଟିକରଣ ପାଇଁ ଆଡପ୍‌ସନ ବିଲ୍, ୧୯୭୮ ଏବଂ ମୁସଲିମ୍ ଓମେନ (ପ୍ରୋଟେକ୍‌ସନ୍ ଅଫ୍ ରାଇଟସ୍ ଅଫ୍ ଡାଇଭର୍ସ) ଆକ୍ଟ - ୧୯୮୬ର ଉଦାହରଣ ଦିଅନ୍ତି ଏବଂ ଏହି ଆଇନ ଯୋଗୁଁ ସମାଜରେ ନାରୀମାନଙ୍କର ସ୍ଥିତିରେ ଅସମତା ଦେଖାଦେଇଛି ବୋଲି ମଧ୍ୟ ଦୃଢ଼ ଅଭିଯୋଗ କରନ୍ତି। ଅବଶ୍ୟ ସମାନ ସିଭିଲ ଆଇନ ଆଳରେ ସେମାନେ ଯେ କେବଳ ହିନ୍ଦୁ ଆଇନକୁ ପ୍ରୟୋଗ କରିବାକୁ ଚାହାଁନ୍ତି ନାହିଁ ଏହା ସମାନ ନାଗରିକ ସଂହିତା ସପକ୍ଷବାଦୀଙ୍କ ଯୁକ୍ତିରେ ଥାଏ।

ସମାନ ନାଗରିକ ସଂହିତାର ବିପକ୍ଷବାଦୀଙ୍କ ଯୁକ୍ତି କିନ୍ତୁ ଭିନ୍ନ। ସେମାନଙ୍କ ମତରେ ଏକ ପ୍ରକାର ସିଭିଲ କୋଡ୍ ଜାତୀୟ ସଂହତି ପାଇଁ ମୋଟେ ପ୍ରଭାବଶାଳୀ ଫର୍ମୁଲା ନୁହେଁ ଏବଂ ବ୍ୟକ୍ତିଗତ ଆଇନରେ ବିଭିନ୍ନତା ବି ରାଷ୍ଟ୍ରୀୟ ଐକ୍ୟ ପ୍ରତି ମୋଟେ ବିପଦ ନୁହେଁ, ବରଂ ସାମାଜିକ ଏବଂ ଅର୍ଥନୈତିକ ଅସମତା ହିଁ ଏହି ସାମାଜିକ ଐକ୍ୟରେ ଫାଟ ସୃଷ୍ଟି କରିବାରେ ସାହାଯ୍ୟ କରେ। ପୁନଶ୍ଚ ଏହା ଏକ ଅବାସ୍ତବ କଳ୍ପନା ଯେ ଏକ ପ୍ରକାର ସିଭିଲ ଆଇନ ଜାତୀୟ ସଂହତିର ଏକ ଦୃଢ ଭିତ୍ତିଭୂମି। ହିନ୍ଦୁ ଏବଂ ଶିଖ୍ ପାଇଁ ଗୋଟିଏ ବ୍ୟକ୍ତିଗତ ଆଇନ ଅଛି ଏବଂ ଉଭୟଙ୍କ ମଧ୍ୟରେ ଅନେକ ଭାବଗତ ସଂପର୍କ ଥିଲେ ମଧ୍ୟ ଦୁଇ ସଂପ୍ରଦାୟ ମଧ୍ୟରେ ବିଭାଜନ ପ୍ରକାଶ୍ୟରେ ପରିଦୃଷ୍ଟ। ଏଥିପାଇଁ ଜାତୀୟ ସଂହତି ବିପଦପୂର୍ଣ୍ଣ ହୋଇଛି ଏବଂ ୧୯୮୦

ଦଶକର ଭାରତ ଇତିହାସ ଏକ ଅପାଶୋରା ରକ୍ତସ୍ନାନ ବି କରିଛି। ବ୍ଲୁଷ୍ଟାର ଅପରେସନ୍, ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ଏବଂ ହିନ୍ଦୁ-ଶିଖ ଦଙ୍ଗା ତଥା ଗଣହତ୍ୟା ଏହାର ମୂକସାକ୍ଷୀ। ତେବେ ସମାନ ନାଗରିକ କୋଡ ସପକ୍ଷରେ ଏବଂ ବିପକ୍ଷରେ ଯାହା କିଛି ଯୁକ୍ତି ଥିଲେ ମଧ୍ୟ ଏହି ଆଇନ ପ୍ରଣୟନ ପାଇଁ ଭାରତ ସଂବିଧାନରେ ଯେଉଁ 'ସହମତି ତତ୍ତ୍ୱ' ଉପରେ ପରୋକ୍ଷ ପ୍ରାଧାନ୍ୟ ଦିଆଯାଇଥିଲା, ତାହା ୧୯୯୨ ମସିହା ଡିସେମ୍ବର ମାସ ୬ତାରିଖର ଅଯୋଧ୍ୟାରେ ବାବ୍ରୀ ମସ୍‌ଜିଦ୍ ଭଂଗ ଘଟଣା ପରେ ପ୍ରାୟ ଧ୍ୱଂସ ହୋଇଯାଇଛି। ଲଭ୍ ଜିହାଦ, ଘର ୱାପସି, ବିଫ୍ ଭକ୍ଷଣ ଏପରି କିଛି ସଂବେଦନଶୀଳ ପ୍ରସଙ୍ଗ ସଂପ୍ରଦାୟ ସଂପ୍ରଦାୟ ଭିତରେ ବିଶ୍ୱାସର ଅଭାବକୁ ବଢ଼େଇ ଚାଲିଛି। ଭାବଗତ ଐକ୍ୟ ବଦଳରେ ପ୍ରତ୍ୟେକ ସଂପ୍ରଦାୟ ସେମାନଙ୍କର ରାଜନୈତିକ ପରିଚୟର ସଂରକ୍ଷଣ ପାଇଁ ବ୍ୟସ୍ତ ହୋଇଉଠିଛନ୍ତି। ତେଣୁ ବର୍ତ୍ତମାନ ପରିସ୍ଥିତିରେ କମନ ସିଭିଲ କୋଡର ଆହ୍ୱାନ ବାସ୍ତବରେ ମୌଳିକବାଦୀମାନଙ୍କୁ ବାହାବା ଦେବ ଏବଂ ଫଳରେ ଜାତୀୟ ସଂହତି ନଷ୍ଟ ହେବ, ଏପରି ଅବସ୍ଥା ଆସିପାରେ।

ବାସ୍ତବରେ ଭାରତର ସଂଖ୍ୟାଲଘୁ ସଂପ୍ରଦାୟ ଭିତରେ ସଂସ୍କାର ଏବଂ ଜାଗରଣର ଆବଶ୍ୟକତା ଆସିଛି। କମନ ସିଭିଲ କୋଡର ଏହା ହେଉଛି ପ୍ରାକ୍ ଆବଶ୍ୟକତା। ସାମାଜିକ, ଅର୍ଥନୈତିକ ଏବଂ ଶିକ୍ଷାଗତ କ୍ଷେତ୍ରରେ ଉନ୍ନତି ହେଲେ ଯାଇ ଏକ ଉନ୍ନତ ତଥା ସଭ୍ୟ ସମାଜ ଗଠନର ପୂର୍ଣ୍ଣତା ପ୍ରାପ୍ତି ହୋଇପାରିବ।। ପୁନଶ୍ଚ କୌଣସି ସଂପ୍ରଦାୟର ସଂସ୍କାର ପାଇଁ ଉପରୁ କିଛି ଲଦି ଦିଆଗଲେ ତାହା ସଫଳ ହୁଏ ନାହିଁ। ଏହା କେବଳ ନିଜ ସଂପ୍ରଦାୟ ଭିତରୁ ହିଁ ହେବା ଦରକାର। ହିନ୍ଦୁ ଧର୍ମରେ ସଂସ୍କାର ମୌଲାନା ଆଜାଦ୍ ଆଣିନଥିଲେ। ବରଂ ରାମମୋହନ ରାୟ ଏବଂ ମହାତ୍ମା ଫୁଲେ ଏହି ଧର୍ମରେ ସଂସ୍କାର ଏବଂ ଜାଗରଣ ନିମନ୍ତେ ଉଦ୍ୟମ କରିଥିଲେ ଏବଂ ସଫଳ ବି ହୋଇଥିଲେ।

ପ୍ରକୃତରେ ସମାଜରୁ ଦାରିଦ୍ର୍ୟ, ନିରକ୍ଷରତା ଦୂରୀଭୂତ ହେଲେ ପ୍ରତି ଧର୍ମରେ ଥିବା କୁସଂସ୍କାର ଆପେ ଆପେ ଆତ୍ମଗୋପନ କରିବ। ପାରମ୍ପରିକ ରୀତି ନୀତି ପ୍ରତି ଗୁରୁତ୍ୱ ନ ଆସି ବ୍ୟକ୍ତିଗତ ଅଧିକାର ଉପରେ ପ୍ରାଧାନ୍ୟ ଆସିବ। ସେତେବେଳେ ଏଇ ବିବଦମାନ କମନ ସିଭିଲ କୋର୍ଡର ଯଥାର୍ଥତା ରହିବ ନାହିଁ କିମ୍ବା ଏହା ହାସଲ କରିବା ସହଜ ହୋଇଯିବ।

❑❑❑

# ଧୃତରାଷ୍ଟ୍ର ସିଣ୍ଡ୍ରୋମ୍

ନିର୍ବାଚନ ଆସିଲେ ଭାରତୀୟ ରାଜନେତାମାନେ ନିଜ ପୁଅଝିଅଙ୍କ ପାଇଁ ରାଜନୈତିକ ଅଭ୍ୟୁଦୟ କଥା ଚିନ୍ତା କରନ୍ତି। କିପରି ନିଜ ପିଲାଏ ପ୍ରତ୍ୟେକ୍ଷ ରାଜନୀତିରେ ଅଂଶ ଗ୍ରହଣ କରିବେ, ଦେଖନ୍ତି। ନିଜ ଦଳର ଟିକେଟ ବାଣ୍ଟୁଥିଲେ ନିଜ ଆତ୍ମୀୟଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାକୁ ଟିକେଟ ଦିଅନ୍ତି କିମ୍ବା ଦଳର ମୁଖିଆଙ୍କୁ ପ୍ରଭାବିତ କରି ନିଜ ପିଲାଙ୍କ ପାଇଁ ଟିକେଟ ଯୋଗାଡ଼ କରି ଆଣନ୍ତି। ଯଦି ନିଜ ପରିବାରର ରାଜନୀତି ଉତ୍ଥାନ ପାଇଁ ଆଇନ ଏବଂ ନିୟମକୁ ବଙ୍କେଇ ଦେବାକୁ ପଡ଼େ, ଏହା ବି କରାଯାଏ।

ଅଭିଯୋଗ କରି ଏଥିନେଇ ପ୍ରଶ୍ନ କଲେ, ପାଲଟା ପ୍ରଶ୍ନ ଆସେ, ଏଥିରେ କ୍ଷତି କ'ଣ? ପ୍ରତ୍ୟେକ ମଣିଷ ତା'ପିଲାର ଉନ୍ନତି ଚାହେଁ। ଏହା ଏକ ପୁରାତନ ସାମାଜିକ ଅଭ୍ୟାସ।

କିନ୍ତୁ ଅସଲ କଥା ହେଲା, ଏଇ ପୁରୁଣା ସାମାଜିକ ଅଭ୍ୟାସ ସଂପ୍ରତି ରାଜନୀତିକୁ ଗ୍ରାସ କରିଦେଇଛି। ନିଜ ପରିବାରର ରାଜନୈତିକ ଉତ୍ଥାନ ଦେଖିବା କିପରି ପ୍ରାୟ ସମସ୍ତ ପ୍ରତିଷ୍ଠିତ ରାଜନେତାଙ୍କ ପାଇଁ ଏଠି ଏକ ରୋଗ ହୋଇଯାଇଛି। କୁହାଯାଇଛି, ଇଏ ରୋଗ ତ ନୁହେଁ, ଏକ ସିଣ୍ଡ୍ରୋମ୍। ସ୍ପଷ୍ଟ କହିଲେ ଏହା 'ଧୃତରାଷ୍ଟ୍ର ସିଣ୍ଡ୍ରୋମ୍'।

ମହାଭାରତର ରାଜା ଧୃତରାଷ୍ଟ୍ର, ସବୁ ଅନ୍ୟାୟ ଦେଖି ବି ନିଜ ପୁତ୍ରର ଅଭ୍ୟୁଦୟ ପାଇଁ ଚୁପ୍ ହୋଇଯାଇଥିଲେ। ଜଉଘରେ ପାଣ୍ଡବମାନଙ୍କୁ ପୋଡ଼ି ମାରିଦେବାର ଷଡ଼ଯନ୍ତ୍ରକୁ କିଞ୍ଚିତ ଜାଣିଥିଲେ ବି ନୀରବ ଥିଲେ ଧୃତରାଷ୍ଟ୍ର। ଦ୍ରୌପଦୀଙ୍କ ବସ୍ତ୍ର ହରଣ ବେଳେ ସେ ଚୁପ୍‌ଥିଲେ। ହସ୍ତିନାରେ ନିଜ ପୁଅର ଆଧିପତ୍ୟ ବଜାୟ ପାଇଁ ପାଣ୍ଡବଙ୍କ ପାଞ୍ଚଖଣ୍ଡ ଗାଁ ଦାବିରେ ସେ ନୀରବ ଥିଲେ। ଧୃତରାଷ୍ଟ୍ର ଚୁପ୍ ହୋଇନଥିଲେ ମହାଭାରତ ଯୁଦ୍ଧ ହୋଇନଥାନ୍ତା। ଏ ଭାରତ ବର୍ଷ ଯୋଦ୍ଧାହୀନ ହୋଇନଥାନ୍ତା। ଏ ଥିଲା ପୁତ୍ର

ମୋହ ପରିଣତି। ନିଜ ପିଲାଙ୍କୁ ଶାସନ ଗାଦିରେ ଅବସ୍ଥାପିତ କରିବାର ଆସକ୍ତି। ପୁତ୍ର ମୋହର ସୀମାତୀତ ହେଲେ ବିବେକ ଅନ୍ଧ ହୋଇଯାଏ। ସମସ୍ତ ବିଚାର ଶୁଦ୍ଧତା ପରାହତ ହୁଏ। ପାଞ୍ଚ ହଜାର ବର୍ଷ ତଳର ଧୃତରାଷ୍ଟ୍ରିୟ ବିଲକ୍ଷଣ ଦେଖାଦିଏ। ଯାହା ଏବେ ରାଜନୀତିରେ ପ୍ରବେଶ କରିଛି ଏବଂ ଏଇ ବିଲକ୍ଷଣରୁ ଜନ୍ମ ନେଇଛି ରାଜନୀତିରେ ବଂଶବାଦ। ଗଣତନ୍ତ୍ରରେ ବି ରାଜତନ୍ତ୍ରର ଢାଞ୍ଚା।

ଭାରତୀୟ ରାଜନୀତିରେ ବଂଶବାଦର ଏ ଉପସ୍ଥିତି ପ୍ରଥମେ ଗାନ୍ଧୀ, ନେହୁରୁ ପରିବାରରେ ହିଁ ଆସିଛି। ଜବାହରଲାଲ ନେହୁରୁ ଭାରତର ପ୍ରଧାନମନ୍ତ୍ରୀ ଥିବାବେଳେ ହିଁ ଇନ୍ଦିରା ଗାନ୍ଧୀ ଭାରତୀୟ ଜାତୀୟ କଂଗ୍ରେସର ସଭାନେତ୍ରୀ ହୋଇଥିଲେ। ନେହୁରୁଙ୍କ ତିରୋଧାନ ପରେ ମାତ୍ର କିଛି ବର୍ଷର ଅନ୍ତରାଳରେ ପ୍ରଧାନମନ୍ତ୍ରୀ ହେଲେ ଇନ୍ଦିରା ଗାନ୍ଧୀ। ପ୍ରଧାନମନ୍ତ୍ରୀ ଇନ୍ଦିରା ନିଜ ପୁଅ ସଂଜୟଙ୍କର ଅଭ୍ୟୁତ୍‌ଥାନ କଥା ହିଁ ଭାବିଲେ। ଅଭିଯୋଗ ହୁଏ, ଜରୁରୀକାଳୀନ ପରିସ୍ଥିତି ବେଳେ ଯେଉଁ ମାତ୍ରାଧିକ କାର୍ଯ୍ୟ ବି ହୋଇଥିଲା ସେଥିପାଇଁ କିଛିମାତ୍ରାରେ ଦାୟୀ ଥିଲେ ସଂଜୟ ଗାନ୍ଧୀ। ଇନ୍ଦିରା ଚୁପ୍ ହେଉଥିଲେ।

ଇନ୍ଦିରା ତିଆରି କରିଥିବା ମଡେଲ ସଂପ୍ରତି ଗାନ୍ଧୀ ପରିବାରରେ ଚାଲିଛି। ରାଜନୈତିକ ପ୍ରତିଷ୍ଠା ପାଇଁ ପିଢ଼ିପରେ ପିଢ଼ି ପ୍ରସ୍ତୁତ ହୋଇରହିଛି। ନିର୍ବାଚନରେ ଭୋଟଦାତାମାନେ ଏହାକୁ ସମର୍ଥନ ଦେଇ ଗଣତାନ୍ତ୍ରିକ ସ୍ୱୀକୃତି ଦେଇଦେଉଛନ୍ତି। ଭାରତୀୟ ଗଣତନ୍ତ୍ରର ଏ ଧାରା ଏବେ ଏକ ଗଣତନ୍ତ୍ରୀୟ ଧାରା ନା ନିର୍ବାଚନ ରାଜତନ୍ତ୍ରୀୟ ଧାରା, ଏହା ଜାଣିବା ଅବଶ୍ୟ କଷ୍ଟ। କାରଣ ଏଇ ଦୁଇ ଧାରା ଭିତରେ ଥିବା ପ୍ରାର୍ଥକ୍ୟ ବହୁତ ପତଳା।

ରାଜନୀତିରେ ଏଇ ବଂଶବାଦର ଗତି ଆଉ ନେହୁରୁ-ଗାନ୍ଧୀ ପରିବାର ଭିତରେ କେବଳ ଅଟକି ରହିନାହିଁ। ଏହା ପ୍ରାୟ ସମସ୍ତ ରାଜନୈତିକ ପରିବାରକୁ କବଳିତ କରିସାରିଲାଣି। ଅନ୍ୟ କଥାରେ କହିଲେ, ଧୃତରାଷ୍ଟ୍ର ସିଣ୍ଡ୍ରୋମ୍ ଏବେ ସବୁଠି। ସବୁଦଳ ଏଇ ରୋଗରେ ଆକ୍ରାନ୍ତ।

କୌଣସି ଏକ ବଡ଼ କମ୍ପାନୀରେ ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ (ସିଇଓ) ଥିବା ନିଜ ପୁଅକୁ କମ୍ପାନୀରୁ ଡାକିଆଣି, କଂଗ୍ରେସର ତତ୍କାଳୀନ କେନ୍ଦ୍ର ନେତା ପ୍ରଣବ ମୁଖାର୍ଜୀ ତାଙ୍କୁ ପଶ୍ଚିମବଙ୍ଗର ନିର୍ବାଚନୀୟ ରାଜନୀତିରେ ଅଂଶ ଗ୍ରହଣ କରାଇଦେଲେ।

କୁହାଗଲା, ଏହା ବ୍ୟକ୍ତିର ରାଜନୈତିକ ଅଧିକାରର କଥା। ରାଜନୀତି କରିବା ନିମନ୍ତେ ବ୍ୟକ୍ତି ସ୍ୱାଧୀନତାର କଥା। ଏହା ଯେକୌଣସି ବ୍ୟକ୍ତିର ହୋଇପାରେ। ପ୍ରଣବ ମୁଖାର୍ଜୀଙ୍କର ପୁଅ ବି। ପ୍ରକୃତରେ ଏହା କିନ୍ତୁ ଥିଲା ଲିଗାସିର ତାଡ଼ନା ; ଉତ୍ତରାଧିକାରର ବାଧ୍ୟତା। ତାମିଲନାଡୁ ନିର୍ବାଚନରେ ପରିବାରବାଦ ଏକ ନିର୍ବାଚନୀ ପ୍ରସଙ୍ଗ। କରୁଣାନିଧିଙ୍କ ପାରିବାରିକ ରାଜନୈତିକ ମୋହକୁ ଜୟଲଳିତା ତାଙ୍କ ପ୍ରଚାରର ବିଷୟ କରନ୍ତି। ଟୁଜି-ସ୍ପେକଟ୍ରମ ଦୁର୍ନୀତି ପାଇଁ ଯେ କରୁଣାଙ୍କର ଏଇ ଧୃତରାଷ୍ଟ୍ର ସିଣ୍ଡ୍ରୋମ୍ ଦାୟୀ, ଜୟା ଅଭିଯୋଗ କରନ୍ତି।

ଜାମ୍ମୁ କାଶ୍ମୀରରେ ଶେଖ୍ ଅବଦୁଲାଙ୍କ ନାତି ଓମାର ଅବଦୁଲା ବହୁବାର ମୁଖ୍ୟମନ୍ତ୍ରୀ ହେଲେଣି। ଶେଖ୍ଙ୍କର ପୁତ୍ର ଫାରୁକ୍ ବି କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଥିଲେ। ଫାରୁକ୍ ଜମ୍ମୁ କାଶ୍ମୀରର ମୁଖ୍ୟମନ୍ତ୍ରୀ ମଧ୍ୟ ଥିଲେ। ସ୍ୱାଧୀନତା ପରଠାରୁ ଏଇ ଅବ୍‌ଦୁଲା ପରିବାରର ପ୍ରାଧାନ୍ୟ କାଶ୍ମୀର ରାଜନୀତିରେ ଚାଲିଆସୁଛି...।

ଉତ୍ତରପ୍ରଦେଶରେ ସମାଜବାଦୀ ଦଳର ମୁଖ୍ୟ ମୁଲାୟମ ସିଂ ଯାଦବ ନିଜ ପୁଅ ଅଖିଳେଶ ଯାଦବଙ୍କୁ ନିଜର ରାଜନୈତିକ ସିଂହାସନ ସମର୍ପି ଦେଇ ବେଶ୍ ଖୁସି। ଆଖିଳେଶ ଭଲ ଇଂରାଜୀ ଜାଣନ୍ତି। ବାପାଙ୍କ ରାଜନୈତିକ ଉତ୍ତରାଧିକାରୀ ହେବାକୁ ସେ ଯେ ଯୋଗ୍ୟ, ଏକଥା ଦଳ ବି ସ୍ୱୀକାର କଲାଣି।

ବିହାରରେ ଲାଲୁ-ରାବ୍‌ଡ଼ି ମଧ୍ୟ ପରିବାରର ରାଜନୈତିକ ଭବିଷ୍ୟତ ନେଇ ଆଉ ଚିନ୍ତାରେ ନାହାନ୍ତି। ନିଜ ବୃହତ୍ ପରିବାରର ପୁଅ ଝିଅ ତିନି ଜଣ ରାଜନୈତିକ ଦାୟିତ୍ୱ ନେବାକୁ ଉପଯୁକ୍ତ। ଏନ୍‌ସିପିର ନେତା ଶରଦ ପାୱାର ତାଙ୍କ ସାମ୍ରାଜ୍ୟର ଉତ୍ତରାଧିକାରୀ ଭାବେ ତାଙ୍କ ଝିଅ ସୁପ୍ରିୟା ସୁଲେଙ୍କୁ ଆଣିସାରିଲେଣି। ଓଡିଶାରେ କିମ୍ବଦନ୍ତୀୟ ପୁରୁଷ ବିଜୁ ବାବୁଙ୍କର ଏକ ସଫଳ ଉତ୍ତରାଧିକାରୀ ହେଉଛନ୍ତି ନବୀନ ପଟ୍ଟନାୟକ।

ରାଜନୀତିରେ ପରିବାରବାଦର ଏହା ନିଶ୍ଚିତ ଏକ ସଂକ୍ଷିପ୍ତ ତାଲିକା। ଏହା ସ୍ୱୀକାର୍ଯ୍ୟ ଯେ, ଭାରତର ସବୁ ରାଜନେତା ନିଜ ପିଲାଙ୍କର ରାଜନୈତିକ କ୍ୟାରିୟର ନେଇ ବ୍ୟସ୍ତ।

ପ୍ରଶ୍ନ ଆସେ, କେବଳ କ'ଣ ରାଜନୈତିକ ପଟିଆରା ପାଇଁ ପ୍ରତିଷ୍ଠିତ ରାଜନେତାମାନେ ନିଜ ପରିବାରର ରାଜନୈତିକ ଉତ୍‌ଥାନ ଚାହାନ୍ତି ନା, ଅନ୍ୟ କିଛି

କାରଣ ଏହାର ରହିଛି ? ଉତ୍ତର ହେଲା, ପ୍ରତି ରାଜନୈତିକ ଦଳର ସଂପ୍ରତ୍ତି ଏବେ ଅମାପ। ରାଜନୈତିକ ଚାନ୍ଦାର କେବେ ଅଡିଟ୍ ହୁଏନାହିଁ। ରାଜନୈତିକ ଦଳର ସଂପତ୍ତିରେ କଳାଟଙ୍କା ବି ରହିଛି। ନିଜ ପରିବାରର ଜଣେ କିଏ ଦଳର ମୁଖ୍ୟ ନହେଲେ, ଏ ଅମାପ ସଂପତ୍ତି ଯେ ସୁରକ୍ଷିତ ରହିବ ନାହିଁ, ଏହା ହିଁ ଏକ କାରଣ। ନିଜ ସଂପତ୍ତିକୁ ଅନ୍ୟକୁ ଦେଇ ଦେବାକୁ କୌଣସି ପରିବାରର ମୁଖିଆ କେବେ ଚାହେଁନି। ଠିକ୍ ଯେମିତି ନିଜ ଭାଇର ପୁଅମାନଙ୍କୁ ହସ୍ତିନା ହସ୍ତାନ୍ତର କରିଦେବାକୁ ଧୃତରାଷ୍ଟ୍ର ଚାହିଁନଥିଲେ।

ଭାରତର ଗଣମାଧ୍ୟମ ବି ଭାରତୀୟ ରାଜନୀତିର ଏ ବଂଶବାଦକୁ ବେଶ୍ ଭଲଭାବେ ପ୍ରଚାର କରେ। ନାପସନ୍ଦ କରୁଥିବାର ସୂଚନା ଦେଉଥିଲେ ବି, ମିଡିଆରେ ପରିବାରବାଦର ପ୍ରଶଂସା ହୁଏ। ନେତାମାନଙ୍କର ପିଲାଙ୍କର ଛୋଟ ଛୋଟ ଘଟଣାକୁ ନେଇ ଭାରତୀୟ ଗଣମାଧ୍ୟମ ଏଠି ବ୍ୟସ୍ତ ଥାଏ। ପାଶ୍ଚାତ୍ୟ ଦେଶମାନଙ୍କରେ କିନ୍ତୁ ରାଷ୍ଟ୍ରପତି ଏବଂ ପ୍ରଧାନମନ୍ତ୍ରୀଙ୍କ ପିଲାଙ୍କ କଥା ଖୁବ୍ କମ୍ ଖବରରେ ଆସେ।

୨୦୦୪ ମସିହାରୁ ଭାରତର ଗଣମାଧ୍ୟମ ପ୍ରଚାରରେ ରହିଛି, ରାହୁଲ ଗାନ୍ଧୀ ଏ ଦେଶର ପ୍ରଧାନମନ୍ତ୍ରୀ ହେବେ। ସେ ସଂପ୍ରତି କଂଗ୍ରେସର ଯୁବରାଜ। ୧୯୭୦ଦଶକରେ ଭାରତର ଅନେକ ପ୍ରତିଷ୍ଠିତ ମାଗାଜିନ୍ ତଥା ଖବରକାଗଜ ସଂଜୟ ଗାନ୍ଧୀଙ୍କୁ ତାଙ୍କ କଭର ପୃଷ୍ଠାରେ ସ୍ଥାନ ଦେଇଥିଲେ । ଏକଥା ସତ ଯେ, ଭାରତର ପ୍ରାୟ ଅନେକ ରାଜନୈତିକ ପରିବାର ନିଜର ରାଜନୈତିକ ଉଦ୍ଦେଶ୍ୟ ପାଇଁ ନିଜର ଟିଭି ଚ୍ୟାନେଲ ଏବଂ ଖବରକାଗଜମାନ କରିଛନ୍ତି। ଅନେକ ନେତା କିଛି ଚ୍ୟାନେଲ, ମାଗାଜିନ୍, ଖବରକାଗଜର ପୃଷ୍ଠପୋଷକ ବି ଅଛନ୍ତି। ତାମିଲନାଡୁରେ ଉଭୟ ଡିଏମ୍‌କେ ଏବଂ ଆନ୍ନା ଡିଏମ୍‌କେ ଦଳ ନିଜର ରାଜନୈତିକ ପ୍ରଚାର ନିମନ୍ତେ ସ୍ୱତନ୍ତ୍ର ଟିଭି ଚ୍ୟାନେଲମାନ ରଖିଛନ୍ତି। ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ପଦବୀ ଯେପରି କିଛି ପରିବାରର ପୁଅ ତଥା ଝିଅଙ୍କ ପାଇଁ ସଂରକ୍ଷିତ, ଏପରି ପ୍ରଚାର ଏଇ ନିୟନ୍ତ୍ରିତ ଗଣମାଧ୍ୟମ କରେ।

ଶାସକ ରାଜନେତାଙ୍କର ଯେ ପରିବାର ରହିବା ଉଚିତ ନୁହେଁ, ଦାର୍ଶନିକ ପ୍ଲାଟୋ ତାଙ୍କର ପୁସ୍ତକ 'ରିପବ୍ଲିକ୍'ରେ କହିଥିଲେ। ଖ୍ରୀ.ପୂ.୩୮୦ ରେ ଏ ବହି ପ୍ରକାଶ ପାଇଥିଲା । ଏଥିରେ ପ୍ଲାଟୋଙ୍କ ଉକ୍ତି ଥିଲା – ଶାସକର ପାରିବାରିକ ଘଟଣା ବାସ୍ତବରେ ସବୁ ସମୟରେ ଶାସକର ଦୃଷ୍ଟିଭଂଗୀକୁ ବିକୃତ କରିଥାଏ। ଶାସକକୁ

ଦୁର୍ନୀତିଗ୍ରସ୍ତ କରାଇଥାଏ ଏବଂ ଯେତେବେଳେ ଶାସକର ପାରିବାରିକ ମୋହ ରାଷ୍ଟ୍ର ମୋହଠାରୁ ଅଧିକ ହୋଇଯାଏ, ଏସବୁ ବିକୃତି ଆସିବା ସ୍ୱଭାବିକ ହୋଇଥାଏ। ସୁତରାଂ ଏକ ଉତ୍ତମ ରାଷ୍ଟ୍ରର ଗଠନର କଳ୍ପନା କଲାବେଳେ ପ୍ଲାଟୋ ତାଙ୍କ ଶାସକ ବା ଫିଲୋସଫର କିଙ୍ଗ୍‌ମାନଙ୍କୁ ଆଜୀବନ ଅବିବାହିତ ରହିବାକୁ ପରାମର୍ଶ ଦେଇଥିଲେ। ଭାରତରେ ଏବେ ମଧ୍ୟ କିଛି ମୁଖ୍ୟମନ୍ତ୍ରୀ ରହିଛନ୍ତି ଯେଉଁମାନଙ୍କର ନିଜର ପରିବାର ନଥିବା ହେତୁ ଯେ ସେମାନେ ଦୁର୍ନୀତିଗ୍ରସ୍ତ ହୋଇନାହାନ୍ତି, ଏସବୁ ରାଜନୈତିକ ବିଶ୍ଳେଷଣରେ ଆସେ। ସେମାନେ ଜନପ୍ରିୟ କାରଣ ସେମାନେ ଧୃତରାଷ୍ଟ୍ର ସିଣ୍ଡ୍ରୋମ୍‌ରେ ଆକ୍ରାନ୍ତ ନୁହଁନ୍ତି। ଓଡ଼ିଶାର ନବୀନ ପଟ୍ଟନାୟକ, ଗୁଜୁରାଟର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବର୍ତ୍ତମାନର ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଏଇ ତାଲିକାରେ ସାମିଲ। ପଶ୍ଚିମବଙ୍ଗରେ ମମତା ବାନାର୍ଜୀଙ୍କୁ ତାଙ୍କର କୌଣସି ପାରିବାରିକ ବୋଝ କଳଙ୍କିତ କରିନାହିଁ।

ସୁଶାସନ ପାଇଁ ଯେ ପ୍ଲାଟୋଙ୍କ ଦର୍ଶନ ଏକମାତ୍ର ଆବଶ୍ୟକତା ଏବଂ ଶାସକ ଅବିବାହିତ ରହିଲେ ଯେ ସେ ଭ୍ରଷ୍ଟାଚାରୀ ହେବନାହିଁ, ଏହା ବି ସର୍ବକାଳୀନ ସତ୍ୟ ନୁହେଁ। କାରଣ ଏବେ ବି ଭାରତରେ କିଛି ଅବିବାହିତ ମୁଖ୍ୟମନ୍ତ୍ରୀ ଅଛନ୍ତି ଯେଉଁମାନେ ଦୁର୍ନୀତିରେ ଲିପ୍ତ ଏବଂ ଏବେ ମଧ୍ୟ ପରିବାରରେ ଥିବା ଅନେକ ରାଜନେତା ରହିଛନ୍ତି, ଯେଉଁମାନେ ସାଧୁ ଏବଂ ସ୍ୱଚ୍ଛ।

ମୋହଗ୍ରସ୍ତ ହେବା ଏକ ବ୍ୟକ୍ତିଗତ ପ୍ରବୃତ୍ତି। ଏହା ନିୟନ୍ତ୍ରଣରେ ରହିଲେ ଭଲ। କିନ୍ତୁ ପରିବାରବାଦର ଆଢୁଆଳରେ ଏ ଧୃତରାଷ୍ଟ୍ର ସିଣ୍ଡ୍ରୋମ ଭାରତୀୟ ଗଣତାନ୍ତ୍ରିକ ରାଜନୀତିକୁ ବିକୃତ ନକରୁ, ଏ ଆଲୋଚନାର ଏ ଶେଷକଥା...।



# ନିଯୁକ୍ତିବିହୀନ ଅଭିବୃଦ୍ଧି

ଭାରତର ଶିଳ୍ପ ମହାସଂଘ, ସିଆଇଆଇ ବା କନ୍‌ଫେଡେରେସନ୍ ଅଫ୍ ଇଣ୍ଡିଆନ ଇଣ୍ଡଷ୍ଟ୍ରିଜ୍ ମୁଖିଆମାନଙ୍କୁ ତାଙ୍କର ବାର୍ଷିକ ଅଧିବେଶନରେ ଭାଷଣ ଦେବା ପରେ କେନସ୍ ଏବଂ ଆଡାମ୍ ସ୍ମିଥ୍‌ଙ୍କ ଅର୍ଥଶାସ୍ତ୍ର ପଢ଼ିଥିବା ତତ୍‌କାଳୀନ ପ୍ରଧାନମନ୍ତ୍ରୀ ମନମୋହନ ସିଂ ଯେ ସମାଜବାଦୀ ହୋଇଗଲେଣି ଏବଂ ଗାନ୍ଧୀଙ୍କ ସର୍ବୋଦୟ କଥା କହିଲେଣି, ଏପରି ଆଲୋଚନା ଦିନେ ଏଠି ହୋଇଥିଲା । ସ୍ପଷ୍ଟ କହିଲେ ଡ: ସିଂହ ସେବେ ନୂଆ ସ୍ଲୋଗାନ୍‌ଟିଏ ଦେଇଥିଲେ। ସେ ଥିଲା ଇନ୍‌କ୍ଲୁସିଭ୍ ଗ୍ରୋଥ୍ ; ଅନ୍ତର୍ଭୁକ୍ତ ଅଭିବୃଦ୍ଧି। ଅର୍ଥ ହେଲା, ସଞ୍ଚୟ କର, ଖର୍ଚ୍ଚ କମ୍ କର, ବିଳାସପୂର୍ଣ୍ଣ ଜୀବନ ପରିହାର କର, ଗଚ୍ଛିତ ସମ୍ପତ୍ତିକୁ ଗରିବଙ୍କ ପାଇଁ ବଣ୍ଟନ କର ଏବଂ ଆତ୍ମୀୟତା ତଥା ସମ୍ବେଦନଶୀଳତାର ଏକ ସଂସ୍କୃତି ସୃଷ୍ଟି କର।

ଭାରତୀୟ ଶିଳ୍ପର କ୍ୟାପ୍‌ଟେନ୍‌ମାନଙ୍କ ପାଇଁ ଡକ୍ଟର ମନମୋହନ ସିଂହଙ୍କଏହି ବକ୍ତବ୍ୟକୁ ଏକ ନୀତିବାଣୀ ବୋଲି କୁହାଗଲା। ଠିକ୍ ଯେମିତି ଦଶଟି କମାଣ୍ଡମେଣ୍ଟ୍। ଆର୍ଥିକ ଅଭିବୃଦ୍ଧି ସହ ଯେ ଆଶାନୁରୂପ ନିଯୁକ୍ତି ହୋଇନି ଡଃ. ସିଂହ ଏହା ପରୋକ୍ଷରେ ମାନିଥିଲେ। ସମ୍ପତ୍ତିର ସୁଷମ ବଣ୍ଟନ ନହେଲେ ଯେ ଧନୀ ଦରିଦ୍ର ଭିତରେ ତାରତମ୍ୟ ବଢ଼ିବ ଏ ଚିନ୍ତା ଏଥିରେ ଥଲା । ଗୋଟିଏ ସମାଜ ମଙ୍ଗଳ ଗଣତାନ୍ତ୍ରିକ ରାଷ୍ଟ୍ରରେ ଅର୍ଥନୈତିକ ସମତା ଯେ ରହିବା ଉଚିତ, ଏହା ଥିଲା ସ୍ପଷ୍ଟ।

ହଁ ପାଠକବନ୍ଧୁ! ଏହା ସତଯେ, ଭାରତର ଆର୍ଥିକ ଅଭିବୃଦ୍ଧି ପାଖାପାଖି ଦୁଇ ଅଙ୍କରେ ପହଞ୍ଚି ସାରିଥିଲେ ବି ଏଠାରେ ନିଯୁକ୍ତି ସଂଖ୍ୟା ବଢୁନାହିଁ। ଲେବର ବ୍ୟୁରୋର ଏକ ତଥ୍ୟ କହେ, ୨୦୧୫ରେ ନିଯୁକ୍ତିର ସଂଖ୍ୟା ହେଉଛି ମାତ୍ର ଏକ ଲକ୍ଷ ପଞ୍ଚତିରିଶି ହଜାର। ୨୦୧୧ ରେ ଏହା ୪ଲକ୍ଷ ୧୯ ହଜାର ଥିଲା ବେଳେ ୨୦୧୩ରେ ଏହା ୯ ଲକ୍ଷ ଥିଲା । ସେଇଥିପାଇଁ ତ ଅଭିଯୋଗ ହେଉଛି, ଭାରତରେ ପର୍ଯ୍ୟାୟ କ୍ରମେ ଆର୍ଥିକ ଅଭିବୃଦ୍ଧି ହେଉଛି ଏହା ସତ, କିନ୍ତୁ ଏ ଅଭିବୃଦ୍ଧିରେ ଆଶାଜନକ ନିଯୁକ୍ତି ନାହିଁ। ସୁତାରଂ ଏହା ଏକ ନିଯୁକ୍ତି ବିହୀନ ଅଭିବୃଦ୍ଧି ବା ଏକ ଜବ୍‌ଲେସ୍ ଗ୍ରୋଥ୍।

ଏ ଦେଶର ଆର୍ଥିକ ସଂସ୍କାର ଆରମ୍ଭ ହେଲା ୧୯୯୧ରେ । ସେତେବେଳେ ଭାରତର ଅର୍ଥମନ୍ତ୍ରୀ ଥିଲେ ବିଶିଷ୍ଟ ଅର୍ଥଶାସ୍ତ୍ରୀ ଡକ୍ଟର ମନମୋହନ ସିଂ। ତତ୍‌କାଳୀନ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଜଣେ ରାଜନେତା ଥିଲେ ବି ଆର୍ଥିକ ସଂସ୍କାର ନେଇ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ନିଆରା। ଏକ ମୁକ୍ତ ଅର୍ଥନୈତିକ ସାମ୍ରାଜ୍ୟ କଳ୍ପନା କଲାବେଳେ

ପ୍ରଧାନମନ୍ତ୍ରୀ ରାଓ ଭାରତରେ ମାନବୀୟ ମୁହଁ ଥିବା ଏକ ଅର୍ଥନୈତିକ ସଂସ୍କାରର କଳ୍ପନା କରିଥିଲେ। ଇଚ୍ଛା ଥିଲା,ଏଥିରେ ଏଠି ଏକ ପରିବର୍ତ୍ତନ ହେବ। ଏହା ଏପରି ଏକ ସଂସ୍କାର ହେବ ଯେଉଁ ସଂସ୍କାରରେ ଅଭିବୃଦ୍ଧି ଥିବ ଏବଂ ନିଯୁକ୍ତି ଥିବ। ଯେଉଁଥିରେ ପ୍ରଚୁର ଉତ୍ପାଦନ ହେଉଥିବ ଏବଂ ଉତ୍ପାଦିତ ଦ୍ରବ୍ୟକୁ କିଣିବାକୁ ସାଧାରଣ ଲୋକଙ୍କ କ୍ରୟ ଶକ୍ତି ଥିବ।

ଆର୍ଥିକ ସଂସ୍କାର ଆରମ୍ଭ ହେବା ପୂର୍ବରୁ ରାଷ୍ଟ୍ର ଏଠି ଏକ ବୃହତ୍ ମଡେଲ ନିଯୁକ୍ତିଦାତାଟିଏ ଥିଲା। ସଂସ୍କାର ବେଳେ କିନ୍ତୁ ଏ ଧାରଣା ଦିଆଗଲା, ରାଷ୍ଟ୍ର ଏଣିକି ଆଉ ନିଯୁକ୍ତି ଦେବନି। ବରଂ ଶିଳ୍ପାୟନ କରି ଏପରି ଏକ ପରିବେଶ ସୃଷ୍ଟି ହେବ ଯେଉଁଠି ଘରୋଇ କମ୍ପାନୀମାନେ ନିଯୁକ୍ତି ଦେବେ।

ନବେ ଦଶକରେ ଆରମ୍ଭ ହୋଇଥିବା ଆର୍ଥିକ ଉଦାରୀକରଣ, ଘରୋଇକରଣ ଏବଂ ଜଗତୀକରଣ ରାଷ୍ଟ୍ରର ଅନେକ ପାରମ୍ପରିକ କାମକୁ ଘରୋଇ ଶିଳ୍ପପତିମାନଙ୍କୁ ଦେଇ ଦେଇଛି। ଶକ୍ତି ଉତ୍ପାଦନ, ବିମାନଘାଟୀ ତଥା ବନ୍ଦର ନିର୍ମାଣ ଏବଂ ଟେଲିକମ୍ ପରି ବୃହତ୍ ସଂସ୍ଥା ଯେଉଁଥିରେ ରାଷ୍ଟ୍ରର ଏକଚାଟିଆ କାରବାର ଥିଲା, ଏସବୁ ଏବେ ଘରୋଇ ମାଲିକଙ୍କ ହାତରେ। ଘରୋଇ ମାଲିକମାନେ ନିଜର ଲାଭ ଉପରେ ଗୁରୁତ୍ୱ ଦେଇ ନିଯୁକ୍ତିକୁ ଗୌଣ କରି ଦେବାର ନଜିର ଅନେକ ବି ଆସିଲାଣି।

ଶହେ ପଚିଶି କୋଟିରୁ ଊର୍ଦ୍ଧ୍ୱ ଲୋକ ସଂଖ୍ୟା ବିଶିଷ୍ଟ ଗୋଟିଏ ଦେଶର ପ୍ରାୟ ୧୦ ପ୍ରତିଶତ ଆର୍ଥିକ ଅଭିବୃଦ୍ଧି ନିଶ୍ଚିତ ଭାବେ ଏକ ଲୋଭନୀୟ ଅଭିବୃଦ୍ଧି। କିନ୍ତୁ ବିଡ଼ମ୍ବନା ଯେ ଭାରତର ସମସ୍ତ ସରକାରୀ ବେସରକାରୀ ଏବଂ ସଂଗଠିତ କ୍ଷେତ୍ରରେ ନିଯୁକ୍ତିର ଧାରା କ୍ରମଶଃ ହ୍ରାସ ପାଇବାରେ ଲାଗିଛି।

କେନ୍ଦ୍ର ସରକାରୀ କ୍ଷେତ୍ରରେ ନିଯୁକ୍ତିର ସଂଖ୍ୟାକୁ ପ୍ରଥମେ ବିଚାରକୁ ଏଇଠି ଅଣାଯାଇପାରେ। ୨୦୦୫ ମସିହାରେ ଭାରତ ସରକାରଙ୍କର ପ୍ରଶାସନିକ ବା ସିଭିଲିଆନ୍ କର୍ମଚାରୀଙ୍କ ସଂଖ୍ୟା ଥିଲା ୩୮.୮୨ ଲକ୍ଷ। ୨୦୧୫ ମସିହାରେ ଏହି ସଂଖ୍ୟା କିନ୍ତୁ ୩୦.୮୮ ଲକ୍ଷକୁ ଖସିଆସିଛି। ଏହି ୧୦ବର୍ଷ ଭିତରେ ପ୍ରାୟ ଆଠ ଲକ୍ଷ କର୍ମଚାରୀଙ୍କ ସଂଖ୍ୟା ହ୍ରାସ ପାଇଲାଣି। ଏ ଦେଶର ପ୍ରାୟ ସବୁ ମନ୍ତ୍ରାଳୟରେ କର୍ମଚାରୀଙ୍କ ସଂଖ୍ୟା କମିଛି। ଘରୋଇ ମନ୍ତ୍ରାଳୟରେ କିନ୍ତୁ କର୍ମଚାରୀଙ୍କ ସଂଖ୍ୟା ଏହି ଦଶବର୍ଷ ଭିତରେ ପ୍ରାୟ ୨୫ ପ୍ରତିଶତ ବୃଦ୍ଧି ପାଇଛି। ପ୍ରକାଶଥାଉକି ଏହି ସଂଖ୍ୟା ବୃଦ୍ଧି କେବଳ ପାରାମିଲିଟାରୀ ଫୋର୍ସ ନିଯୁକ୍ତି ଯୋଗୁଁ ହିଁ ସମ୍ଭବ ହୋଇଛି।

ଭାରତର ନିଯୁକ୍ତି ଏବଂ ନିଯୁକ୍ତି ସୁଯୋଗ ନେଇ ଏକ ତଥ୍ୟ ଭାରତର ସାମ୍ପୁଲ୍ ସର୍ଭେ କହିଛି। ଏଠି ୨୬ ବର୍ଷର ସଂସ୍କାର ଏବଂ ସଂସ୍କାର ଜନିତ ସମସ୍ତ ନୀତି

ସତ୍ତ୍ୱେ ମଧ୍ୟ ନିଯୁକ୍ତିର ହାର ସେତେ ଉଲ୍ଲେଖନୀୟ ହୋଇନାହିଁ। ୧୯୭୨-୭୩ରେ ପ୍ରତି ହଜାରେ ଲୋକ ସଂଖ୍ୟାରେ ୩୫୫ଜଣଙ୍କ ପାଇଁ କାମ ଥିବାବେଳେ ୨୦୧୪-୧୫ ମସିହାରେ ଏହା ମାତ୍ର ୩୭୨ରେ ପହଞ୍ଚିଛି।

ସାମ୍ପୁଲ୍ ସର୍ଭେର ତଥ୍ୟ ଅନୁଯାୟୀ ନିଯୁକ୍ତି ନେଇ ଗ୍ରାମାଞ୍ଚଳର ପରିସ୍ଥିତି ସେତେ ବଦଳି ନାହିଁ। ପୂର୍ବାପେକ୍ଷା ବରଂ ଏହାର ଅବନତି ହୋଇଛି। ୧୯୭୨-୭୩ରେ ପ୍ରତି ହଜାରରେ ଗ୍ରାମାଞ୍ଚଳରେ ନିଯୁକ୍ତି ପରିମାଣ ୪୦୩ଥିଲା । ୨୦୧୪-୧୫ରେ ଏହି ସଂଖ୍ୟା କମିଯାଇ ୩୯୯ ହୋଇଯାଇଛି।

ସହରାଞ୍ଚଳରେ ମଧ୍ୟ ନିଯୁକ୍ତି ହାର ସେମିତି କିଛି ଦୃଢ଼ ଗତିରେ ବୃଦ୍ଧି ପାଇନାହିଁ। ୧୯୭୨-୭୩ରେ ପ୍ରତି ହଜାରରେ ଏହି ନିଯୁକ୍ତି ସଂଖ୍ୟା ୩୦୭ ଥିବାବେଳେ ୨୦୧୪-୧୫ରେ ଏହି ସଂଖ୍ୟା ସାମାନ୍ୟ ବୃଦ୍ଧି ପାଇ ୩୪୪ ହୋଇଛି।

ସର୍ଭେରେ ପୁରୁଷ ଏବଂ ମହିଳାଙ୍କ ନିଯୁକ୍ତି ସମ୍ପର୍କରେ ଏକ ପୃଥକ ପରିସଂଖ୍ୟାନ ରହିଛି। ୧୯୭୨-୭୩ରେ ସହରାଞ୍ଚଳରେ ୪୭୭ଜଣ ପୁରୁଷ ଏବଂ ୧୦୮ଜଣ ମହିଳାଙ୍କ ପାଇଁ କାମଥିବା ବେଳେ ୨୦୧୪-୧୫ରେ ଏହି ସଂଖ୍ୟାର ପରିମାଣ ପୁରୁଷ ଏବ ସ୍ତ୍ରୀଙ୍କ ପାଇଁ ଯଥାକ୍ରମେ ହୋଇଛି ୫୧୯ ଏବଂ ୧୩୩। ଗ୍ରାମାଞ୍ଚଳରେ ଏହି ସମୟ ଭିତରେ ୪୮୮ ପୁରୁଷ ଏବଂ ୨୧୬ଜଣ ମହିଳା କର୍ମ ନିଯୁକ୍ତିର ସୁବିଧା ଏବେ ପାଉଛନ୍ତି ଯାହା ୧୯୭୨-୭୩ରେ ୪୭୮ ଏବଂ ୨୦୪ ଥିଲା। କୃଷିଭିତ୍ତିକ ଶିଳ୍ପର ଅଭାବରେ ଯେ ନିଯୁକ୍ତିର ସୁଯୋଗ ଗ୍ରାମାଞ୍ଚଳରେ ବୃଦ୍ଧି ପାଇନାହିଁ, ଅର୍ଥନୈତିକ ସର୍ଭେର ଏହା ଏକ ତଥ୍ୟ। ସର୍ବେକ୍ଷଣରେ ଏପରି ଏକ ସୂଚନା ଆସିଛି ଯେ ୧୯୯୧ ରୁ ୨୦୧୪-୧୫ ମସିହା ପର୍ଯ୍ୟନ୍ତ ଶ୍ରମଶକ୍ତିର ବୃଦ୍ଧି ୨.୫୪ହାରରେ ହୋଇଥିବାବେଳେ ନିଯୁକ୍ତି ହାର ୨.୪୮ରେ ସୀମିତ ରହିଛି।

ଆର୍ଥିକ ଉଦାରୀକରଣ, ଏବଂ ଘରୋଇକରଣ ଯେ ବେକାରୀ ସମସ୍ୟା ସମାଧାନରେ ସେତେ ସହାୟକ ହୋଇପାରିନାହିଁ, ଏହାର ସ୍ପଷ୍ଟ ଚିତ୍ର ଅର୍ଥନୈତିକ ସର୍ଭେରେ ଅଛି। ଉଭୟ ସରକାରୀ ଏବଂ ସଂଗଠିତ କ୍ଷେତ୍ରରେ ନିଯୁକ୍ତି ହ୍ରାସ ପାଇଛି। ୧୯୭୨-୭୩ରେ ସରକାରୀ ସେକ୍ଟରରେ ନିଯୁକ୍ତି ହାର ୧.୨୦ଥିଲା। ଅଥଚ ୨୦୧୪-୧୫ରେ ଏହି ହାର ୦.୩୮ ହୋଇଛି।

ଘରୋଇ କ୍ଷେତ୍ର ବିଶେଷ କରି ଆଇଟି କ୍ଷେତ୍ରରେ ନିଯୁକ୍ତିର ଯେଉଁ ଊର୍ଦ୍ଧ୍ୱଗାମୀ ଧାରାଟିଏ ଗତ ଦଶବର୍ଷ ଧରି ସୃଷ୍ଟି ହୋଇଥିଲା ଏହା ଏବେ କମିବାକୁ ଆରମ୍ଭ କଲାଣି ବୋଲି ସୂଚନା ଦିଆଗଲାଣି। ଅବଶ୍ୟ ପ୍ରତି ସେକ୍ଟରର ଧାରଣ କରିବା ଶକ୍ତି ମଧ୍ୟ ସୀମିତ। ଏ ଦେଶର ପ୍ରତିବର୍ଷ ଲକ୍ଷ ଲକ୍ଷ ବୈଷୟିକ ଶିକ୍ଷା ପ୍ରାପ୍ତ ପିଲାଙ୍କୁ ନିଯୁକ୍ତି

ଦେବାରେ ବିସ୍ତାରିତ ଶିକ୍ଷାୟନ ଯେଉଁ ନିଯୁକ୍ତି ଦିଅନ୍ତା ତାହା ହୋଇପାରୁନାହିଁ। କାରଣ ହେଉଛି, ଶିକ୍ଷାୟନ ଏବଂ ବିସ୍ଥାପନ ନେଇ ଦ୍ୱନ୍ଦ୍ୱ ଭାରତ ସାରା ଏକ ବୃହତ୍ ସମସ୍ୟା।

ଅନ୍ୟ ଏକ କଥାଟି ହେଲା ଭାରତରେ ନିଯୁକ୍ତିର ରୂପ ଏବେ ବଦଳିଛି। ନିୟମିତ ଚାକିରି ବଦଳରେ ଚାକିରିର ଠିକାକରଣ ବା ସାମୟିକକରଣ ହୋଇଛି। ଅନ୍ୟ କଥାରେ କହିଲେ ଏହା କଣ୍ଟ୍ରାକ୍ଟୁଆଲାଇଜେସନ୍ ବା କାଜୁଆଲାଇଜେସନ୍ ଅଫ୍ ଲେବର ଏବଂ କର୍ମଚାରୀଙ୍କ ମଧ୍ୟରେ ଏବେ ଅଧିକାଂଶ ମହିଳା କର୍ମଚାରୀ ରହିଲେଣି। ଆନ୍ତର୍ଜାତୀୟ ଶ୍ରମ ସଂଗଠନର ଭାରତର ନିଯୁକ୍ତି ପ୍ରକ୍ରିୟା ସମ୍ପର୍କରେ ମତ ହେଲା, ଭାରତରେ ନିଯୁକ୍ତି ଖାଲି ଠିକାରେ ଚାଲିନି; ଏହା ଦାରିଦ୍ର୍ୟର ସ୍ତ୍ରୀକରଣରେ ପରିଣତ ହୋଇଗଲାଣି। ଏହାକୁ କୁହାଯାଉଛି ଫେମିନାଇଜେସନ ଅଫ୍ ପର୍ଭଟି। ଘର କାମ ସହ କମ୍ ଦରମାରେ ଠିକାରେ ଚାକିରି ପାଇଁ ଭାରତରେ ମହିଳାମାନେ ବେଶ୍ ସଂଖ୍ୟାରେ ମିଳୁଛନ୍ତି।

ହଁ ପାଠକ ବନ୍ଧୁ, ଅଭିବୃଦ୍ଧି ଏବଂ ନିଯୁକ୍ତିର ଏହି ଦୁଃଖଦାୟକ ସମ୍ପର୍କକୁ ଲକ୍ଷ୍ୟ କରି ଭାରତରେ  କିଛି ବୌଦ୍ଧିକ ପ୍ରସ୍ତାବ ଆସିଲାଣି । ଏ ପ୍ରସ୍ତାବ ହେଉଛି,  ମୋଟା ଅଙ୍କରେ କାର୍ଯ୍ୟନିର୍ବାହୀ ଅଧିକାରୀ ବା ସିଇଓ ନିଯୁକ୍ତି ବନ୍ଦ ହେବା ଦରକାର । ବିଳାସପୂର୍ଣ୍ଣ ଜୀବନ, ବିଦେଶରେ ବ୍ୟୟ କରିବାର ନିଶା ଏସବୁ ଆର୍ଥିକ ସଂସ୍କାରରେ ଥିବା ମାନବୀୟ ମୁହଁକୁ ଧ୍ୱଂସ କରିଦେଉଛି ଏବଂ ଆର୍ଥିକ ଅସମତା ଦିନେ ହୁଏତ ଧନୀ ଦରିଦ୍ର ଭିତରେ ହିଂସାତ୍ମକ ପରିସ୍ଥିତି ସୃଷ୍ଟି କରିପାରେ।

ବାର୍ଷିକ ଦୁଇ କୋଟିରୁ ଦଶକୋଟି ଟଙ୍କା ପାଉଥିବା ଜଣେ କମ୍ପାନୀର ସିଇଓ ପ୍ରତି ଆର୍ଥିକ ଅଭିବୃଦ୍ଧିର କିଛି ମାନେ ଥାଇପାରେ। ଅଥଚ ବିପିଏଲ କାର୍ଡ ଥାଇ ଅର୍ଥ ଅଭାବରୁ ଚାଉଳ କିଣି ପାରୁନଥିବା ବ୍ୟକ୍ତିଟିଏ ପାଇଁ ଦୁଇ ଅଙ୍କ ବିଶିଷ୍ଟ ଆର୍ଥିକ ଅଭିବୃଦ୍ଧିର କିଛି ମାନେ ନଥାଏ।

ସୁତାରଂ ଅଭିବୃଦ୍ଧି ସହ ନିଯୁକ୍ତିର ଧାରା ସୃଷ୍ଟି ହେବା ଉଚିତ୍ ଏବଂ ଏଇ ନିଯୁକ୍ତି ବଞ୍ଚିବା ଯୋଗ୍ୟ ହେବା ଦରକାର । କାରଣ ଏହା ବି କୁହାଯାଏ, ଭାରତରେ ନିଯୁକ୍ତିର ଅଭାବ ନାହିଁ କିନ୍ତୁ ଏ ନିଯୁକ୍ତିରେ ଯେଉଁ ପ୍ରାପ୍ୟ ମିଳେ ଏଥିରେ ବଞ୍ଚିବା କଷ୍ଟ । ଆର୍ଥିକ ସଂସ୍କାରରେ ବିଶ୍ୱାସ ରଖିଥିବା ସାଧାରଣ ମଣିଷ ଏହା ଚାହେଁ ଯେ ଆର୍ଥିକ ଅଭିବୃଦ୍ଧି ସହ ବଞ୍ଚିବାଯୋଗ୍ୟ ନିଯୁକ୍ତି ଦରକାର । ନଚେତ୍ ମାନବୀୟ ମୁହଁର ପ୍ରତିଶ୍ରୁତି ନେଇ ଆସିଥିବା ସାମ୍ପ୍ରତିକ ଆର୍ଥିକ ସଂସ୍କାର ଶେଷରେ ଏକ ଅସୁରଟିଏ ହୋଇଯିବ।



# ବିଦେଶରେ ପଢ଼ିବା ନିଶା

ଏ ଲେଖକର ଜଣେ ଆତ୍ମୀୟ ଏବେ ବିଦେଶରୁ ଉଚ୍ଚଶିକ୍ଷା ପାଇ ଆସିଥିବା ତାଙ୍କ ପୁଅ କଥା କହୁଥିଲେ । ପୁଅ ତାଙ୍କର ଋଷିଆରୁ ଡାକ୍ତରୀ ପାଶ୍ କରି ଆସିଛି । ଭାରତରେ ସେ ଚାକିରି କିମ୍ବା ପ୍ରାକ୍ଟିସ୍ କରିବାକୁ ଚାହେଁ । କିନ୍ତୁ ଦୁଃଖ ଯେ ଭାରତ ସରକାର ଋଷିଆର ଏମ୍‌ବିବିଏସ୍ ସାର୍ଟିଫିକେଟ୍‌କୁ ସମ୍ପୂର୍ଣ୍ଣ ଗ୍ରହଣ କରୁନାହାନ୍ତି । କହୁଛନ୍ତି, ଏଠି ରେଜିଷ୍ଟ୍ରେସନ୍ କରିବାକୁ ହେଲେ ଆଉ ଗୋଟିଏ ପରୀକ୍ଷା ଦେବାକୁ ହେବ ।

ଋଷ୍‌ରେ ଡାକ୍ତରୀ ପଢେଇବା ପାଇଁ ସେ ବ୍ୟାଙ୍କରୁ ୮ ଲକ୍ଷ ଟଙ୍କା ଋଣ ନେଇଥିଲେ । ଭବିଷ୍ୟନିଧି ପାଣ୍ଠିରୁ ଜୀବନ ସାରା ଯାହା ଜମା ରଖିଥିଲେ ପିଲାର ପାଠପଢାରେ ଲଗେଇ ଦେଇଥିଲେ । ଜିପିଏଫ୍‌ରେ ଏବେ ତାଙ୍କର କିଛି ନାହିଁ - ଶୂନ । ସେ କହୁଥିଲେ, ଏତେ ଖର୍ଚ୍ଚ କରି ବିଦେଶରେ ପାଠ ପଢାଇବା ନିରର୍ଥକ । ବିଦେଶୀ ଉଚ୍ଚଶିକ୍ଷା ଏକ ମିଥ୍ ।

ଏମିତି ଦୁଃଖ ବିଦେଶରେ ପ୍ରଚୁର ଅର୍ଥ ଖର୍ଚ୍ଚ କରି ପାଠ ପଢି ଘରେ ବେକାର ହୋଇ ବସିଥିବା କେବଳ ଜଣେ ପିଲାର ପିତାର ନଥିବ । ଅନେକ ପିତାମାତାଙ୍କର ଏପରି ଅବସାଦ ବି ରହିଥିବ । ତଥାପି କିନ୍ତୁ ଦେଶ ବାହାରେ ପିଲାଙ୍କୁ ପାଠ ପଢାଇବାର ନିଶା କମୁନି । ଏହା ଏକ ଆତ୍ମାଭିମାନ ଯେ ପୁଅ ବିଦେଶରେ ପଢୁଛି ।

ଅତୀତରେ ବିଦେଶ ଯିବାକୁ ଭାରତୀୟମାନେ ପସନ୍ଦ କରୁନଥିଲେ । ସାତ ଦରିଆ ପାରି ହୋଇଗଲେ ପାପ ବୋଲି ଭାବୁଥିଲେ । ଯିଏ ବା ବିଦେଶ ଯାଉଥିଲା ସେଠାରୁ ଫେରିଲେ ଶୁଦ୍ଧ ଓ ପବିତ୍ର ହେବାର ବ୍ୟବସ୍ଥା ଥିଲା । ଏଇ ୧୯୭୦ ଏବଂ ୮୦ ଦଶକରେ ମଧ୍ୟ ବିଦେଶରେ ପାଠପଢାକୁ ଭାରତୀୟ ପିତାମାତାମାନେ ସହଜରେ ନେଇପାରୁନଥିଲେ । ଭୟ ଥିଲା ଉଚ୍ଚ ଶିକ୍ଷା ଶେଷରେ ପିଲା ତାଙ୍କର ହୁଏତ ସେଠାରୁ ନ ଫେରିପାରେ କିମ୍ବା ପଶ୍ଚିମ ସଂସ୍କୃତିର ପ୍ରଭାବରେ ତାର ଚାରିତ୍ରିକ ସ୍ଖଳନ ଆସିଯାଇପାରେ ।

ଏବେ କିନ୍ତୁ ସେ ଧାରଣା ନାହିଁ । ଭାରତୀୟଙ୍କ ଦୃଷ୍ଟିଭଙ୍ଗୀରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆସିଯାଇଛି । ବିଶେଷ କରି ୧୯୯୦ ଦଶକରୁ ଭାରତୀୟ ମଧ୍ୟବର୍ଗଙ୍କ ଭିତରେ ନିଜ

ପିଲାଙ୍କୁ ବିଦେଶରେ ଶିକ୍ଷା ଦେବାରେ ଆଗ୍ରହ ବେଶି ଜମିଛି । ଏଥିପାଇଁ ଜଗତିକରଣ ପ୍ରକ୍ରିୟାକୁ ଧନ୍ୟବାଦ ଦିଆଯାଇପାରେ ।

ହଁ ପାଠକ ବନ୍ଧୁ ! ବିଦେଶରେ ଯେତେ ପିଲା ପଢୁଛନ୍ତି ସେଥିରୁ ଅଧିକାଂଶ ହେଉଛନ୍ତି ଭାରତୀୟ ମଧ୍ୟବିତ୍ତ ଶ୍ରେଣୀର । କାରଣ ହେଉଛି ୧୯୯୦ ଦଶକରେ ଅର୍ଥନୈତିକ ସଂସ୍କାର ପରେ ଏବଂ ଭାରତର ସବୁ ସର୍ଭିସ୍ ସେକ୍ଟରରେ ବେତନ ବୃଦ୍ଧି ଲାଗୁ ହେବା ପରେ ଭାରତରେ ମଧ୍ୟବର୍ଗଙ୍କ ସଂଖ୍ୟା ବଢ଼ିଛି । ଏମାନେ ତୁଳନାତ୍ମକଭାବେ ଟିକିଏ ବିତ୍ତଶୀଳ ହୋଇ ଯାଇଛନ୍ତି । ଏମାନଙ୍କର ପ୍ରୋଭିଡେଣ୍ଟ୍ ଫଣ୍ଡ୍ ଏବଂ ସଞ୍ଚୟ ଖାତାରେ ଜମା ବଢ଼ିଛି । ଅର୍ଥନୈତିକ ସଂସ୍କାରର ଅନୈତିକ ଫାଇଦା ନେଇ କିଛି ପଦାଧିକାରୀ କଳାଧନର ମାଲିକ ହୋଇଛନ୍ତି । ଆଶାତୀତ ଏଇ ଆର୍ଥିକ ସ୍ୱଚ୍ଛଳତା ତେଣୁ ନିଜ ପିଲାଙ୍କର ବିଦେଶୀ ଶିକ୍ଷା ପାଇଁ ଭାରତୀୟ ମଧ୍ୟବର୍ଗଙ୍କୁ ଅସ୍ଥିର କରିଛି । ଏହା ଏକ ପୁଶ୍ ଫାକ୍ଟର ।

ଏବଂ ଦ୍ୱିତୀୟ କାରଣଟି ହେଲା ଏଠି ଅଧିକାଂଶ ମଧ୍ୟବିତ୍ତ ଭାରତୀୟଙ୍କ ଧାରଣା ଯେ ବିଦେଶରେ ଶିକ୍ଷାପ୍ରାପ୍ତ ହେଲେ ଆନ୍ତର୍ଜାତିକ ସ୍ତରରେ ପ୍ରତିଯୋଗିତା କରିବା ଏବଂ ଏଥିରେ ସଫଳତା ପାଇବା ସହଜ ହୋଇଯିବ । ବିଶ୍ୱବ୍ୟାଙ୍କ , ଆଇଏମ୍ଏଫ୍ ଏବଂ ଜାତିସଂଘ ପରି ସଂସ୍ଥାମାନଙ୍କରେ ନିଯୁକ୍ତି ପାଇଯିବା କିଛି ଅସୁବିଧା ହେବନି । ଏପରିକି ଆମେରିକା ସମେତ ଅନେକ ବିଦେଶୀ କର୍ପୋରେଟ୍ ସେକ୍ଟରରେ ଚାକିରି ସୁବିଧାରେ ମିଳିଯିବ । ଠିକ୍ ଏଇ କାରଣ ଯୋଗୁଁ ହିଁ ଭାରତୀୟ ମିଡିଲ୍ କ୍ଲାସ ଧନୀମାନଙ୍କର ହଜାର ହଜାର ପିଲା ବିଦେଶକୁ ପଢିବାକୁ ଯାଉଛନ୍ତି ।

ଏବେ ଏକ ରିପୋର୍ଟ ବାହାରିଥିଲା । ବିଦେଶରେ ଅଣ୍ଡର ଗ୍ରାଜୁଏଟ୍ ସ୍ତରରେ ପାଠପଢାପାଇଁ ଏବର୍ଷ ଭାରତୀୟ ଛାତ୍ରଛାତ୍ରୀଙ୍କ ସଂଖ୍ୟା ପ୍ରାୟ ୩୨ ପ୍ରତିଶତ ବଢ଼ିଛି । ଏଇ ପିଲାମାନେ ଇଂଲଣ୍ଡ, ଆମେରିକା, ଅଷ୍ଟ୍ରେଲିଆ ଏବଂ କାନାଡା ଆଦି ଦେଶକୁ ଯାଇଛନ୍ତି । ସେଠି ବିଶ୍ୱବିଦ୍ୟାଳୟମାନଙ୍କରେ ଥିବା ବିଜିନେସ୍ ମ୍ୟାନେଜମେଣ୍ଟ, ସୂଚନା ଏବଂ ପ୍ରଯୁକ୍ତି ବିଦ୍ୟା ଏବଂ ଇଞ୍ଜିନିୟରିଂ ପଢିବା ପାଇଁ ଏଇ ପିଲାଙ୍କର ଆଗ୍ରହ ବେଶି ।

ନିୟୁର୍କରେ ଫିଲ୍ମ ପ୍ରସ୍ତୁତି ପାଠପଢା କୁଆଡେ ଭଲ । ଲଣ୍ଡନରେ ସୋସିଆଲ ସାଇକୋଲୋଜି ଏବଂ ଲିଡର ଟେକ୍ନୋଲୋଜି, ଡେନମାର୍କରେ ପରିବେଶ ବିଜ୍ଞାନ, ମାନିଲାରେ ବିଜିନେସ୍ ଓ ଆଡମିନିଷ୍ଟ୍ରେସନ, ସିଡ୍‌ନୀରେ ଇଭେଣ୍ଟ ମ୍ୟାନେଜମେଣ୍ଟ ଖୁବ କୁଆଡେ ଉଚ୍ଚମାନର । ଏଥିପାଇଁ ପ୍ରଚାର ହେଉଛି ବେଶି । କୁହାଯାଉଛି ବିଶେଷଜ୍ଞ

ହେବାକୁ ଏଠି ତାଲିମ ଦିଆଯାଏ । ଏସବୁ ସ୍ପେସିଆଲାଇଜେସନ୍ କୋର୍ସ । ଅନ୍ୟ କଥାରେ କହୁଛନ୍ତି ଷ୍ଟିମ୍‌ଡ ଏଜୁକେଶନ ।

ଏ ଆଲୋଚନାରେ ଏଇଠି ଏତେ ସବୁ ପଢ଼ିବା ପରେ ପ୍ରଶ୍ନ ଆସିବଣି ବିଦେଶୀ ପଢାରେ ତେବେ ଅସୁବିଧା କେଉଁଠି ? ଏ ପାଠପଢା ମିଥ୍ କାହିଁକି ହେବ ?

ବିଦେଶୀ ଶିକ୍ଷାଗତ ଯୋଗ୍ୟତା ପାଇଥିବା ବ୍ୟକ୍ତିଙ୍କର ବାସ୍ତବ ଅବସ୍ଥା କିନ୍ତୁ ନିଆରା । ସେଇ ଅବସ୍ଥାର କିଛି ଅଂଶ ଏଠି ବର୍ଣ୍ଣନାକୁ ଆସିପାରେ ।

ପ୍ରାୟ ୨୦ ବର୍ଷ ତଳେ ବିଦେଶୀ ପଢୁଆ ପିଲାମାନଙ୍କୁ ଆନ୍ତର୍ଜାତିକ ସଂସ୍ଥାମାନଙ୍କରେ ଯେ ଭଲ ଚାକିରି ମିଳିଯାଉଥିଲା – ଏହା ସତ । ଏବେ କିନ୍ତୁ ସେ ପରିସ୍ଥିତି ନାହିଁ । ପୃଥିବୀର ସଂପ୍ରତିକ ଧାରା ଭିନ୍ନ ହୋଇଯାଇଛି ।

୧୯୮୦ ଦଶକର ମଧ୍ୟଭାଗରୁ ବିଶ୍ୱ ବ୍ୟାଙ୍କ, ଆଇଏମ୍‌ଏଫ୍ ଏବଂ ଜାତିସଂଘ ପରି ବିଶ୍ୱସଂସ୍ଥାମାନଙ୍କରେ କର୍ମଚାରୀ ସ୍ତରରେ ପୁନର୍ବିନ୍ୟାସ ଚାଲିଛି । ଆବଶ୍ୟକତାଠାରୁ ଏଥିରେ ଅଧିକ କର୍ମଚାରୀ ଅଛନ୍ତି ବୋଲି ଅଭିଯୋଗ ହେଉଛି । କର୍ମଚାରୀଙ୍କ ସଂଖ୍ୟା ତେଣୁ ଏଠାରେ ହ୍ରାସ ହେଉଛି । ଚାକିରି ପାଇଁ ଏଇ ସଂସ୍ଥାମାନଙ୍କରେ ଏବେ ଆଉ ଖାଲି ସ୍ଥାନ ନାହିଁ ଏବଂ ସବୁଠାରୁ ବଡ କଥା ହେଲା, ବିଶ୍ୱସଂସ୍ଥାମାନଙ୍କରେ ନିଯୁକ୍ତି ପାଇଁ ଭାରତରେ ଶିକ୍ଷାପ୍ରାପ୍ତ ଭାରତୀୟଙ୍କ ପାଇଁ କିଛିକୋଟା ବି ଅଛି । ଅଥଚ ବିଦେଶରୁ ପଢି ଆସିଥିବା ଭାରତୀୟ ପିଲାଙ୍କ ପାଇଁ କିନ୍ତୁ ସେମିତି କିଛି ଏଠି ବିଶେଷ ସୁବିଧା ନାହିଁ ।

ଅନ୍ୟ ଏକ ବାସ୍ତବତା ହେଲା ଆମେରିକା କର୍ପୋରେଟ୍ କମ୍ପାନୀ ମାନଙ୍କରେ ବିଦେଶୀ ପିଲାମାନଙ୍କୁ ଚାକିରି ମିଳିବା ଏବେ କଷ୍ଟ ହୋଇଗଲାଣି । ଆମେରିକୀୟ ଗ୍ରୀନ୍ କାର୍ଡ ନଥିଲେ ଚାକିରି ସେଠି ମିଳୁନି ଏବଂ ବିଦେଶୀ ପିଲାଙ୍କୁ ଚାକିରି ଦେଲେ ଆମେରିକୀୟ ନିଯୁକ୍ତିଦାତାଙ୍କୁ ସାର୍ଟିଫିକେଟ୍ ଦେବାକୁ ହେଉଛି ଯେ ସେ ଚାକିରି ପାଇଁ ଉପଯୁକ୍ତ ଶିକ୍ଷାପ୍ରାପ୍ତ ଆମେରିକୀୟ ପିଲାଏ ନଥିଲେ ।

ବିଦେଶରେ ପାଠପଢା ପାଇଁ ନିଜ ପିଲାଙ୍କୁ ପଠାଉଥିବା ଭାରତୀୟ ମଧ୍ୟବିତ୍ତୀୟ ପିତାମାତାମାନେ ମାନନ୍ତୁ ନା ନ ମାନନ୍ତୁ ଏହା କିନ୍ତୁ ସତ । ଏହା ବି ସତ ଯେ ବିଦେଶୀ ବିଶ୍ୱବିଦ୍ୟାଳୟ ମାନଙ୍କରେ ଅଧ୍ୟାପକ ଚାକିରିରେ ମଧ୍ୟ ହ୍ରାସ ଦେଖା ଦେଇଛି । ଭାରତୀୟ ବିଶ୍ୱବିଦ୍ୟାଳୟ ପରି ସେଠାରେ ଶିକ୍ଷାନୁଷ୍ଠାନ ବି ଆର୍ଥିକ ସଂକଟରେ ଅଛନ୍ତି ।

ସୁତରାଂ ବିଦେଶରୁ ପାଠପଢି ଆସିବା ପରେ ପିଲାଙ୍କ ପିତାମାତାଙ୍କର ଦୁଃଖ

ଏବେ ବଢିଯାଇଛି । ଏ ଆଲୋଚନାର ଆରମ୍ଭରେ ଏ ଲେଖକ ଯେଉଁ ଆତ୍ମୀୟଙ୍କ କଥା କହୁଥିଲେ ଠିକ୍ ସେମିତି ।

ପିତାମାତାଙ୍କ ଆଶା ଥିଲା – ବିଦେଶରେ ପାଠପଢା ଠିକ୍ ସରିବା ପରେପରେ ପିଲାଙ୍କୁ ଉପଯୁକ୍ତ ଚାକିରି ମିଳିଯିବ । ନିଜେ କରିଥିବା ଋଣ ସୁଝିଯିବ । ଏହା କିନ୍ତୁ ହେଉନି । ବିଦେଶୀ ଶିକ୍ଷାପ୍ରାପ୍ତ ପରେ ପିଲାଏ ଏଠି ଛୋଟ ଚାକିରି କରିବାକୁ ପସନ୍ଦ କରୁନାହାନ୍ତି ଯାହା ଭାରତରେ ସମଶିକ୍ଷାପ୍ରାପ୍ତ ଜଣେ ପିଲା ସହଜରେ ଗ୍ରହଣ କରିନେଉଛି ।

ବିଦେଶୀ ଶିକ୍ଷାପ୍ରାପ୍ତ ପରେ ବେକାରୀ ଏବେ ପାରିବାରିକ ଦ୍ୱନ୍ଦ୍ୱ ଆଣିଲାଣି । ହତାଶା ବଢୁଛି । ସ୍ୱପ୍ନ ଏବଂ ପ୍ରତ୍ୟାଶା ଯେତେବେଳେ ନିର୍ଦ୍ଦୟ ଭାବେ ଭାଙ୍ଗିଯାଏ ଏପରି ହତାଶା ଆସିବା ବି ସ୍ୱାଭାବିକ ।

ଆସଲ କଥା ହେଉଛି - ନିଜ ପିଲାଙ୍କର ବିଦେଶରେ ପାଠପଢା ପାଇଁ ଭାରତୀୟ ମଧ୍ୟବର୍ଗ ସଂପ୍ରତି ଯେପରି ଏକ ନିଶାରେ ପଡିଯାଇଛି । ଏକ 'ଉନ୍ନତ ମାନସିକତାରେ ବାନ୍ଧି ହୋଇଯାଇଛି । ଏହା କ୍ରେଜ୍ ।

ଯଦିଓ ଅଧିକାଂଶ ଭାରତୀୟଙ୍କୁ ଏହା ଜଣା ଯେ ବିଦେଶୀ ବିଶ୍ୱବିଦ୍ୟାଳୟ-ମାନଙ୍କରେ ହେଉଥିବା ଶିକ୍ଷାଦାନ ଭାରତୀୟ ଶିକ୍ଷାନୁଷ୍ଠାନ ମାନଙ୍କଠାରୁ ମୋଟେ ଉନ୍ନତ ନୁହେଁ ଏବଂ ଭାରତରେ ମଧ୍ୟ ଉନ୍ନତ ମାନର ଶିକ୍ଷାନୁଷ୍ଠାମାନଙ୍କର ଆଉ ଅଭାବ ନାହିଁ ତଥାପି କାହିଁକି ବିଦେଶୀ ବିଶ୍ୱବିଦ୍ୟାଳୟମାନଙ୍କରେ ନିଜ ପିଲାଙ୍କର ପାଠ ପଢାଇବାର ଏଠି କ୍ରେଜ୍ କମୁନି । ଏଇ ଅହେତୁକ ଆଗ୍ରହର ଫାଇଦା ନେବାରେ ତେଣୁ ବିଦେଶୀ ଶିକ୍ଷା ସଂସ୍ଥାମାନ ହାତଛଡା କରିବାକୁ ଚାହୁଁନାହାନ୍ତି ।

ସେମାନେ ଏଥିରେ ଭାରତୀୟ ବିଭିନ୍ନ ଗଣମାଧ୍ୟମରେ ବହୁଳ ଭାବେ ବିଜ୍ଞାପନ ଦେଉଛନ୍ତି ଏବଂ ସ୍ୱପ୍ନର ପସରା ମେଲି ଦେଇ ଭାରତୀୟ ପିଲାଙ୍କୁ ଆକୃଷ୍ଟ କରୁଛନ୍ତି । ଖାଲି ସେତିକି ନୁହେଁ, ବିଦେଶୀ ଶିକ୍ଷା ସଂସ୍ଥା ସବୁ ଭାରତୀୟ ମଧ୍ୟବର୍ଗଙ୍କ ସଞ୍ଚୟ ଉପରେ ଏବେ ଆଖି ରଖିଛି । ସେମାନଙ୍କ ବିଶ୍ୱାସ, ଥରେ ଭାରତରୁ ପିଲାଟିଏ ଆସି ଏଠି ନାଁ ଲେଖାଇ ଦେଲେ ଭାରତରୁ ଅର୍ଥ ଆସିବାରେ କିଛି ଅସୁବିଧା ହେବନି । ଭାରତୀୟ ପାରିବାରିକ ବ୍ୟବସ୍ଥା ମଧ୍ୟ ବିଦେଶରେ ପାଠପଢାକୁ ଅର୍ଥ ସାହାଯ୍ୟ କରିବାରେ କୁଣ୍ଠା କରେନି ।

ଭାରତୀୟ ମଧ୍ୟବର୍ଗ ଏସବୁ ଜାଣେ । ଏହା ବି ଜାଣେ ଯେ ବିଦେଶରେ ପଢାଇବା ଖର୍ଚ୍ଚ ବର୍ତ୍ତମାନ ବଢିଗଲାଣି; ସେଠି ପଢିସାରିବା ପରେ ବି ଚାକିରି ମିଳୁନି

ଏବଂ ଭାରତରେ ଶିକ୍ଷାପ୍ରାପ୍ତ ପିଲାଏ ଭାରତ ଏବଂ ଭାରତ ବାହାରେ ବି ଭଲ ଚାକିରିରେ ଅଛନ୍ତି । ତଥାପି ପାଠପଢା ପାଇଁ ପିଲାଙ୍କୁ ବିଦେଶ ପଠାଇବାର ନିଶା ଅମାପ ।

କାରଣ କେବଳ ଏଇଆ - ଶିକ୍ଷାକୁ ଏଠି ଏକ ପୁଞ୍ଜିନିବେଶ ବା ଇନ୍‌ଭେଷ୍ଟମେଣ୍ଟ ବୋଲି ଧରି ନିଆଗଲାଣି । ଭାରତୀୟ ମଧ୍ୟବର୍ଗ ଶିକ୍ଷାର ଏକ ବଡ ଉପଭୋକ୍ତା ହେବାକୁ ଚାହେଁ ଏବଂ ବିଦେଶୀ ଶିକ୍ଷାଗତ ଯୋଗ୍ୟତା ଯେ ଏଇ ପୁଞ୍ଜିନିବେଶକୁ ପୁରା ଲାଭଦାୟକ କରିପାରିବ ଏଇ ସ୍ୱପ୍ନର ଏଠି ଅନେକ ପିତାମାତା ଅଛନ୍ତି ।

ହଁ, ଏଇ ଆଲୋଚନାର ଏଇ ପ୍ରଶ୍ନ ସହ ଏଠାରେ ଉପସଂହାର କରିବାକୁ ଇଚ୍ଛା । ନିଜ ସଞ୍ଚିତ ଅର୍ଥକୁ ବିଦେଶୀ ଦ୍ୱିତୀୟ ଶ୍ରେଣୀ ଶିକ୍ଷାନୁଷ୍ଠାନମାନଙ୍କୁ ଟେକି ଦେଇ ନିଜ ପିଲାଙ୍କୁ ଏକ ବାହାର ସେକେଣ୍ଡ ଗ୍ରେଡ୍ ଶିକ୍ଷା ଦେବାର ନିଶା ଆଉ କେତେ ଦିନ ? ବିଦେଶୀ ଶିକ୍ଷାର ଏକ ଅଦ୍‌ଭୁତ ମିଥ୍ ପଛରେ ବାସ୍ତବରେ ଆମେ ଏବେ କାହିଁକି ଦଉଡୁଛୁ ?



# ଅସାଧୁ ବାବୁ, ଦୁର୍ବଳ ନେତା ଓ ଉଦାସୀନ ସମାଜ

ଭାରତ ବର୍ଷରେ ଭ୍ରଷ୍ଟାଚାର ବୃଦ୍ଧିର କାରଣରେ ଏକ ନୂଆ ସମୀକରଣଟିଏ ଆସିଛି । ସେ ସମୀକରଣ ହେଉଛି, ଏଠି ଥିବା ଅସାଧୁ ବାବୁ, ଲୋଭୀ ତଥା ଦୁର୍ବଳ ନେତା ଏବଂ ବର୍ତ୍ତମାନର ଉଦାସୀନ ସମାଜ ଭିତରେ ମହାମେଣ୍ଟ । ବାବୁଙ୍କୁ ଶୃଙ୍ଖଳିତ କରିବାକୁ ଏବଂ ଦଣ୍ଡର ଭୟ ପାଇଁ ଚରିତ୍ରର ନିୟମାବଳୀ ଥିଲେ ବି ନିଜସ୍ୱ ସ୍ୱାର୍ଥ ନିମନ୍ତେ ବାବୁମାନେ ନିର୍ଲ୍ଲଜ ଭାବେ ସେ ନିୟମାବଳୀ ଭାଙ୍ଗୁଛନ୍ତି । ସଂସଦୀୟ ଗଣତନ୍ତ୍ରରେ ପ୍ରଶାସନକୁ ନିୟନ୍ତ୍ରଣରେ ରଖି ଦିଗ୍‌ଦର୍ଶନ ଦେବାକୁ ରାଜନୈତିକ ପ୍ରତିନିଧିଙ୍କ ଦାୟିତ୍ୱ ଥିଲେ ବି ସେ ଦାୟିତ୍ୱ ତୁଲାଇବାକୁ ନେତାଙ୍କର ସାକ୍ଷରତା କିମ୍ବା ଯୋଗ୍ୟତା ନାହିଁ ଏବଂ ସବୁଠାରୁ ବଡ କଥା ହେଲା, ଅସାଧୁବାବୁ ଏବଂ ଦୁର୍ବଳ ନେତାଙ୍କ ଭ୍ରଷ୍ଟାଚାରକୁ ଭାରତୀୟ ସମାଜ ସହ୍ୟ କରିଯାଉଛି । ଏ ସମାଜ ଭାରି ଉଦାସୀନ । ବର୍ତ୍ତମାନର ଭ୍ରଷ୍ଟାଚାର ନେଇ ବାବୁ, ନେତା ଏବଂ ସମାଜର ରାସାୟନିକ ସମୀକରଣର କିଛି କଥା ଆଜି ଏ ଚର୍ଚ୍ଚାରେ ।

ପ୍ରଥମ କଥାଟି ଓଡିଶାରେ ଏଇ ନିକଟ ଅତୀତରେ ହୋଇଥିବା ରାଜ୍ୟସଭା ନିର୍ବାଚନରୁ ଆରମ୍ଭ କରାଯାଇପାରେ । ଅଭିଯୋଗ ଆସିଲା, କିଛି ବିଧାୟକ ଟଙ୍କା ନେଇ ପଣ୍ୟ ଦ୍ରବ୍ୟ ଭାବେ ବିକ୍ରି ହୋଇଗଲେ । ଏହାକୁ କିପରି କୁତ୍ସିତ ନାଁ ଦେଇ ଘୋଡା ବେପାର ବୋଲି କୁହାଗଲା । ଘୋଡାର ନାଁ ନେଇଥିବା ନେତାଙ୍କୁ ମଧ୍ୟ ମୂଲ୍ୟ ଦେଇ କିଣାଗଲା । କିଣିବା ଏଠି କେବେ କିନ୍ତୁ ବଡ ପ୍ରଶ୍ନ ନୁହେଁ । ପ୍ରଶ୍ନ ହେଉଛି, ସୁସ୍ଥ ଗଣତନ୍ତ୍ର ପାଇଁ ଲୋକଙ୍କୁ ମୂଲ୍ୟବୋଧର ପ୍ରତିଶ୍ରୁତି ଦେଇ ଏବଂ ନିଜ ଦଳ ପ୍ରତି ଆନୁଗତ୍ୟର ଶପଥ ନେଇ ଯେଉଁ ଲୋକପ୍ରତିନିଧିମାନେ ଆସିଥିଲେ ସେମାନେ ନିଜ ନୈତିକତା ନିଜେ ହତ୍ୟା କରିଦେଲେ । ଏହା ହୁଏତ କିଛି ବ୍ୟକ୍ତିଗତ ଏକକ ଘଟଣା ହୋଇପାରେ । ଏ ଘଟଣା କିନ୍ତୁ ସମସ୍ତ ରାଜନୈତିକ ଶ୍ରେଣୀକୁ ପ୍ରଭାବିତ କରୁଛି ଏବଂ ଯେହେତୁ ରାଜନେତାଙ୍କୁ ଭାରତୀୟ ସମାଜ ବେଶୀ ବିଶ୍ୱାସ କରେ, ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ ନିମନ୍ତେ ତଥାକଥିତ ଏ ଘୋଡା ବେପାର ସଂପ୍ରତି ଏକ ବଡ ପ୍ରସଙ୍ଗ ।

ଦ୍ୱିତୀୟ କଥାଟି ହେଉଛି ସାମାଜିକ ଭ୍ରଷ୍ଟାଚାରର ନୂଆରୂପ । ଇଏ ଏବେ ଗ୍ରାମାଞ୍ଚଳରେ ସରକାରୀ ବିଦ୍ୟାଳୟ ମାନଙ୍କରେ ହେଉଛି । ଏପରି ଜଣାଯାଏ, ଅନେକ ଦଳିତ ପିଲାଙ୍କର ବାପା ମା'ମାନେ ନିଜ ପିଲାଙ୍କୁ ସ୍କୁଲକୁ ନପଠାଇ ତାଙ୍କ ପିଲାଙ୍କ ନାଁରେ ଆସୁଥିବା ଷ୍ଟାଇପେଣ୍ଡ ଅର୍ଥ ଏବଂ ମଧ୍ୟାହ୍ନ ଭୋଜନ ଟଙ୍କା ସ୍କୁଲରୁ ଜବରଦସ୍ତ ନିଅନ୍ତି । ପ୍ରଧାନଶିକ୍ଷକ ଏବଂ ପିଲାଙ୍କ ଅଭିଭାବକଙ୍କ ମଧ୍ୟରେ ଏ ଟଙ୍କା ବି ବଣ୍ଟାଯାଏ । ଏପରି କରିବାକୁ ପ୍ରଧାନ ଶିକ୍ଷକ କୁଆଡେ ବାଧ୍ୟ ହୁଅନ୍ତି । ସ୍କୁଲରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଉପସ୍ଥାନ ନହେଲେ ପ୍ରଧାନ ଶିକ୍ଷକଙ୍କୁ ଅନ୍ୟତ୍ର ବଦଳି କରିବାକୁ କଡା ସରକାରୀ ନିର୍ଦ୍ଦେଶ ଶିକ୍ଷକଙ୍କୁ ଅନୈତିକ କାର୍ଯ୍ୟ ପାଇଁ ବାଧ କରିଥାଏ । ନିଜ ପିଲାଙ୍କୁ ମୂର୍ଖ ଏବଂ ଅଶିକ୍ଷିତ କରିବାକୁ ବାପା ଯେ ଦୁର୍ନୀତି କରିପାରେ ଭାରତୀୟ ସମାଜରେ ଇଏ ଏବେ ବୃହତ୍ ବିଡମ୍ବନା ।

ତୃତୀୟ କଥାଟି ହେଉଛି ବର୍ତ୍ତମାନ ଘଟିଥିବା ବିହାରର ଏକ ଘଟଣା । ଏଠାରେ କୌଣସି ଏକ ଦଳିତ ଗାଁର ଲୋକମାନେ ନିଜ ପିଲାଙ୍କୁ ପୋଲିଓ ଟୀକା ଦେବାକୁ ମନା କରିଦେଲେ ଏବଂ କହିଲେ, ପୋଲିଓର ଆବଶ୍ୟକତା ନାହିଁ । ସେମାନଙ୍କର ଯୁକ୍ତି ଥିଲା, ଶକ୍ତ ଗୋଡର ଦରକାର ବା କ'ଣ ଯେଉଁଠି ଚାଲିବାକୁ ରାସ୍ତା ନାହିଁ । ଇଏ ଏକ ଧମକ ବା ବ୍ଲାକ୍‌ମେଲିଙ୍ଗ କରିବାର ନୂଆ ମାଧ୍ୟମ । ଏବଂ ଏକଥା ବି ଜଣାଗଲା ଯେ ଏ ବ୍ଲାକମେଲିଙ୍ଗ ପାଇଁ ରାସ୍ତା ଠିକାଦାର ଗାଁ ଲୋକଙ୍କୁ ଟଙ୍କା ଦେଇଥିଲା ।

ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଏକ ମଙ୍ଗଳକାରୀ ସ୍କିମ୍ । ଗାଁରେ ଭିତ୍ତିଭୂମି ନିର୍ମାଣ କରି ଗରିବ ଲୋକଙ୍କୁ କର୍ମ ନିଯୁକ୍ତି ଦେବା ଏହାର ଲକ୍ଷ୍ୟ । ବେରୋଜଗାରଙ୍କୁ ରୋଜଗାର ଦେବାକୁ ଏହା ଏକ ଅଭିନବ ଯୋଜନା । କିନ୍ତୁ ଲୋକଙ୍କ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଯୋଜନାକୁ ଯେ ସେଇ ଲୋକମାନେ ବିଫଳ କରିଦିଅନ୍ତି, ମାହାତ୍ମା ଗାନ୍ଧୀଙ୍କ ନାଁରେ ଚାଲୁଥିବା ଗ୍ରାମ୍ୟ ନିଯୁକ୍ତି ଯୋଜନା ତାର ଏକ ସଦ୍ୟତମ ଉଦାହାରଣ । ଦୁର୍ନୀତି ସ୍ୱରୂପ ଠିକ୍ ଏମିତି - ସହର ପାଖ ଗାଁରେ ଥିବା ଗରିବ ଲୋକମାନେ ଗାଁରେ କାମ ପାଇଁ ଏକ ସ୍କିମ୍‌ରେ ନିଜକୁ ରେଜିଷ୍ଟ୍ରିଭୁକ୍ତ କରୁଛନ୍ତି । ଅଥଚ କାମ ନକରି 'ଜବ ଚାର୍ଟ'ରେ ଦସ୍ତଖତ ଦେଇ ଗାଁ ମୁଖିଆ ଠାରୁ ଟଙ୍କା ଭାଗ ଭାଗ କରି ନେଇ ଯାଉଛନ୍ତି । ଗାଁ ମୁଖିଆ ବି ଏକଥା କରିବାକୁ ବାଧ ହେଉଛି । କାରଣ ମିଛ ଦସ୍ତଖତରେ ଟଙ୍କା

ନଦେଲେ, ଗାଁ ପ୍ରଧାନଙ୍କୁ ଭୋଟ ମିଳିବ ନାହିଁ ବୋଲି ଧମକ ଆସୁଛି । ରେଜିଷ୍ଟ୍ରିଭୁକ୍ତ ସମସ୍ତ ଶ୍ରମିକ କର୍ମ ନିଯୁକ୍ତି ଯୋଜନା ବୁଝୁଥିବା ସରପଞ୍ଚର ଭୋଟର ।

ଏବଂ ଏଠି ଇଞ୍ଜିନିୟର ଏବଂ ଠିକାଦାର ମିଶି ନିର୍ମାଣାଧୀନ ପୋଲରେ କିପରି କମ୍ ସିମେଣ୍ଟ ଦିଆଯିବ ତାର ଯୋଜନା ବି କରନ୍ତି । ଯଦିଓ ସେମାନେ ଜାଣନ୍ତି, ଏବେ ନହେଲେ ମଧ୍ୟ କିଛି ଦିନ ପରେ ଯେ କୌଣସି ସମୟରେ ନିମ୍ନମାନର ନିର୍ମାଣ ଯୋଗୁ ପୋଲରେ ଦୁର୍ଘଟଣା ଘଟିବ । ତଥାପି ଏପରି ଏକ ସାମାଜିକ ଅଘଟଣ କରିବାକୁ ସେମାନଙ୍କର କୁଣ୍ଠା ନଥାଏ । ଏପରି ଦୁର୍ନୀତି କେବଳ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିର ବ୍ୟକ୍ତଗତ ଲୋଭ କଥା କହେନି । ଏଥିରେ ଯେ ଗଣହତ୍ୟା ପାଇଁ ଏକ ଅପରାଧିୟ ମାନସିକତା ରହିଛି, ଏହା ସତ ।

ଦୁର୍ନୀତି ନେଇ ଘଟୁଥିବା ଘଟଣାର ତାଲିକା ଦେଇ ବସିଲେ ନିଶ୍ଚୟ ଦୀର୍ଘ ହୋଇଯିବ । ବାସ୍ତବତା ହେଲା,  ସବୁଠି ଏବେ ଭ୍ରଷ୍ଟାଚାରର ଛାୟା । ଏକ ବୃହତ୍ ଅଜଗର ସାପ ପରି ଏହା ଦେଶର ସଂସ୍କୃତି, ସମାଜ, ରାଜନୀତି ଏବଂ ସମସ୍ତ ଅନୁଷ୍ଠାନକୁ ଭକ୍ଷଣ କରିଦେବାକୁ ବସିଛି ।

ମାନବ ବିକାଶ ନେଇ ଭାରତର ସ୍ଥିତି ସଂପର୍କରେ ଜାତିସଂଘ ସଂପ୍ରତି ଏକ ରିପୋର୍ଟଟିଏ ଦେଇଛି । ଏଥିରେ ଅଛି, ମାନବ ବିକାଶ କ୍ଷେତ୍ରରେ ପୃଥିବୀର ୧୭୯ ରାଷ୍ଟ୍ର ମଧ୍ୟରେ ଭାରତର ସ୍ଥାନ ହେଉଛି ୧୩୨ । ମାନବ ବିକାଶ କଥା କହିବା ବେଳେ ମୁଖ୍ୟତଃ ତିନୋଟି ପ୍ରସଙ୍ଗ ବିଚାରକୁ ଅଣାଯାଇଥାଏ । ପ୍ରଥମଟି ହେଲା ସାକ୍ଷରତା ହାର । ଦ୍ୱିତୀୟଟି ହେଲା ଲୋକଙ୍କ ବଂଚିବାର ହାରାହାରି ବୟସ ସୀମା । ଅନ୍ୟ କଥାରେ କହିଲେ ଲୋକଙ୍କର ଲାଇଫ୍ ସ୍ପାନ କେତେ ? ଏବଂ ତୃତୀୟ ପ୍ରସଙ୍ଗଟି ହେଉଛି ବଞ୍ଚିବାର ମାନାଙ୍କ  ବା ଷ୍ଟାଣ୍ଡାର୍ଡ ଅଫ୍ ଲିଭିଙ୍ଗ୍ । କେବଳ ବଞ୍ଚିବା ମାନେ ଜୀବନ ନୁହେଁ । ଜୀବନ ଧାରଣ ମାନ ଉନ୍ନତ ନହେଲେ, ମାନବ ବିକାଶ ଅସମ୍ଭବ । ଜାତିସଂଘ ରିପୋର୍ଟ ତେଣୁ ସ୍ପଷ୍ଟ କରିଦେଇଛି, ଏ ତିନୋଟି ଦିଗରେ ଭାରତର ଅବସ୍ଥା ଭଲ ନାହିଁ । ସର୍ବଶିକ୍ଷା ଯୋଜନାରେ ଆସିଥିବା ବିଦେଶୀ ସହାୟତାର ତୋଷାରପାତ କଥା ଏବେ ବ୍ରିଟିଶ ସରକାର କୁଆଡେ ଅଭିଯୋଗ କଲେଣି । ଯଦି ପ୍ରଶ୍ନ ହେବ, ଏଇ ଭ୍ରଷ୍ଟାଚାରର କର୍ତ୍ତା କିଏ ହୋଇପାରନ୍ତି, ତେବେ ଉତ୍ତର ଆସିବ, ଏହାର କର୍ତ୍ତା କିଛି ଅସାଧୁ ବାବୁ, ଲୋଭୀ ନେତା ଏବଂ ଏକ ବୃହତର ଉଦାସୀନ

ସମାଜର ମହାମେଣ୍ଟ ହୋଇପାରେ ।

ଏ ଲେଖକ ଏବେ ଜଷ୍ଟିସ ଡିପି ୱାର୍ଧା କମିଟି ରିପୋର୍ଟରେ ଉଲ୍ଲେଖ ଥିବା କିଛି ତଥ୍ୟ ଦେଖୁଥିଲା । ଭାରତର ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ଯୋଗାଇ ଦିଆଯାଉଥିବା ଖାଦ୍ୟଶସ୍ୟର ବିତରଣକୁ ଅନୁଧ୍ୟାନ କରିବାକୁ ମାନ୍ୟବର ସୁପ୍ରିମକୋର୍ଟ ଏଇ ୱାର୍ଧାକମିଟି ବସାଇଥିଲା । କମିଟିର ରିପୋର୍ଟ ହେଲା, ଭାରତ ସରକାର ରାଜ୍ୟ ସରକାରମାନଙ୍କୁ ଗରିବ ଲୋକଙ୍କୁ ଶସ୍ତାରେ ଖାଦ୍ୟଶସ୍ୟ ଯୋଗାଇ ଦେବାକୁ ପର୍ଯ୍ୟାପ୍ତ ପରିମାଣର ଖାଦ୍ୟଶସ୍ୟ ଦିଅନ୍ତି । ସୁଲଭ ମୂଲ୍ୟରେ ଦୋକାନ ମାନଙ୍କରେ ଏହା ବିକ୍ରି ହେବାର ବ୍ୟବସ୍ଥା ଥାଏ । ଶସ୍ତାରେ ଖାଦ୍ୟଶସ୍ୟ ଦେବାକୁ ଭାରତ ସରକାର ଯେଉଁ ରିହାତି ଦିଅନ୍ତି, ସେ ରିହାତିର ପରିମାଣ ହେଉଛି ପ୍ରାୟ ୨୮ ହଜାର କୋଟି ଟଙ୍କା । ଏ ରିହାତି କିନ୍ତୁ ଗରିବ ହିତାଧିକାରୀଙ୍କ ପାଖରେ ପହଞ୍ଚି ପାରେନାହିଁ । ଏହାର ବାଟ ମାରଣା ହୋଇଯାଏ । କମିଟି କହନ୍ତି, ଏଇ ଦୁର୍ନୀତି ଚାରି ପ୍ରକାରର ଲୋକ କରନ୍ତି । ବିଭାଗୀୟ ଭ୍ରଷ୍ଟାଚାରୀ ବାବୁ, ଦୋକାନୀ ମାଲିକ, ମିଲ୍ ମାଲିକ ଏବଂ ଜିନିଷ ବୋହି ନେଇଯାଉଥିବା ଟ୍ରକ୍ ମାଲିକ ।

ଭାରତୀୟମାନେ ଖୁସି, ଯେ ଏଠି ଗରିବଙ୍କ ଖାଦ୍ୟ ସୁରକ୍ଷା ପାଇଁ ରିହାତି ଦରରେ ଖାଦ୍ୟ ମିଳିବାର ସୁବିଧା ଅଛି । କିନ୍ତୁ ପ୍ରକୃତ କଥା ହେଲା ଦୁର୍ନୀତି ଏଇ ସୁବିଧାକୁ ଧ୍ୱଂସ କରିଦେଇଛି । ଭାରତରେ ଏବେ ଭୋକିଲାଙ୍କ ସଂଖ୍ୟା ପ୍ରାୟ ୩୨ କୋଟି । ପେଟପୁରା ଖାଦ୍ୟ ନଦେଇପାରି କେଉଁଠି ନା କେଉଁଠି ମା'ଟିଏ ଆଜି ବି ତା ପିଲାକୁ ପାଣି ପିଇ ପେଟ ପୂର୍ଣ୍ଣ କରିଦିଏ ବୋଲି କହୁଥିବ ।

ପ୍ରକାରନ୍ତରେ କିନ୍ତୁ କିଛି ଭ୍ରଷ୍ଟାଚାରୀ ଲୋକଙ୍କ ପାଇଁ ଭୋକ ଏଠି ଖାଦ୍ୟାଭାବ ନୁହେଁ । ଭୋକର ଅର୍ଥ ହେଉଛି, ଦୁର୍ନୀତି କରି ଗଦା ଗଦା ଟଙ୍କା କମେଇବା ଏବଂ ଏଇ ଟଙ୍କାକୁ ବିଦେଶୀ ବ୍ୟାଙ୍କମାନଙ୍କରେ ଜମା ରଖିବା ଯଦିଓ ନୋମିନି ଅଭାବରୁ ଜମାକାରୀଙ୍କ ମୃତ୍ୟୁ ପରେ ଜମାଟଙ୍କା ଅନେକ କ୍ଷେତ୍ରରେ ବାଜ୍ୟାପ୍ତ ହୋଇଯାଏ ।

ମୋଗଲ ସମ୍ରାଟମାନେ ବଞ୍ଚୁଥିବା ବିଳାସପୂର୍ଣ୍ଣ ଜୀବନ ପରି ଏଠି କିଛି ଲୋକ ସେମିତି ଜୀବନ ବଞ୍ଚୁଥିଲେ ବି ଗରିବ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଯୋଜନା ଅର୍ଥକୁ ଆତ୍ମସାତ କରି ଆହୁରି ଧନୀ ହେବାର ସ୍ୱପ୍ନ ଲୋଭ ତାଙ୍କର କମୁନାହିଁ । ଏହା ସମସ୍ୟା ନୁହେଁ, ଏକ ସଙ୍କଟ ।

ଭାରତର ଭ୍ରଷ୍ଟାଚାର ସଂପର୍କରେ କହିଲାବେଳେ ଏକଥା କହିବାକୁ ଚାହେଁନା ଯେ ଏଠି ଆଉ ସୁଧୁରିବାର ବାଟ ନାହିଁ । ଏ ଲେଖକ ନକରାତ୍ମକ ନୁହେଁ ! ହତାଶାବାଦୀ ବି ନୁହେଁ । ଭ୍ରଷ୍ଟାଚାରମୁକ୍ତ ଭାରତ ପାଇଁ ଭ୍ରଷ୍ଟଚାରୀଙ୍କ ନିମନ୍ତେ କଠୋର ଦଣ୍ଡ ବ୍ୟବସ୍ଥାର ପ୍ରାବଧାନ ହେବା ଦରକାର । ମୂଲ୍ୟବୋଧ ଭିତ୍ତିକ ଶିକ୍ଷାର ବ୍ୟବସ୍ଥା ହେବା ଉଚିତ । ଭାରତ ସରକାର ବାବୁମାନଙ୍କ ପାଇଁ ସ୍ୱଚ୍ଛତା, ସାଧୁତା, ନିରପେକ୍ଷତା, ନୈତିକତାର ବାରମ୍ବାର ସ୍ଲୋଗାନ ଦେଉଥିଲେ ମଧ୍ୟ ଏସବୁ ନିର୍ଦ୍ଦେଶକୁ ଭଙ୍ଗ କରି ବାବୁମାନେ କିପରି ଖସି ଯାଉଛନ୍ତି, ଲୋକ ପ୍ରତିନିଧି ବି ଏହାକୁ ଦେଖିବା ଉଚିତ । ଲକ୍ଷ ଲକ୍ଷ ଲୋକଙ୍କ ସମର୍ଥନ ପାଇଥିବା ଲୋକ ପ୍ରତିନିଧିଟିଏ କେଉଁଠିରେ ଯେ ଶକ୍ତିହୀନ ଏହା ପ୍ରକୃତରେ ବୁଝାପଡେନି ।

ଏବଂ ଶେଷ କଥା ହେଲା, ଭ୍ରଷ୍ଟାଚାର ବିରୁଦ୍ଧରେ ଭାରତୀୟ ସମାଜ କ୍ରିୟାଶୀଳ ହେବା ଦରକାର । ଦୁର୍ନୀତିଗ୍ରସ୍ତ ବାବୁ ଏବଂ ଲୋଭୀ ତଥା ଦୁର୍ବଳ ନେତାଙ୍କୁ ସହ୍ୟ କରିବାରେ ହିଁ ଦୁର୍ନୀତି ଏଠି ବଢୁଛି । ନିଜ ପିଲାଙ୍କୁ ସ୍କୁଲ ନ ପଠାଇ ଯେଉଁ ପିତା ମିଛରେ ପିଲାର ଷ୍ଟାଇପେଣ୍ଡ ନେଇଯାଉଛି, ତାକୁ ବିରୋଧ ନ କରିବା ଅର୍ଥ ଦୁର୍ନୀତିକୁ ସମାଜର ମୂଳ ସ୍ତରରେ ସ୍ୱୀକୃତି ଦେବା । ଏସବୁ ଠିକ୍ ହୋଇଯିବ, ଏ ସମାଜ ଉଦାସୀନ ନ ରହିଲେ । ସାମାଜିକ ଚାପ ଏବଂ ସାମାଜିକ ବାସନ୍ଦ ଏ ସମାଜର ଦୁଇଟି ଅସ୍ତ୍ର । ଧର୍ମ ପ୍ରତିଷ୍ଠା ପାଇଁ ଏ ଅସ୍ତ୍ରର ପ୍ରୟୋଗ ବି କରାଯାଇଥାଏ । ପ୍ରକାଶ ଥାଉକି ଭାରତର ମାତ୍ର ଏକ ପ୍ରତିଶତ ଲୋକ କୁଆଡେ ଦୁର୍ନୀତି କରନ୍ତି ।

❑❑❑

# ଅସୁରକ୍ଷିତ ଦେବ ଦର୍ଶନ

ଯାହା ଜଣାଯାଏ, ସଂପ୍ରତି ଦେବ ଦର୍ଶନ ଆଉ ନିରାପଦ ନୁହେଁ । ଅନେକ ସମୟରେ ଏହା ଭକ୍ତ ଦର୍ଶନାର୍ଥୀଙ୍କ ପାଇଁ ମହଙ୍ଗା ପଡିଯାଉଛି ।

ଏବେ କୌଣସି ଧାର୍ମିକ ଉତ୍ସବରେ ଦେବ ସ୍ଥାନକୁ କିମ୍ବା ଦେବୀଙ୍କ ପେଣ୍ଡାଲଙ୍କୁ ବୁଲିବାକୁ ଗଲାବେଳେ ଘରେ ପଛରୁ ତାଗିଦ୍ ଆସୁଛି, 'ଦେଖିକରି ଯିବ, ଗହଳି ଭିତରକୁ ଯିବନି' ।

ଏପରି ତାଗିଦ୍ ବର୍ତ୍ତମାନ ଆଉ ଏକ ଅର୍ଥହୀନ ବା ଅଭ୍ୟାସଗତ ତାଗିଦ୍ ନୁହେଁ । ଦିଅଁ ଦେଖିବାବେଳେ ଠେଲାପେଲା ଓ ଷ୍ଟାମ୍ପେଡ୍ ହେତୁ ଜୀବନହାନି ସଂପ୍ରତି ଯେମିତି ଏକ ସ୍ୱାଭାବିକ ଘଟଣା । ଏଇ ଯେମିତି ଏବେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଗତ ନବକଳେବର ଗୁଣ୍ଡିଚା ଯାତ୍ରା ଦିନ ପୁରୀ  ବଡଦାଣ୍ଡରେ ଏକ ଦଳାଚକଟା ଘଟିଗଲା । ଏଥରେ ଦୁଇ ଜଣ ମହିଳାଙ୍କ ମୃତ୍ୟୁ ହେଲା ଏବଂ ପ୍ରାୟ ପଚାଶ ଜଣ ଭକ୍ତ ଆହତ ହେଲେ । କିନ୍ତୁ ବିଡମ୍ବନା ଯେ ଭିଡ ନିୟନ୍ତ୍ରଣରେ ବିଫଳତା ପାଇଁ ନିଜକୁ ଦାୟୀ ନକରି ଏବଂ ଦଳାଚକଟାର କାରଣ ନଖୋଜି, କିଛି ଦାୟିତ୍ୱସଂପନ୍ନ ପଦାଧିକାରୀ ଦଳାଚକଟା ବା ଷ୍ଟାମ୍ପେଡ୍‌ର ସଂଜ୍ଞା କଣ ଖୋଜିବାରେ ବ୍ୟସ୍ତ ରହିଲେ । ପୁରୀ ରଥଯାତ୍ରାର ଏ ଘଟଣା ପୂର୍ବରୁ  ଆନ୍ଧ୍ରପ୍ରଦେଶର ପୁଷ୍କର ବୁଡରେ ଅନିୟନ୍ତ୍ରିତ ଭିଡ଼ ଯୋଗୁଁ ପ୍ରାୟ ଶତାଧିକ ଲୋକ ବି ମୃତାହତ ହୋଇଥିଲେ ।

ଅବଶ୍ୟ ଜଗନ୍ନାଥଙ୍କ ଘୋଷଯାତ୍ରା ଇତିହାସରେ ଗତବର୍ଷର ଦଳାଚକଟା ଘଟଣା ପ୍ରଥମ ଘଟଣା ନୁହେଁ । ୨୦୦୮ ମସିହା ରଥଯାତ୍ରାରେ ଠିକ୍ ଏପରି ଏକ ଘଟଣାରେ ପୁରୀରେ ଷ୍ଟାମ୍ପେଡ୍ ଯୋଗୁଁ ଛଅ ଜଣ ଲୋକ ମୃତ୍ୟୁବରଣ କରିଥିଲେ ।  ଏ ଘଟଣା ବି ଘଟିଥିଲା ସେଇ ବଡ ଦାଣ୍ଡରେ, ଯେଉଁଠି ଲକ୍ଷଲକ୍ଷ ଲୋକ ଛିଡା ହୋଇ ଜଗନ୍ନାଥ ମହାପ୍ରଭୁଙ୍କୁ ଦେଖିବାକୁ କାହିଁ କେଉଁ କାଳରୁ ବ୍ୟବସ୍ଥା ଅଛି । ସତକଥା

ହେଲା, ଏସବୁ ଦଳାଚକଟା ଘଟଣା ବାସ୍ତବରେ ଦେବସ୍ଥଳୀମାନଙ୍କରେ ଅପ୍ରତ୍ୟାଶିତ ଲୋକଭିଡ ଏବଂ ଭିଡକୁ ସମ୍ଭାଳିବାକୁ ଆମ ପରିଚାଳନା ଗତ ଦକ୍ଷତାର ଅଭାବ କଥାହିଁ ସୂଚାଇ ଦିଏ ।

ଦେବ ଦର୍ଶନବେଳେ ଦଳାଚକଟାର ଏ ଅବସ୍ଥା ଖାଲି ଏ ବର୍ଷର କଥା ନୁହେଁ । ବେଶ୍ କିଛି ବର୍ଷ ଧରି ଏହା ଭାରତରେ ବିଭିନ୍ନ ସ୍ଥାନରେ ଘଟିଛି ।। ଏହାର କାରଣ ଏବଂ ନିରାକରଣ ଖୋଜି ବାହାର କରିବା ପାଇଁ କମିଟି ବସୁଛି । କମିଟିରେ ରିପୋର୍ଟ ଆସୁଛି । ରିପୋର୍ଟ ଉପରେ କିନ୍ତୁ ସେମିତି କିଛି ବିଚାର ହେଉନାହିଁ । ମୃତାହତଙ୍କୁ କିଛି କ୍ଷତି ପୂରଣ ଦେଇ କର୍ତ୍ତୃପକ୍ଷ ଦାୟିତ୍ୱ ମୁକ୍ତ ହେଲେ ବୋଲି ଭାବନ୍ତି । ପ୍ରକୃତରେ ଷ୍ଟାମ୍ପେଡ୍ ପାଇଁ କେହି କିନ୍ତୁ ଦାୟୀ ହୁଅନ୍ତି ନାହିଁ । ଯେଉଁମାନେ ଏଠି ମୃତ ବା ଆହତ ହୁଅନ୍ତି, ଶେଷରେ ସେମାନଙ୍କ ଭାଗ୍ୟକୁ ହିଁ ଦୋଷ ଦିଆଯାଏ ।

ଅଭିଯୋଗ ଆସେ, ଆମର ଏଠି ଜନଗହଳିର ପରିଚାଳନାଗତ ଦକ୍ଷତା ପାଶ୍ଚାତ୍ୟ ଦେଶ ପରି ସେତେ ଉଚ୍ଚମାନର ନୁହେଁ । ଭିଡ ସମ୍ଭାଳିବାକୁ ଆମର ସେତେ ସାମର୍ଥ୍ୟ ନାହିଁ । ଉତ୍ତର ଖୋଜିଲେ କର୍ତ୍ତୃପକ୍ଷଙ୍କ ଠାରୁ ସଫେଇ ଆସେ, ଲୋକଭିଡର ଚରିତ୍ର ବା କ୍ରାଉଡ୍ ବିହେବିହର ଜାଣିବା କଷ୍ଟ । ଏ ଚରିତ୍ର ଉପରେ ତ ଏବେ ଗବେଷଣା ଚାଲିଛି । ଭାରତର ଲୋକଭିଡ ପୃଥିବୀର ପ୍ରାୟ ଅନ୍ୟ ସବୁ ଦେଶର ଲୋକଭିଡ ବା କ୍ରାଉଡ୍ ଠାରୁ ନିଆରା ।

ଜନଗହଳି ଉପରେ ଜଣେ ପ୍ରତିଷ୍ଠିତ ସମାଜ ଶାସ୍ତ୍ରୀଙ୍କର ଏକ ଗବେଷଣାତ୍ମକ ନିବନ୍ଧରୁ କିଛି କଥା ଏଇଠି ଏଇ ଆଲୋଚନାର ପରିସରକୁ ଆଣିବାକୁ ଇଚ୍ଛା । ଲୋକଭିଡ଼ର ଚରିତ୍ର ଏବଂ ସ୍ୱରୂପ ଠିକ୍ ଏମିତି - ଅନେକ ଲୋକ କୌଣସି ଏକ ନିର୍ଦ୍ଦିଷ୍ଟ ଜାଗାରେ ଗୋଟିଏ ଉଦ୍ଦେଶ୍ୟ ରଖି ଏକାଠି ହେଲେ ଏହାକୁ ଲୋକଭିଡ କୁହାଯାଏ । ଏହା ଦୁଇ ପ୍ରକାରର । ପ୍ରଥମଟି ହେଉଛି ଫୋକସଡ୍ ବା ଯାହା ସ୍ପଷ୍ଟ ବାରିହୋଇ ଯାଉଥାଏ । ଏଥିରେ ଏକ ଉଦ୍ଦେଶ୍ୟଗତ ଦୃଢତା ଥାଏ । ଏସବୁ ରାଜନୈତିକ ର୍‍ୟାଲି ବା ପଟୁଆର । ଦ୍ୱିତୀୟ ଲୋକଭିଡ ହେଉଛି ଆବେଗିକ ବା ଇମୋସନାଲ । ଏହା ବେଶ୍ ସମ୍ବେଦନଶୀଳ । ଦେବ ଦର୍ଶନ କରିବାକୁ ଏକାଠି ଗୁଣ୍ଡ ହେବା ତଥା କୌଣସି ପ୍ରତିଷ୍ଠିତ ଲୋକଙ୍କ ମୃତ୍ୟୁରେ ଶବ ପଟୁଆରକୁ ଆସି ଏକାଠି ହେବା ଏସବୁ ଆବେଗିକ ଭିଡ ଶ୍ରେଣୀର । ଏ ଲୋକ ଭିଡରେ ସେମିତି କିଛି ଦୃଢ ଆଦର୍ଶଗତ

ଉଦ୍ଦେଶ୍ୟ ନଥାଏ । ସେଇଥିପାଇଁ ତ ବୋମାର ଗୁଜବଟିଏ ପ୍ରଚାର ହୋଇଗଲେ ଭିଡ଼ରେ ଏକତା ଭାଙ୍ଗିଯାଏ; ଷ୍ଟାମ୍ପେଡ୍ ହୁଏ ।

ଭିଡ଼କୁ ଯିବା ପାଇଁ ଦୁଇଟି ସମାଜ ଶାସ୍ତ୍ରୀୟ କାରଣ ବି ଦିଆଯାଏ । ସେଥିରୁ ଗୋଟିଏ ହେଉଛି ଗୋଷ୍ଠୀ ପ୍ରବୃତ୍ତି ଏବଂ ଦ୍ୱିତୀୟଟି ହେଉଛି ଅନୁକରଣ । ଦିଅଁ ଦେଖିବାକୁ ଗଲାବେଳେ ସାଧାରଣତଃ ଗୋଟିଏ ପରିବାରରୁ ଏକାଧିକ ଲୋକ ହିଁ ଯାଆନ୍ତି । ସାଙ୍ଗରେ ପଡ଼ୋଶୀ ବି ଥାଆନ୍ତି । କୌଣସି ଏକ ଦଳାଚକଟାରେ ମୃତାହତଙ୍କ ଯେତେବେଳେ ତାଲିକାଟିଏ ପ୍ରକାଶ ପାଏ, ସେତେବେଳେ ପୀଡ଼ିତଙ୍କ ତାଲିକା ଭିତରେ ପରିବାରଟିଏ ଥାଏ ଏବଂ ପଡ଼ୋଶୀ ବି ଥାଆନ୍ତି ।

ପ୍ରକୃତରେ ଗହଳି ଭିତରକୁ ଯିବା ଏକ ପ୍ରବୃତି । ଯଦି ବା ଲୋକଭିଡ଼କୁ ବାହାରୁ ରହି ଟିଭିରେ ଦେଖିହୋଇ ପାରନ୍ତା, ଅନେକ କିନ୍ତୁ ଗହଳିକୁ ଯାଇ ଏହାର ସ୍ୱରୂପକୁ ଖୁବ ନିକଟରୁ ଦେଖିବାକୁ ଚାହାନ୍ତି । ଏମିତି ଦେଖିବାର ଅନୁଭୂତି କୁଆଡେ ନିଆରା ବୋଲି କୁହାଯାଏ । ଭାରତ ବାହାରୁ ଅନେକ ଯାତ୍ରୀ, ଲେଖକ, ଦାର୍ଶନିକ ଭାରତୀୟ ଲୋକଭିଡ଼ର ନିକଟତର ହୋଇ ଏହାର ଅନୁଭୂତି ନେବାକୁ ଏ ଦେଶକୁ ଆସିଛନ୍ତି ବୋଲି ତାଙ୍କ ଲେଖାରେ ବର୍ଣ୍ଣନା କରିଛନ୍ତି । ଜନଗହଳି ଆତଙ୍କରେ କୁଆଡେ ସୌନ୍ଦର୍ଯ୍ୟ ଥାଏ, ସେମାନେ କହନ୍ତି ।

ହଁ, ଇଏ ହେଲା ଭାରତୀୟ ଲୋକଭିଡ଼ର ଚରିତ୍ର, ସ୍ୱଭାବ ଏବଂ ପ୍ରକୃତି । ତେବେ ଏ ଦେଶର ଦେବ ସ୍ଥାନ ମାନଙ୍କରେ ଏବଂ ପୂଜା ଉତ୍ସବରେ ଏମିତି ଅପ୍ରତ୍ୟାଶିତ ଲୋକଭିଡ଼ର କାରଣ କ'ଣ ବୋଲି ଅବଶ୍ୟ ପ୍ରଶ୍ନ ଆସିବଣି ।

ଉତ୍ତର ହେଲା, ଭାରତ ହେଉଛି ଶହେ କୋଡ଼ିଏ କୋଟିରୁ ଉର୍ଦ୍ଧ୍ୱ ଲୋକଙ୍କର ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ଦେବ ସ୍ଥାନକୁ ଯିବା, ପ୍ରାର୍ଥନା ସଭାକୁ ଯିବା ଏବଂ ପୂଜା ପର୍ବପର୍ବାଣିରେ ଭାଗ ନେବା ଏହା ଧାର୍ମିକ ସ୍ୱାଧୀନତାର ଅଂଶ । ପ୍ରତିବର୍ଷ ଏଠି ନୂଆ ନୂଆ ପୂଜା ପର୍ବାଣି ସୃଷ୍ଟି କରାଯାଏ ଏବଂ ପାରମ୍ପରିକ ଉତ୍ସବର ପରିସର ବି ବଢେ । ଗତ କିଛିବର୍ଷ ତଳେ ଯେଉଁ ସହରରେ ଯେତିକି ପୂଜା ପେଣ୍ଡାଲ ଥିଲା ଏହା ଭିତରେ ଏହା ବହୁଗୁଣିତ ହୋଇଗଲାଣି । ଲୋକଙ୍କ ଯାତାୟାତ ପାଇଁ ସୁବିଧା ହୋଇଛି । ଲୋକଙ୍କ କ୍ରୟଶକ୍ତି ବଢିଛି ଏବଂ ଦେବ ସ୍ଥଳରେ ସୁରକ୍ଷା, ପରିମଳ ତଥା ସ୍ୱାସ୍ଥ୍ୟ ବ୍ୟବସ୍ଥା ପ୍ରତି ପ୍ରଶାସନିକ କର୍ତ୍ତୃପକ୍ଷ ବି ସଜାଗ ରହିଥିବା କଥା ପ୍ରଚାର ହେଉଛି ।

ଜନଗହଳିର ଅନ୍ୟ ଏକ କାରଣ ଅଛି, ଯାହାକୁ ବେଶି ନଜରଅନ୍ଦାଜ କରାଯାଏ । ବାସ୍ତବରେ ଏ କାରଣ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହା ହେଉଛି, ଦେବଦେବୀଙ୍କ ପ୍ରତି ଏବେ ଅହେତୁକ ଆଗ୍ରହ ବଢ଼ିଛି । ଅନ୍ୟକଥାରେ କହିଲେ କ୍ରେଜ୍ ସୃଷ୍ଟି ହୋଇଛି । ଏଇ ଆଗ୍ରହ ଆପେ ଆପେ ସୃଷ୍ଟି ହୋଇନି । ଏହାକୁ ସୃଷ୍ଟି କରାଯାଇଛି । ଏହାର କାରଣ ହେଉଛି, ଦେବଦେବୀଙ୍କ ଉପରେ ବାହାରୁ ଥିବା ସଂଗୀତ ଏବଂ ପ୍ରତିଦିନ ବିଭିନ୍ନ ଗଣମାଧ୍ୟରେରେ ପ୍ରଚାର ହେଉଥିବା ଜ୍ୟୋତିଷଙ୍କ ଭବିଷ୍ୟବାଣୀ । ସଂଗୀତରେ ଦିଅଁ ଦେବତାଙ୍କ ମହିମା ଗାନ ହେଉଛି । ଥରେ ଦର୍ଶନ କରିଦେଲେ ସ୍ୱର୍ଗପ୍ରାପ୍ତି ହେବ ବୋଲି ଭରସା ଦିଆଯାଇଛି । ରଥଯାତ୍ରା ବେଳେ ନନ୍ଦିଘୋଷ ରଥ ତଳେ ଜୀବନ ଚାଲିଗଲେ ନର୍କରୁ ମୁକ୍ତି ମିଳିବ ବୋଲି ସଙ୍ଗୀତ ଆସୁଛି । ମୃତ୍ୟୁରେ ଯଦି ସ୍ୱର୍ଗପ୍ରାପ୍ତି ଅଛି, ତେବେ ଲୋକ ଭିଡ ପ୍ରତି ଭୟ କାହିଁକି ବୋଲି ପ୍ରଶ୍ନ ମଧ୍ୟ ଆସେ । ଆସିବା ବି ସ୍ୱାଭାବିକ ।

ଟେଲିଭିଜନ ତଥା କାଗଜ ମାନଙ୍କରେ ପ୍ରଚାର ହେଉଥିବା ଜ୍ୟୋତିର୍ବିଦ୍‌ଙ୍କର ଭବିଷ୍ୟବାଣୀ ମଧ୍ୟ ଲୋକଭିଡ ଆକର୍ଷଣର ଅନ୍ୟ ଏକ କାରଣ । ଗ୍ରହ ନକ୍ଷତ୍ରଙ୍କ ଚଳନ କଥା ଶୁଣିବା ଏବଂ ପଢ଼ିବା ଏବଂ ଦେବ ଦର୍ଶନ କରି ଘାତ ଚନ୍ଦ୍ରରୁ ମୁକ୍ତି ପାଇବା ପ୍ରାୟ ବେଶ୍ କିଛି ଲୋକଙ୍କର ଏଠି ନିଶା ହୋଇଗଲାଣି । ଅନେକଙ୍କ ସକାଳ ଯାତ୍ରା ଆରମ୍ଭ ହୁଏ ଜ୍ୟୋତିଷଙ୍କ ପରାମର୍ଶରୁ । ସୂର୍ଯ୍ୟ ପରାଗ, ଚନ୍ଦ୍ର ଗ୍ରହଣ ଏବଂ ପୂଜା ପାର୍ବଣରେ କେଉଁ ଦେବତାଙ୍କୁ କେତେବେଳେ ଦର୍ଶନ କରିବା ଉଚିତ, ଏ ସଂପର୍କରେ ଦିଆଯାଉଥିବା ଜ୍ୟୋତିଷ ପରାମର୍ଶକୁ ଖୁବ୍ ଗମ୍ଭୀରତାର ସହ ବି ନିଆଯାଉଛି । ଭାରତୀୟ ଜନଗହଳିର ଏହା ଏବେ ଏକ ଗୁରୁତ୍ୱପୂର୍ଣ୍ଣ କାରଣ ।

ସୁତରାଂ ଦେବ ସ୍ଥାନରେ ହେଉଥିବା ଜନଭିଡକୁ ଆଉ ଯେ କମେଇ ହେବନି, ଏହା ସତ । ତେବେ ଦେବ ଦର୍ଶନରେ କିପରି ସାଧାରଣ ଲୋକଙ୍କୁ ସୁରକ୍ଷା ଦେଇ ହେବ ଏହା ସଂପ୍ରତି ମୁଖ୍ୟ ପ୍ରସଙ୍ଗ । ଯାହା ଜଣାଯାଏ, ରାଜସ୍ଥାନ ଯୋଧପୁରର ଚାମୁଣ୍ଡା ଦେବୀ ମନ୍ଦିରରେ ୨୦୦୮ମସିହା ନବରାତ୍ରି ଦିନ ଯେଉଁ ଦଳାଚକଟା ହେଲା ଏବଂ ଶତାଧିକ ଲୋକଙ୍କ ଏଥିରେ ମୃତ୍ୟୁ ହେଲା, ଏ ସମସ୍ତେ ଅଣନିଃଶ୍ୱାସୀ ହୋଇ ମୃତ୍ୟୁବରଣ କରିଥିଲେ । ପୋଲିସ ସେଠି ଯଥେଷ୍ଟ ନଥିଲେ । ବାରିକେଡ୍ ଦୁର୍ବଳ ଥିଲା । ଡାକ୍ତରୀ ସୁବିଧା ଆବଶ୍ୟକତା ଠାରୁ କମ୍ ଥିଲା । ଜନଗହଳିର

ପରିଚାଳନା ପାଇଁ ଏସବୁ ରାଷ୍ଟ୍ରର ପ୍ରସ୍ତୁତି । ମନ୍ଦିର ପରିଚାଳନା ସଂପର୍କିତ ଦାୟିତ୍ୱ ତୁଲାଇବାରେ ଯେ, କେଉଁଠି ନା କେଉଁଠି ତ୍ରୁଟି ରହିଯାଉଛି ,ଏପରି ଅଭିଯୋଗ ହୁଏ ଏବଂ ଅନେକ ସମୟରେ ଲୋକଭିଡ ଭିତରେ ଗୁଜବ, ଏହା ବୋମା ଆତଂକ ବି ହୋଇପାରେ, ଏହାର ସତ୍ୟାସତ୍ୟ ଠିକ୍ ସମୟରେ ଜାଣି ହୁଏନି । ସେଥିପାଇଁ ଷ୍ଟାମ୍ପେଡ୍ ।

ଯେତେ ଦୁର୍ଘଟଣା ଘଟିଲେ ବି ଭାରତରେ ଦିଅଁ ଦର୍ଶନ ଚାଲିବ । ଜନଗହଳି ବଢିବ । ଚାମୁଣ୍ଡା ମନ୍ଦିରରେ ଦୁର୍ଘଟଣା ପରେ ଜଣେ ଭକ୍ତକୁ ଯେତେବେଳେ ପ୍ରଶ୍ନ କରାଗଲା, ସେ ଆସନ୍ତା ବର୍ଷ ଏଠିକି ଆସିବେ, ଭକ୍ତ ଜଣଙ୍କ ଉତ୍ତର ଦେଲେ, ଏହା ବିଶ୍ୱାସର କଥା । ଦୁର୍ଘଟଣା ବିଶ୍ୱାସ ଠାରୁ ଗଭୀର ନୁହେଁ । ସେ ପୁଣି ଆର ବର୍ଷ ଦେବୀ ଦର୍ଶନରେ ଏଠାକୁ ଆସିବେ । ବିଗତ ରଥଯାତ୍ରାରେ ଦଳାଚକଟା ଘଟଣା ପରେ ଯଦି ଏଇ ପ୍ରଶ୍ନ କୌଣସି ଦର୍ଶନାର୍ଥୀଙ୍କୁ ଏଠି ପଚରା ଯାଇଥାଆନ୍ତା, ତେବେ ସେଇ ଏକା ଉତ୍ତର ବି ମିଳିଥାଆନ୍ତା । ପ୍ରକୃତରେ ଦେବତାଙ୍କ ଆଶୀର୍ବାଦ ପାଇବା ପାଇଁ ଇଚ୍ଛା ଆଗରେ ମୃତ୍ୟୁଭୟର କିଛି ଅର୍ଥ ନଥାଏ । କିନ୍ତୁ ଭିଡ ଭିତରେ ଦିଅଁ ଦର୍ଶନ କଲାବେଳେ ବ୍ୟକ୍ତିର ସୁରକ୍ଷାର ଦାୟିତ୍ୱ ବି ରାଷ୍ଟ୍ରର ।



# ଅଭିଭାବକୀୟ ଚାପ ଓ ଶିଶୁ ନିର୍ଯାତନା

ଏ ଲେଖକର ଜଣେ ବନ୍ଧୁଙ୍କର ଏବେ ରକ୍ତଚାପ ବଢିଯାଇଛି । ଏପରି ହଠାତ୍ କାହିଁକି ହେଲା ବୋଲି ପ୍ରଶ୍ନ କରିବାରୁ ସେ ଉତ୍ତର ଦେଲେ, 'ହେବନି ? ତାଙ୍କର ଏକମାତ୍ର ଝିଅକୁ ସେ ଡାକ୍ତର କରିବାକୁ ଚାହିଁଥିଲେ । ସେ ଏନ୍‌ଟ୍ରାନ୍ସ ପାଇଲାନି । ଇଞ୍ଜିନିୟରିଂ ପ୍ରବେଶିକା ପରୀକ୍ଷାରେ ତାର ର୍‌ୟାଙ୍କ ବି ଭଲ ନାହିଁ । ଭଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ତାକୁ ପଢେଇ ହେବନି । ସବୁଠାରୁ ବଡ କଥା ହେଲା, ଏ ସମ୍ପର୍କରେ କହିଲେ ଝିଅ ଏବେ ଉତ୍ତର ଦେଲାଣି, 'ତମେ ମୋତେ ମାନସିକ ନିର୍ଯାତନା ଦେଉଛନ୍ତି ।'

ଏହା ସତ, ସବୁ ମଧ୍ୟବର୍ଗୀୟ ପରିବାରର ସମ୍ପ୍ରତି ଏହା ଏକ ନୂଆ ଚିନ୍ତା ଯେ ତାଙ୍କ ପିଲାଏ କିପରି ଭଲ ପଢିବେ, ଭଲ ନମ୍ବର ରଖିବେ, ଗଣିତରୁ ସଂଗୀତ ପର୍ଯ୍ୟନ୍ତ ସବୁଥିରେ ଭଲ କରିବେ । ସେଥିପାଇଁ ସେମାନେ ପିଲାଙ୍କ ଉପରେ ମାତ୍ରାଧିକ ଚାପ ଦେଉଛନ୍ତି ଏବଂ ଏହି ଚାପରେ ଆଢୁଆଳରେ ଯେ ଏକ ପ୍ରକାର ନିର୍ଯାତନା ଲୁଚି ରହିଛି, ସେମାନେ ଏହା ଜାଣୁ ଥିଲେ ବି ମାନିବାକୁ ନାରାଜ । ପ୍ରକୃତରେ ଏପରି ନିର୍ଯାତନା ରୋକିବାକୁ ଏପର୍ଯ୍ୟନ୍ତ ଏଠି କୌଣସି ସାମାଜିକ କିମ୍ବା ଆଇନଗତ ବ୍ୟବସ୍ଥା ନାହିଁ । ପିଲାଙ୍କ ଆଶାତୀତ ସଫଳତା ନେଇ ସେହି ଅଭିଭାବକୀୟ ଚାପ ଏବଂ ତଦ୍‌ଜନିତ ନିର୍ଯାତନାକୁ ନେଇ ଆଜିର ଏଇ ଚର୍ଚ୍ଚା ।

କିଛି ଉଦାହାରଣର ଅବତାରଣା କରି ଏହି ଆଲୋଚନା ଆରମ୍ଭ କରାଯାଇପାରେ । 'ମ୍ୟାଡନେସ ଆଣ୍ଡ ମଡର୍ଣ୍ଣ ଫ୍ୟାମିଲି' ପୁସ୍ତକରୁ ଏହା ଅଣାଯାଇଛି ।

ସୁଦୀପର ବୟସ ଥିଲା ୧୪ ବର୍ଷ । ନିଜ ଘର ଅଗଣାରେ ବାପାଙ୍କ ସହ ଟେବୁଲ ଟେନିସ ଅଭ୍ୟାସ କରୁଥିବା ବେଳେ ସେ ଅଚେତ୍ ହୋଇପଡିଲା ଏବଂ ସେଥିରେ ତାର ମୃତ୍ୟୁ ହେଲା ।

ସାମ୍ପାଲି ଏବେ ଆତ୍ମହତ୍ୟା କରିଛି । ଆତ୍ମହତ୍ୟା ନୋଟ୍‌ରେ ସେ ଲେଖିଯାଇଛି ନିଜ ବାପାଙ୍କର ଇଚ୍ଛାକୁ ପୂରଣ କରିବାକୁ ସେ ଅସମର୍ଥ ଥିଲା । ସପ୍ତମ ଶ୍ରେଣୀରେ

ପଢୁଥିବା ଦେବବ୍ରତ ଏହି କିଛି ଦିନ ହେଲା ଘର ଛାଡି କେଉଁଆଡେ ଚାଲିଯାଇଛି । କାରଣ ଖେଳରେ ସମୟ ନଦେଇ କେବଳ ଘରେ ବସି ପାଠପଢିବାକୁ ତା ବାପା ତାକୁ ତାଗିଦ୍ କରୁଥିଲେ ଏବଂ ଛଅ ବର୍ଷୟା ସାନିୟା ଏକକାଳୀନ ୬୪ ଘଣ୍ଟା ଧରି ସଂଗୀତ ବୋଲି ସାରିବା ପରେ ତା ବାପା ତାକୁ ୧୦୦ ଘଣ୍ଟା ଗୀତ ଗାନ କରି ଏକ ରେକର୍ଡ କରିବାକୁ ବାଧ କରୁଥିଲେ । ରାଜସ୍ଥାନର କୋଟାରେ ଆଇଆଇଟି କୋଚିଙ୍ଗ ନେବାକୁ ଯାଇଥିବା କିଛି ଛାତ୍ରଛାତ୍ରୀ ଚାପ ସହିନପାରି ଆତ୍ମହତ୍ୟା କରୁଥିବାର ଖବର ଆସିଲାଣି ।

ମହତାକାଂକ୍ଷୀ ବାପା-ମା'ଙ୍କର ତାଙ୍କ ପିଲାଙ୍କ ଉପରେ ଯେଉଁ ଚାପ ଦିଆଯାଇଛି ଏବଂ ଅଯତ୍ନ କରାଯାଉଛି, ଏ ଉଦାହାରଣ ତାର ଯଥେଷ୍ଟ ନୁହେଁ । ଏପରି ଅସଂଖ୍ୟ ଉଦାହାରଣ ଅଛି । ବିରାଟ ବରଫ ଖଣ୍ଡର ଉପରକୁ ଦେଖାଯାଉଥିବା ଏହା ଏକ ସାମାନ୍ୟତମ ଅଂଶ ମାତ୍ର । ଅନେକ ଘଟଣା ଏଠି ଗଣମାଧ୍ୟମର ନଜରକୁ ଆସେ ନାହିଁ ।

ନିର୍ଯାତନା ସମ୍ପର୍କିତ ଏହି ଘଟଣାକୁ ଏହି ଆଲୋଚନାରେ ବିସ୍ତୃତ କରି ଏହି ବିବରଣୀଟିଏ ଦେବାକୁ ଇଚ୍ଛା । ସୁଦୀପ ପାଞ୍ଚ ବର୍ଷ ବୟସରୁ ଟେବୁଲ ଟେନିସ୍ ଖେଳ ଆରମ୍ଭ କରିଥିଲା । ବିଭିନ୍ନ ଗ୍ରୁପ୍‌ରେ ବି ସେ ବାହାରେ ପ୍ରତିନିଧିତ୍ୱ କରିଛି । ସୁଦୀପ ଏକ ପ୍ରତିଭା ସମ୍ପନ୍ନ ଖେଳାଳୀ ଥିଲା ।

ଯେଉଁଦିନ ସୁଦୀପ୍ ଅଭ୍ୟାସ କରୁ କରୁ ଅଚେତ ହୋଇପଡିଲା ଏବଂ ଶେଷରେ ହୃଦ୍‌ଘାତରେ ତାର ମୃତ୍ୟୁ ହେଲା, ସେଦିନ ଘଟଣାଟି ଥିଲା ଠିକ୍ ଏମିତି । ସକାଳ ୬ ଟାରେ ସେ ଅଭ୍ୟାସ ସାରି ଘରକୁ ଫେରିଥିଲା । ଘରେ ସାମାନ୍ୟ କିଛି ଜଳଖିଆ ଖାଇ ସାରିବା ପରେ ସେ ତାର ଭଉଣୀ ସହ ଅଭ୍ୟାସ କରିଥିଲା । ଏହି ଅଭ୍ୟାସ ସାଢେ ଦଶଟା ପର୍ଯ୍ୟନ୍ତ ଚାଲିଥିଲା । ଭଉଣୀ ପରେ ବାପା ନିଜେ ତାଙ୍କ ସହ ଅଭ୍ୟାସ କରିବାକୁ ସୁଦୀପକୁ ବାଧ କରିଥିଲେ । ଅଭ୍ୟାସ ସାଢେ ବାରଟା ପର୍ଯ୍ୟନ୍ତ ହୋଇଥିଲା । ଏକ ରିଟର୍ଣ୍ଣ ସର୍ଭକୁ ମାରିବାକୁ ଗଲାବେଳେ ଥକି ପଡିଥିବା ସୁଦୀପ ଅଚେତ ହୋଇପଡିଥିଲା । ଡାକ୍ତରଖାନାକୁ ଯିବା ବାଟରେ ତାର ପ୍ରାଣବାୟୁ ଉଡିଯାଇଥିଲା ।

ସାଂପାଲି ଯୁକ୍ତ ଦୁଇ ଶ୍ରେଣୀରେ ପଢୁଥିଲା । ବାପା ତାର ଜଣେ ବିଜ୍ଞାନ ଶିକ୍ଷକ ଥିଲେ । ବାପା ଚାହିଁଥିଲେ, ସାଂପାଲି ଯୁକ୍ତ ଦୁଇ ପରେ ଇଞ୍ଜିନିୟର ହେଉ ।

ସେଥିପାଇଁ ସାଂପାଲିର ବାପା ନିଜେ ରାତି ଅନିଦ୍ରା ହେଉଥିଲେ ଏବଂ ରାତି ସାରା ଉଜାଗର ରହି ପାଠପଢିବାକୁ ସାଂପାଲିକୁ ବାଧ୍ୟ କରୁଥିଲେ ।

ଇଂଜିନିୟରିଂ ପାଇଁ ପ୍ରବେଶିକା ପରୀକ୍ଷାରେ ସାଂପାଲି ଭଲ କରିନଥିଲା । ବାପାଙ୍କ ସ୍ୱପ୍ନକୁ ସେ ପୂରଣ କରିପାରୁ ନାହିଁ ବୋଲି ଜାଣି ଯାଇଥିଲା । ଅବଶ୍ୟ ସାଂପାଲି ପାଠପଢାରେ ଭଲ ଛାତ୍ରୀଟିଏ ନଥିଲା । ପିତାଙ୍କ ଇଚ୍ଛାକୁ ପୂରଣ କରିବାକୁ ସେ ଅସମର୍ଥ ଯୋଗୁ ଆତ୍ମହତ୍ୟା କରୁଛି କହି ଏକ ନୋଟ୍ ଲେଖି ସେ ଆତ୍ମହତ୍ୟା କରିଥିଲା ।

ଅଭିଭାବକୀୟ ଚାପ ଏବଂ ଶିଶୁ ନିର୍ଯାତନା ସମ୍ପର୍କରେ ଅନ୍ୟ ଯେଉଁ ଉଦାହାରଣ ଅଛି ସେ ହେଉଛି ସାନିଆ କଥା । ସାନିଆର ବୟସ ମାତ୍ର ୬ ବର୍ଷ । ଲଗାତର ୬୪ ଘଣ୍ଟା ଗୀତ ଗାଇ ଲିମକା ବୁକ୍ ଅଫ୍ ରେକର୍ଡରେ ତା ନାଁ ରହିସାରିଛି । ମାତ୍ର ୧୦୦ ଘଣ୍ଟା ଗୀତ ଗାଇ ଏକ ସର୍ବକାଳୀନ ଅଭଙ୍ଗ ରେକର୍ଡ କରିବାକୁ ତା ବାପା ତାକୁ ବାଧ୍ୟ କରନ୍ତି । ଏ ବୟସରେ ଏତେ ସମୟ ଗୀତ ଗାଇବାରେ ବିପଦ ଅଛି ବୋଲି ପ୍ରଶ୍ନ ହେବାରେ ସାନିଆ ଉତ୍ତର ଦିଏ, ସେ କିଛି ନୂଆ କରି ଦେଖାଇବାକୁ ଚାହେଁ । ଏହା ତା'ର ଅନ୍ତରାତ୍ମାର ଆହ୍ୱାନ ।

ଛଅ ବର୍ଷର ପିଲାର ଏ ଉତ୍ତର କିପରି ଘୋଷିଲା ପରି ଲାଗେ । ଆଧୁନିକ ପରିବାର ପିଲାଙ୍କ ପ୍ରତି ନିର୍ଯାତନାର ଏହା ଏକ ନୂଆ ଚେହେରା । ବିଶେଷତଃ ସହରୀ ମଧ୍ୟବର୍ଗ ପରିବାର ଭିତରେ ଏ ପ୍ରତିଯୋଗିତା ଏବେ ଆରମ୍ଭ ହୋଇଯାଉଛି ଯେ ତାଙ୍କ ପିଲା କିଛି ନୂଆ କରି ଦେଖାଉ । ଅନ୍ୟ ପିଲାଙ୍କ ଠାରୁ ପ୍ରତିଭା ପ୍ରଦର୍ଶନରେ ସେ ଅଲଗା ବୋଲି ପ୍ରମାଣିତ କରୁ ଏବଂ ସେମାନେ ତାଙ୍କ ପିଲାଙ୍କ ସଫଳତାରେ ଅନ୍ୟ ପରିବାରଠାରୁ ଆଗରେ ଅଛନ୍ତି, ଏହି କଥା ଦମ୍ଭର ସହ କହିବାକୁ ତାଙ୍କ ପିଲାଏ ତାଙ୍କୁ ସୁଯୋଗ ଦିଅନ୍ତୁ । ଏହି ପ୍ରକ୍ରିୟା ଭିତରେ ଥିବା ବାଧ୍ୟତାକୁ ପରିବାର ବାପା ମା'ମାନେ କୌଣସି ଅବାଞ୍ଛିତ ଚାପ ବା ନିର୍ଯାତନା ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି ।

ଅଭିଭାବକୀୟ ଚାପ ଏବଂ ତତ୍ ସମ୍ପର୍କିତ ଶିଶୁ ନିର୍ଯାତନା ପ୍ରସଙ୍ଗ ଉଠିଲେ ଦୁଇଟି ମନସ୍ତତ୍ତ୍ୱବିତ୍ ବିଶ୍ଳେଷକ ଗୋଷ୍ଠୀଙ୍କ ମତ ଆଲୋଚନାର ପରିସରକୁ ଆସେ । ଗୋଟିଏ ଗୋଷ୍ଠୀଙ୍କର ମତ ହେଲା, ପିଲାଙ୍କ ଉନ୍ନତି ପାଇଁ ବାପା ମା' ମାନେ ସାହାଯ୍ୟ କରିବା ଉଚିତ । ସେମାନଙ୍କ ପ୍ରତ୍ୟକ୍ଷ ସମ୍ପୃକ୍ତି ରହିବା ଦରକାର । ଏହା ଅଭିଭାବକଙ୍କର

କାମ । ଏହା ମୋଟିଭେସନ୍ । ଯେଉଁ ଅଭିଭାବକ ପିଲାଙ୍କୁ ଉତ୍ସାହିତ କରିବାରେ ବିଫଳ ହୁଅନ୍ତି ସେମାନେ ନିଜେ ହାରନ୍ତି । ପ୍ରତିଯୋଗିତାର ଦୌଡରେ ପିଲା ବି ହାରେ ଏବଂ ଫେଲ ପିଲାର କିଛି ଭବିଷ୍ୟତ ନଥାଏ ।

ଯୁକ୍ତିରେ ଏ କଥା ମଧ୍ୟ ଆସେ, ଯୁକ୍ତରାଷ୍ଟ୍ର ଆମେରିକାର ଜେନେରାଲ୍ ଡୋଗଲସ୍‌ଙ୍କର ମା' କୁଆଡେ ଡୋଗଲସ୍‌ଙ୍କୁ ସ୍କୁଲରେ ଛାଡି ଶ୍ରେଣୀ ଶେଷ ହେବା ପର୍ଯ୍ୟନ୍ତ ସ୍କୁଲ ଗେଟ ପାଖରେ ଜଗି ରହୁଥିଲେ । ୨୪ ଘଣ୍ଟା ଧରି ଡୋଗଲସ୍ ଉପରେ ତାଙ୍କ ମା'ଙ୍କର ନଜର ରହିଥିଲା । ସୁତରାଂ ବର୍ତ୍ତମାନର ଜଗତୀକରଣ ଯୁଗରେ ଯେଉଁ ତଣ୍ଟିକଟା ପ୍ରତିଯୋଗିତା ଚାଲିଛନ୍ତି ସେଠି ଆଧୁନିକ ପରିବାରର ଅଭିଭାବକମାନେ ନିଜ ପିଲା ପ୍ରତି ଅଧିକ ଯତ୍ନବାନ ହେବା ଉଚିତ୍ । ଏହା ପ୍ରଥମ ମନସ୍ତତ୍ତ୍ୱବିତ୍ ଗୋଷ୍ଠୀଙ୍କର ମତ ।

ଅନ୍ୟ ବିଶେଷଜ୍ଞ ଗୋଷ୍ଠୀଙ୍କର ମତ କିନ୍ତୁ ନିଆରା । ସେମାନଙ୍କ ଯୁକ୍ତି, ସଫଳତା ପାଇଁ କୋମଳମତି ପିଲାଙ୍କ ଉପରେ ମାତ୍ରାଧିକ ଚାପ ଏକ ନିଷ୍ଠୁରତାର ପ୍ରତୀକ । ଏହି ନିଷ୍ଠୁରତାରୁ ନିର୍ଯାତନା ଜନ୍ମ ନିଏ । ସୁଦୀପ, ସାଂପାଲି, ସାନିଆମାନେ ଏହି ନିର୍ଯାତନାର ହିଁ ଶିକାର ହୋଇଥାନ୍ତି ।

ଅଭିଭାବକୀୟ ଚାପର ଏକ ମୁଖ୍ୟ ପାର୍ଶ୍ୱ ପ୍ରଭାବ ଥାଏ । ସେ ହେଉଛି ବାପ ମା'ଙ୍କର ଅବସ୍ତାବ ଇଚ୍ଛାକୁ ପୂରଣ କରିବାରେ ଅସମର୍ଥ ହୋଇପଡୁଥିବା ପିଲାଟିଏ ଭିତରେ ଦେଖା ଦେଉଥିବା ଆଶଙ୍କା ଓ ହତାଶାବୋଧ ବା ଡିପ୍ରେସନ୍ । ଭାରତ ବର୍ଷରେ ବଡ ଘରର ପିଲାଏ ଯେଉଁ ମାଦକ ନିଶା ସେବନ କରୁଛନ୍ତି ଏହା ଏହି ହତାଶବୋଧରୁ ସୃଷ୍ଟି ହେଉଛି ବୋଲି କାରଣରେ କୁହାଯାଉଛି ଏବଂ ସାଧାରଣ ପିଲାଙ୍କ ଠାରୁ ମଧ୍ୟବର୍ଗୀୟ ପିଲାଙ୍କ ଭିତରେ ଏହି ଅଭାବବୋଧ ତିନିଗୁଣରୁ ଅଧିକ ଏହା ମ୍ୟାଡ୍‌ନେସ ଅଫ୍ ମଡର୍ଣ୍ଣ ଫ୍ୟାମିଲି ପୁସ୍ତକରେ ସନ୍ନିବେଶିତ ହୋଇଥିବା ଏକ ସର୍ବେକ୍ଷଣରେ ଅଛି ଏବଂ ସର୍ଭେରେ ଏକଥା ବି କୁହାଯାଇଛି, ହତାଶାର ମାତ୍ରା ବଢୁଥିଲେ ପିଲାଟିଏ ଅଧିକ ଖାଏ, ନିଶା ଖାଏ ଏବଂ ଢିଲା ପୋଷାକ ପିନ୍ଧି ନିଜକୁ ଲୁଚାଇବାକୁ ଚାହେଁ ।

ପାରିବାରିକ କାଉନସିଲିଙ୍ଗ୍ କରୁଥିବା ଜଣେ ମନସ୍ତତ୍ତ୍ୱବିତ୍ ପାଖକୁ କିଛି ଦିନ ତଳେ ଗୋଟିଏ ଝିଅ ଚିକିତ୍ସା ପାଇଁ ଆସିଥିଲା । ତାର ରୋଗ ଥିଲା, ସେ

ଅନ୍ୟମନସ୍କ ଏବଂ ଚୁପଚାପ ରହୁଥିଲା । ମନସ୍ତତ୍ତ୍ୱବିତ୍ ପରୀକ୍ଷା କଲାବେଳେ ଦେଖିଲେ ଝିଅଟି ତାର ଢିଲା ଜାମା ତଳେ ବାମ ହାତର ବାହାରେ ରେଜରରେ କାଟି ଏକ କଟା ଦାଗ କରିଛି । ସେ ଦାଗରେ ଏମ୍‌ତି ଲେଖାଯାଇଛି । ଅର୍ଥ ହେଲା ଖାଲି । ସବୁ ଶୂନ୍ୟ । ଉଚ୍ଚ ମଧ୍ୟବର୍ଗ ପରିବାରର ପିଲା ଭାବେ ବାହରକୁ ପୁରାପୁରି ସମ୍ପୂର୍ଣ୍ଣ ଜଣାଯାଉଥିଲେ ବି ପିଲାଟି ଆବେଗିକ ଭାବେ କାହିଁ କେଉଁ ଦିନୁ ଖାଲି ହୋଇଯାଇଛି, ତାହା ବାପା ମାଙ୍କୁ ଜଣାନାହିଁ । ପରେ ଜଣାଗଲା ଯେ ବାପା ତାଙ୍କ ଜୀବନରେ ଯେଉଁ ସଫଳତା ପାଇ ନଥିଲେ ସେଇ ସଫଳତା ଝିଅ ପାଇବା ପାଇଁ ସେ ତା ଉପରେ ମାତ୍ରାଧିକ ଚାପ ଦେଉଥିଲେ । ପ୍ରଶ୍ନ ଆସେ, ଯଦି ବାପା ଫେଲ ହୋଇଥିଲେ ପିଲାଟି ଯଦି ଫେଲ୍ ହୋଇଯାଏ, ଏଠି ଅସ୍ୱଭାବିକତା କଣ ?

ଏ ଆଲୋଚନାର ଏ ଶେଷ କଥା । ପ୍ରେରଣା ଏବଂ ଚାପ ଭିତରେ ପ୍ରଭେଦଟିଏ ଅଛି । ଏହା ମୋଟିଭେସନ୍ ଏବଂ ପୁସ୍ ଭିତରେ ଥିବା ପାର୍ଥକ୍ୟ । ଯଦିଓ ଏହି ପାର୍ଥକ୍ୟ ଖୁବ ପତଳା । ପିଲାଙ୍କୁ ଉତ୍ସାହ ଦେବା ତଥା ପ୍ରେରଣା ଦେବାରେ କ୍ଷତି ନାହିଁ । କିନ୍ତୁ ଯେତେବେଳେ ଏହା ମାତ୍ରାଧିକ ଚାପ ବା ଆଗକୁ ଠେଲି କରି ଯିବାରେ ପ୍ରବୃତ୍ତିଟିଏ ହୋଇଯାଏ, ସେତେବେଳେ ଏହା ନିର୍ଯାତନାର ରୂପ ନିଏ । ସୁଦୀପ୍ ଓ ସଂପାଲିମାନେ ଏହାର କୁପ୍ରଭାବକୁ ଭୋଗ କରନ୍ତି । ସୁତରାଂ ବାପା ମା'ଙ୍କ ଅବସ୍ଥାବ ଇଚ୍ଛାର ପୂର୍ତ୍ତି ପାଇଁ ପିଲାଙ୍କ ଉପରେ ହେଉଥିବା ମାତ୍ରାଧିକ ଚାପ ବିରୁଦ୍ଧରେ ଏକ ସଚେତନତା ସୃଷ୍ଟି ହେବା ଦରକାର ।



# ବାବା ସଂସ୍କୃତି

ମହାଭାରତୀୟ ଯୁଗର ଦକ୍ଷ ଆଜି ଯଦି ଧର୍ମରାଜ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥାଆନ୍ତେ, 'କିମାଶ୍ଚର୍ଯ୍ୟମ୍' ? ତେବେ ଯୁଧିଷ୍ଠିର ନିଶ୍ଚୟ ଉତ୍ତର ଦିଅନ୍ତେ, 'ଏଠି ପ୍ରତିଦିନ ସାଧାରଣ ଲୋକେ କେଉଁଠି ନା କେଉଁଠି ନିଜକୁ ଆପେ ଆପେ ଭଗବାନ ବୋଲି ଘୋଷଣା କରିଥିବା ବାବାମାନଙ୍କ ଦ୍ୱାରା ନିର୍ଯାତିତ ତଥା ଲୁଂଠିତ ହେଉଥିଲେ ବି ସେହି ବାବାମାନଙ୍କ ଉପରୁ ସାଧାରଣ ଜନତାର ବିଶ୍ୱାସ କିନ୍ତୁ ତୁଟୁନି । ଏଇଆ ହିଁ ହୁଅନ୍ତା ଆଜିର ସବୁଠାରୁ ବଡ ଆଶ୍ଚର୍ଯ୍ୟ ।'

ହଁ, ବାବାମାନଙ୍କୁ ନେଇ ଏଇ କିଛିଦିନ ହେଲା ଓଡିଶା ସାରା ଚର୍ଚ୍ଚା ଚାଲିଚି । ବାବାଙ୍କ ଲାଇଫ୍ ଷ୍ଟାଇଲ୍, ଭକ୍ତ ମହିଳାଙ୍କ ସହ ଗୋପନ ଅଭିସାର ଏବଂ ସଂପତ୍ତି ବୃଦ୍ଧି, ଏ ସବୁ ଚର୍ଚ୍ଚାର ବିଷୟ । ଶ୍ରଦ୍ଧାଳୁଙ୍କ ଚାନ୍ଦାରେ ଯେ ଏତେ ବଡ ସାମ୍ରାଜ୍ୟ କିପରି କରିହେବ, ଏ ପ୍ରଶ୍ନ ଆସୁଛି । ସ୍ୱାଧୀନତାର ୬୮ ବର୍ଷ ଭିତରେ ଏଠି ଅନେକ କିଛି ପରିବର୍ତ୍ତନ ହୋଇଥିଲେ ବି ବାବାଙ୍କୁ ନେଇ ଆମ ଦୁର୍ବଳ ମାନସିକତାରେ କିଛି ପରିବର୍ତ୍ତନ ଆସିନାହିଁ, ଏଇଟା ହିଁ ବିଡମ୍ବନା ।

ସ୍ୱାଧୀନତା ପୂର୍ବରୁ ବି ଭାରତରେ ବାବାମାନଙ୍କର ଉପସ୍ଥିତି ଥିଲା । ସେମାନେ ସବୁ ଧର୍ମଗୁରୁ ଥିଲେ । ଆଧ୍ୟାତ୍ମିକ ପ୍ରଚାରକ ଭାବେ ତାଙ୍କର ଖ୍ୟାତି ଥିଲା । ସାମାଜିକ ତଥା ନୈତିକ ଅଭିଭାବକ ଭାବେ ସେମାନଙ୍କୁ ଗଣାଯାଉଥିଲା । ବାବାଙ୍କୁ ନେଇ କୁତ୍ସିତ ସଂସ୍କୃତିଟିଏ ନଥିଲା । ବିଜ୍ଞାପନଦାତା, ଦଲାଲଙ୍କ ଦ୍ୱାରା ବଜାର ତିଆରି ହୋଇନଥିଲା । ଆଶ୍ରମରେ ଯୌନ କେଳଙ୍କାରୀ ନଥିଲା । ବାବାମାନେ ଆତ୍ମଘୋଷିତ ଭଗବାନ ନଥିଲେ । ଶ୍ରୀଅରବିନ୍ଦ, ବିବେକାନନ୍ଦ, ରାମକୃଷ୍ଣ ପରମହଂସଙ୍କ ପରି ଧାର୍ମିକ ମହାତ୍ମାମାନେ ଏ ସମାଜକୁ ଦିଗ୍‌ଦର୍ଶନ ଦେଉଥିଲେ । ଅନେକ ସାଧୁ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ ବି କରିଥିଲେ । ସେ ଆଦର୍ଶ ଥିଲା ଅନନ୍ୟ ।

ଭାରତୀୟ ସ୍ୱାଧୀନତାର ଏ ପ୍ରାୟ ସାତ ଦଶନ୍ଧିର ସମୟ ଏ ଦେଶରେ କିଛି

ତଥାକଥିତ ଧର୍ମ ପ୍ରଚାରକଙ୍କୁ ବାବା କରିଦେଇଛି ଏବଂ ସେ ମଧ୍ୟରୁ କିଛିଙ୍କୁ ସ୍ୱଘୋଷିତ ଭଗବାନ, ପ୍ରଭୁ କରିଦେଇଛି। ବାବାଟିଏ ଯଦି ଭଗବାନ ନହେଲା, ବାବାଙ୍କୁ ନେଇ ବ୍ୟାବସାୟିକ ବଜାର ତିଆରି ହୋଇପାରିବନି ବୋଲି, 'ବାବାବାଦ'ର ପ୍ରଚାରକ ଏବଂ ଇଭେଣ୍ଟ ମ୍ୟାନେଜରମାନେ ବାବାଙ୍କୁ ସତର୍କ କରିଦିଅନ୍ତି।

ଯୋଗୀ ଏବଂ ସାଧୁମାନଙ୍କୁ ଭାରତରେ ବାବା କୁହାଯାଏ। ଏକ ପରିସଂଖ୍ୟାନ ଅନୁସାରେ ଏ ଦେଶରେ ଏ ଯୋଗୀମାନଙ୍କ ସଂଖ୍ୟା ପ୍ରାୟ ଚାଳିଶ ଲକ୍ଷ। କୁହାଯାଏ, ଏମାନେ ସବୁ ସଂସାର ତ୍ୟାଗୀ। ବସନଭୂଷଣ, ଖାଦ୍ୟପେୟରେ ଏମାନଙ୍କର ଆଗ୍ରହ ନଥାଏ। ଜୀବନ ଶୈଳୀରେ ସଂଯମତା ଆଣି ମୋକ୍ଷ ଏବଂ ନିର୍ବାଣ ପ୍ରାପ୍ତି ଦୌଡରେ ଏମାନେ ଥାଆନ୍ତି। ଶୁଦ୍ଧ ସନ୍ନ୍ୟାସୀୟ ଜୀବନ ପ୍ରତି ଭାରତୀୟ ସମାଜ ସମ୍ମାନ ରଖେ।

ଏକଥା ସତ ଯେ ଭାରତୀୟ ସମାଜ ଯେତିକି ବେଶି ରାଜନୈତିକ ନୁହେଁ, ତାଠାରୁ ବେଶି ଧାର୍ମିକ। ଏଠି ପୂଜାର୍ଚ୍ଚନା ପାଇଁ ତେତିଶି କୋଟି ଦେବା ଦେବୀ ଅଛନ୍ତି। ପ୍ରାର୍ଥନା ଏବଂ ଭକ୍ତି ପାଇଁ ମନ୍ଦିର, ଗୁରୁଦ୍ୱାର, ଚର୍ଚ୍ଚ, ମସ୍‌ଜିଦର ଅଭାବ ନାହିଁ। ତଥାପି ବି ଅନେକ ଲୋକ ନିଜର ଆଧ୍ୟାତ୍ମିକ ଗୁରୁଙ୍କ ପ୍ରତି ବିଶ୍ୱାସ ରଖି ତାଙ୍କୁ ଭଗବାନ ନାଁ ଦେଇ ଘରେ ପୂଜା କରନ୍ତି; ତାଙ୍କର ପୋଷ୍ଟର ମାରନ୍ତି; ନିଜ ଗାଡିମଟର ଆଗରେ ବାବାଙ୍କର ଫଟୋ ଲଗାନ୍ତି; ବେକରେ ଗୁରୁଙ୍କର ଲକେଟ ଝୁଲାନ୍ତି ଏବଂ ଏପରି ବି ହୁଏ, ନିଜର ନବ-ବିବାହିତା ସ୍ତ୍ରୀକୁ ବାବାଙ୍କୁ ସମର୍ପି ଦେବାକୁ ଅନେକ କୁଣ୍ଠା କରନ୍ତି ନାହିଁ। ବାବାଙ୍କ ମିଥ୍ୟା ଚମତ୍କାରିତାକୁ ନେଇ ପ୍ରହେଳିକାର ଏକ ବଳୟ ତିଆରି କରାଯାଉଛି। ଏ ପ୍ରହେଳିକା ପ୍ରସ୍ତୁତିରେ ବାବା ନିଜେ ଅଛନ୍ତି ଏବଂ ତାଙ୍କ ସହ ତାଙ୍କ ଦଲାଲମାନେ ଥାଆନ୍ତି।

ବିଶ୍ୱାସ ଏକ ବ୍ୟକ୍ତିଗତ ବ୍ୟପାର। ଏଇ ବ୍ୟକ୍ତିଗତ କଥା ଯେତେବେଳେ ଅତି ଗଭୀର ହୋଇଯାଏ ଏବଂ ଏହାର କିଛି ହେତୁବାଦୀ ଯୁକ୍ତିଯୁକ୍ତତା ନଥାଏ, ଏହା ଆଉ ସାଧାରଣ ବିଶ୍ୱାସ ହୋଇରହେନି, ଏହା ଅନ୍ଧବିଶ୍ୱାସ ହୋଇଯାଏ ଏବଂ ଏ ଅନ୍ଧବିଶ୍ୱାସକୁ ନେଇ ଭକ୍ତଙ୍କୁ ଶୋଷଣ କରିବା ସହଜ ହୋଇଥାଏ।

କେନ୍ଦ୍ରାପଡ଼ାର ସାରଥୀ ବାବା ଯେ ସନ୍ତୋଷ ରାଉଳ ଥିଲେ, ଏକଥା ଅନେକ ନିଶ୍ଚୟ ଜାଣିନଥିଲେ। ଏପରିକି, ସାରଥୀଙ୍କ ଅନେକ ଭକ୍ତଙ୍କ ପାଇଁ ସାରଥୀଙ୍କ ମୂଳ ନାଁ ଅଜଣା ଥିଲା। ଭକ୍ତଙ୍କ ପାଇଁ ବାବା ଥିଲେ କୃଷ୍ଣଙ୍କ ଅବତାର। ନିଜକୁ କୃଷ୍ଣ ନକଲେ

ଅନେକ ସ୍ତ୍ରୀଙ୍କ ସହ ଅଭିସାର ରଚିବା କଷ୍ଟ । ବାବା ସାରଥୀ ତେଣୁ ଅନନ୍ତ ଶୟନରେ ଶୋଉଥିଲେ । ହଜାର ହଜାର ଭକ୍ତଙ୍କ ପ୍ରାର୍ଥନାରେ ବାବାଙ୍କ ନିଦ ଭାଙ୍ଗୁଥିଲା ଏବଂ ପରିଚାରିକାଙ୍କ ସେବାରେ ବାବାଙ୍କ ନିଦ ଲାଗୁଥିଲା । ବାବାଙ୍କ ପାଦରୁ ମକରନ୍ଦ ଝରୁଥିଲା । ଶୂନ୍ୟରୁ ବିଭୂତି ଆସୁଥିଲା ଏବଂ ବିଭୂତିରୁ ସନ୍ତାନ ସୃଷ୍ଟି ହେଉଥିଲା । ସରଳ ଭକ୍ତମାନେ ଏସବୁକୁ ବିଶ୍ୱାସ କରୁଥିଲେ ଯଦିଓ ବାବାଙ୍କ ପାଇଁ ଏସବୁ ମିଛ ହିଁ ଥିଲା । ପ୍ରଶ୍ନ ଆସେ ଏତେ ବଡ଼ ଆତ୍ମପ୍ରବଂଚନାକୁ ଜଣେ ମଣିଷ ସହ୍ୟ କରି ପାରୁଥିଲା କିପରି ? ଜଣେ ମହିଳାଙ୍କ ସହ ବାବା ସାରଥୀ ଯଦି ଗୋଲକୁଣ୍ଡାର ତାରକା ହୋଟେଲରେ ରାତି କାଟି ନଥାନ୍ତେ, ବାବାଙ୍କ ସାମ୍ରାଜ୍ୟ ବୋଧେ ଆଜି ସେମିତି ଅତୁଟ ଥାଆନ୍ତା । ସାରଥୀଙ୍କ ପରେ ସୁରବାବା ଚର୍ଚ୍ଚାରେ । ରାଜଧାନୀ ଭୁବନେଶ୍ୱର ପାଖ ଝିଇଁଟି ଶାସନର ସୁରବାବାଙ୍କୁ ନେଇ ଅଭିଯୋଗର ଫର୍ଦ୍ଦ ସଂପ୍ରତି କ୍ରମଶଃ ଲମ୍ୱା ହୋଇ ଚାଲିଛି । ଏ ଅଭିଯୋଗ ସାରଥୀଙ୍କଠାରୁ ବି ଭୟଙ୍କର । ଏଥିରେ ହତ୍ୟା, ନରବଳି, ଷଡଯନ୍ତ କଥା ଅଛି । ଦୁଃଖ ଯେ, ଓଡିଶା ଏକ ଭଣ୍ଡବାବାଙ୍କ ରାଜ୍ୟ ବୋଲି ଯେପରି କଳଙ୍କ ପାଇଯାଉଛି ।

ସାରଥୀଙ୍କ ପୂର୍ବରୁ ଭାରତରେ ଅନେକ ଆତ୍ମଘୋଷିତ ଭଗବାନ ଭଣ୍ଡବାବା ବୋଲି ପ୍ରମାଣିତ ହୋଇସାରିଛନ୍ତି । ଅନେକ ପ୍ରମାଣିତ ହେବାକୁ ଅପେକ୍ଷାରେ ଅଛନ୍ତି । ଆଶାରାମ ବାପୁ, ନିତ୍ୟାନନ୍ଦ, ରାମପାଲ୍ ଏପରି ଅନେକ । ଏବେ ରାଧେମା' ଚର୍ଚ୍ଚାରେ ଅଛନ୍ତି । ହିନ୍ଦୀ ସିନେମା ସଂଗୀତର ତାଳେ ତାଳେ ରାଧେ ମା' ନାଚ କରୁଥିଲା ବେଳେ ଭାରତର ଅନେକ ଚଳଚ୍ଚିତ୍ର ଅଭିନେତା, ରାଜନେତା, ଶିଳ୍ପପତି ଏଇ ନାଚକୁ ଆଧାତ୍ମିକ ଭାବେ ତନ୍ମୟ ହୋଇ ଉପଭୋଗ କରୁଥିବାର ଦୃଶ୍ୟ ଗଣମାଧ୍ୟମରେ ଆସେ । ପ୍ରଶ୍ନ ହୁଏ, ଏଇ ସନ୍ତୋଷ ରାଉଳ, ସୁକ୍‌ବିନ୍ଦର କାଉର (ରାଧେ ମା'ଙ୍କ ନାଁ) ଝିଇଁଟି ଶାସନର ଗାଁ ପୁରୋହିତ ସୁର ଭାଇନାକୁ ଏବଂ ଆଶାରାମ ବାପୁଙ୍କୁ ଭଗବାନ କରୁଛି କିଏ ? ବୈଜ୍ଞାନିକ ପୃଷ୍ଠଭୂମିରେ ଥିବା ଏକବିଂଶ ଶତାବ୍ଦୀର ଏହା ଏକ ବୃହତ୍ ପ୍ରଶ୍ନ । ଉପରୋକ୍ତ ବର୍ଣ୍ଣିତ ବାବାଙ୍କ ସଂପର୍କରେ ଏମିତି ରୁଚିକର କଥା ଭାରତୀୟ ଗଣମାଧ୍ୟମମାନଙ୍କରେ ପ୍ରକାଶ ପାଉଛି । ବାବାଙ୍କ ଭକ୍ତ ଏବଂ ସମର୍ଥକମାନେ କିନ୍ତୁ କହନ୍ତି, ଏ ଅଭିଯୋଗ ସବୁ ଡାହା ମିଛ କଥା । ଏ ସଂପର୍କରେ ବିଚାରାଳୟରେ ବିଚାର ଚାଲିଛି । ମାନ୍ୟବର ନ୍ୟାୟାଳୟ ଜଣଙ୍କୁ ଦୋଷୀ ବୋଲି ନକହିଲା ପର୍ଯ୍ୟନ୍ତ ଜଣଙ୍କୁ ଦୋଷୀ କହି ଡିଣ୍ଡିମ ପିଟିବା ଇଏ ବି ଏକ ଦୋଷ ।

ଅବଶ୍ୟ ବାବାମାନଙ୍କୁ ନେଇ ଅଭିଯୋଗ ଏବଂ ସଫେଇ ଏବଂ ଏମାନଙ୍କୁ ନେଇ ତିଆରି ହେଉଥିବା ସାମ୍ରାଜ୍ୟ ଏବେ ଆଉ ବ୍ୟକ୍ତଗତ ବ୍ୟାପାର ହୋଇ ରହିନାହିଁ । ସଂପ୍ରତି ଏହା ଏକ ସଂସ୍କୃତି । ସେଇଥିପାଇଁ ଏକ ସାମାଜିକ ପ୍ରସଂଗ ହୋଇଯାଇଛି । ବାବା ସଂସ୍କୃତିର ଅଭ୍ୟୁଦୟ ଏବଂ ବିକାଶ ପାଇଁ କିଛି କାରଣ ଦିଆଯାଏ । ଏଇ କାରଣ ଭିତରେ ଅଶିକ୍ଷା, ଦାରିଦ୍ର୍ୟ ଏବଂ ବ୍ୟକ୍ତିଗତ ଲୋଭ ରହିଛି ଯାହାକୁ ଶୋଷଣକରି ଚାଲାକ, ଧୂର୍ତ୍ତ ବାବାମାନେ ଭୟ ସୃଷ୍ଟି କରନ୍ତି ଏବଂ ଭୟକୁ ଆଧାର କରି ବ୍ୟବସାୟ । ବ୍ୟବସାୟରେ ଉପଭୋକ୍ତା ସଂସ୍କୃତି ଥାଏ ଏବଂ ଧର୍ମ ଯେତେବେଳେ ଉପଭୋକ୍ତା ବାଦରେ ଛନ୍ଦି ହୋଇଯାଏ, ଏହା ଉପଭୋଗ ମାନସିକତାରୁ ବାଦ୍ ପଡ଼େନି । ଯୌନ କେଳଙ୍କରୀ ସାଂପ୍ରତିକ ଉପଭୋକ୍ତାବାଦର ଏକା ସାଧାରଣ ଘଟଣା ।

ଏଇଠି ପୁଣି ପ୍ରଶ୍ନ ଆସିବଣି, ଅଶିକ୍ଷା ଏବଂ ଦାରିଦ୍ର୍ୟ ଯଦି ବାବା ସଂସ୍କୃତିର ଏକମାତ୍ର କାରଣ ହୋଇଥାନ୍ତା, ତେବେ ଆଶ୍ରମମାନଙ୍କରେ ଧନୀମାନଙ୍କର ଭିଡ କାହିଁକି ? କେନ୍ଦ୍ରାପଡାର ବାରମୁଳା ଏବଂ ଝିଙ୍କିଟିର ତ୍ରାହି ଅଚ୍ୟୁତ ଆଶ୍ରମରେ ଯେଉଁ ଲମ୍ବା କାର୍ ଲାଗୁଥିଲା ସେସବୁ ତ ଧନୀ ତଥା ପଦସ୍ତ ଅଫିସରମାନଙ୍କର । ବାବାଙ୍କ ଆଶୀର୍ବାଦ ପାଇ ହଠାତ୍ ବଡ ଏବଂ ପ୍ରଭାବଶାଳୀ ହୋଇଯିବାର ଲୋଭ ସେମାନଙ୍କୁ ବାବାଙ୍କ ପାଖକୁ ନେଇ ଆସିଥିଲା । ସୁତାରଂ ବାବା ସଂସ୍କୃତିର ସ୍ଥାୟିତ୍ୱ ପାଇଁ ଉଭୟେ ଧନୀ ଦରିଦ୍ର ଦାୟୀ ।

ଏବେ ବାବା ମାତାଙ୍କ କେଳେଙ୍କରୀ ସଂପର୍କରେ ତଥ୍ୟ ଆସିଲାବେଳେ ରାଜନୈତିକ ସଂପର୍କ କଥା ଆସୁଛି । ରାଜନୈତିକ ପୃଷ୍ଠପୋଷକତା ନେଇ ଆଲୋଚନା ହେଉଛି । ଏମ୍.ପି. ଏବଂ ଏମ୍.ଏଲ.ଏ. ହାତପାଣ୍ଠିରୁ ଅର୍ଥ ଦିଆଯାଇଛି ବୋଲି ଚର୍ଚ୍ଚା ଚାଲିଛି ଏବଂ ଏପରି ବି ହୋଇଛି, ଜାତିର ଜନକ ବାପୁଜୀ ଅବସ୍ଥାନ କରିଥିବା ଅନେକ ଐତିହାସିକ ସ୍ଥାନ ପର୍ଯ୍ୟଟନ ସ୍ଥଳୀ ତାଲିକାରେ ସ୍ଥାନୀତ ହେବାକୁ ଅପେକ୍ଷା କରିଥିବାବେଳେ ଝିଙ୍କିଟି ଆଶ୍ରମ ପର୍ଯ୍ୟଟନ ସ୍ଥାନ ହୋଇଯାଇଛି । ଏ ସବୁ ରାଜନୈତିକ ଆଶୀର୍ବାଦର ଫଳ । ରାଜନେତାଙ୍କୁ ପ୍ରଶ୍ନ କଲେ ଉତ୍ତର ଆସେ, ଲକ୍ଷ ଲକ୍ଷ କମିଟେଡ ଭକ୍ତଙ୍କ ଗହଣରେ ଥିବା ବାବାଙ୍କୁ ଭକ୍ତି ଏବଂ ସାହଯ୍ୟ କରିଦେଲେ ଯଦି ଭୋଟ୍ ପାଇ ନିର୍ବାଚନ ଜିତିହେବ, ତେବେ କ୍ଷତି କ'ଣ ? ଗଣତନ୍ତ୍ରରେ ଭୋଟ ଜିତିଲେ ହିଁ ରାଜନୈତିକ କ୍ଷମତା ମିଳେ ।

ବାବା ସଂସ୍କୃତି ଯେ ପୁରାପୁରି ଖରାପ, ଏ ଲେଖକ ଏହା ଏଠି କହିବାକୁ ଋହେଁନାହିଁ। ଧର୍ମ ପ୍ରଋରକଙ୍କୁ ବି ବାବା, ସ୍ୱାମୀଜୀ କୁହାଯାଏ। ଭାରତ ସମ୍ବିଧାନରେ ଧର୍ମ ପ୍ରଋର କରିବା ଏକ ମୌଳିକ ଅଧିକାର। କିନ୍ତୁ ଏ ଅଧିକାର ଜଣେ ବ୍ୟକ୍ତିର ନିରଙ୍କୁଶ ନୁହେଁ । ଅନ୍ୟର ଧାର୍ମିକ ଭାବନାକୁ ଆଘାତ ଦେବା କୌଣସି ବାବାର ଅଧିକାର ନାହିଁ। ଏହା ଏକ ଧର୍ତ୍ତବ୍ୟ ଅପରାଧ।

ବାବା ସଂସ୍କୃତି ସଂପର୍କରେ କହିଲା ବେଳେ ଅନ୍ୟ ଏକ କଥା ଉଲ୍ଲେଖ କରିବାକୁ ଇଚ୍ଛା । ଅନେକ ଜ୍ୟୋତିଷ ମନ୍ଦ ଗ୍ରହର ପ୍ରତିକାରର କଥା କହିବାକୁଯାଇ ପ୍ରକାରନ୍ତରେ ଅନ୍ଧବିଶ୍ୱାସ ପ୍ରଚାର କରୁଛନ୍ତି । ଗୁଡ, ଚିନି ଖାଇ କିଂବା କାନରେ ଧଳା ଫୁଲ ଖୋସି ଯାତ୍ରାକଲେ ଶୁଭ ହେବ, ଏପରି ଅନେକ ଅନ୍ଧବିଶ୍ୱାସର କଥା ଟିଭି ଚାନେଲମାନଙ୍କରେ ଆସୁଛି । ପ୍ରକାଶ ଥାଉକି, ବୈଜ୍ଞାନିକ ମାନସିକତାରେ ଏ ଦେଶ ଚାଲିବ ବୋଲି ଭାରତ ସମ୍ବିଧାନରେ ଲେଖାଅଛି । ପ୍ରକୃତରେ ଆମେ ଏବେ କେଉଁଠି ?

ସାଧାରଣ ଜନତା ଭିତରେ ସଚେତନତା ପାଇଁ ଏବେ ତେଣୁ ଆବଶ୍ୟକତା ଆସିଛି। କାରଣ ଏଇମାନେ ହିଁ ସନ୍ତୋଷ ରାଉଳକୁ ସାରଥୀ ବାବା କରିଛନ୍ତି। ସୁର ଭାଇନାକୁ ଗୁରୁଦେବ କରିଛନ୍ତି । ଏଇ ସଚେତନତାର ଦାୟିତ୍ୱ ଏଣିକି ସରକାର, ବୁଦ୍ଧିଜୀବୀ ଏବଂ ସ୍ୱେଚ୍ଛାସେବୀ ସଂସ୍ଥା ନେଲେ ଭଲ ହୁଅନ୍ତା ବାବା ଏବଂ ତାଙ୍କ ଆଶ୍ରମର ଗତିବିଧିକୁ ଲକ୍ଷ ରଖି କାର୍ଯ୍ୟାନୁଷ୍ଠାନ ପାଇଁ ଏକ ସ୍ଥାୟୀ କମିଟିର ଦରକାର ହେଉଛି। ଏକ ବଳିଷ୍ଠ ଆଇନର ଆବଶ୍ୟକତା ଆସିଛି । ଅବଶ୍ୟ ବାବା ସଂସ୍କୃତିକୁ ସଂପୂର୍ଣ୍ଣ ଶେଷ କରି ନହେଲେ ବି ଏହାକୁ ନିଶ୍ଚୟ ନିୟନ୍ତ୍ରିତ କରିହେବ । ନିଃଶେଷ କରିହେବନି ଏଇଥିପାଇଁ ଯେ ବାବାବାଦ ଏକ ବିଶ୍ୱାସର କଥା ।



# ବନ୍ଦ ସଂସ୍କୃତି

ଗତ ବର୍ଷ ନାଗପୁରରୁ ଫେରିବା ବେଳେ ଏ ଲେଖକକୁ ବାଟରେ ପ୍ରାୟ ୧୦ ଘଣ୍ଟା ଅଟକି ରହିବାକୁ ପଡିଲା । ବନ୍ଦ ଯୋଗୁ କିପରି ଯନ୍ତ୍ରଣା ପାଇବାକୁ ହୁଏ ଏ ଥିଲା ଏକ ଅପାସୋରା ଅନୁଭୂତି । ଯାତ୍ରୀ ସହଯୋଗୀ ଥିବା ଏ ଲେଖକର ଜଣେ ବଙ୍ଗାଳୀ ବନ୍ଧୁ ପ୍ରଶ୍ନ କଲେ, ଦାଦା ! ମାନ୍ୟବର ସୁପ୍ରିମକୋର୍ଟ ପରା ବନ୍ଦ ପାଳନକୁ ବନ୍ଦ କରିଛନ୍ତି ? ଏହି ଡାକରା ଦେଉଥିବା ରାଜନୈତିକ ଦଳ ବା ଗୋଷ୍ଠୀକୁ ଅର୍ଥଦଣ୍ଡ ଦେବା; ଜେଲ୍ ପଠାଇବା ଏବଂ ରାଜନୈତିକ ଦଳମାନଙ୍କର ସ୍ୱୀକୃତି ପ୍ରତ୍ୟାହାର ଆଦି ଏହି ରାୟରେ ତ ଅଛି ? କୋର୍ଟଙ୍କ ବାରଣ ସତ୍ତ୍ୱେ ଏ ବନ୍ଦ ପୁଣି ହେଉଛି କିପରି ? ବନ୍ଧୁଙ୍କ ଭଳି ଏପରି ପ୍ରଶ୍ନ ଏବେ ଅନେକଙ୍କର ଥିବ ।

ଖୁବ୍ ଛୋଟ ଛୋଟ କଥାରେ ଏଠି ବନ୍ଦ ଡାକରା ଦିଆ ହେଉଛି – ଭାରତ ବନ୍ଦ, ବଙ୍ଗଳା ବନ୍ଦ, ଓଡିଶା ବନ୍ଦ, ଏପରି ଅନେକ ବନ୍ଦର ଆହ୍ୱାନ । ତେଲ ଦର ବୃଦ୍ଧି ପ୍ରତିବାଦରେ ବନ୍ଦ, ଖରାପ ରାସ୍ତା ମରାମତି ଦାବିରେ ବନ୍ଦ, ବସ୍ ଭଡା ବୃଦ୍ଧି ବିରୁଦ୍ଧରେ ବନ୍ଦ, ଏମିତି ଅନେକ ବନ୍ଦ'ର ବି ବାହାନା ।

ବନ୍ଦ ନେଇ ଏବେ ଯେମିତି ଏକ ସଂସ୍କୃତିଟିଏ ଗଢି ଉଠିଲାଣି । ରାଜନୈତିକ ସଂସ୍କୃତିର ଏହା ଏକ ନୂଆ ଧାରା । ଯଦିଓ ସାଧାରଣ ଜନତା ବନ୍ଦକୁ ବିରୋଧ କରେ ଏବଂ ବନ୍ଦ ପାଳନକାରୀ ମାନଙ୍କୁ ଘୃଣା କରେ ତଥାପି ରାଜନୈତିକ ଦଳ କିମ୍ବା ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଏହି ସଂସ୍କୃତି ବଞ୍ଚାଇ ରଖିବାକୁ ଆପ୍ରାଣ ଉଦ୍ୟମରେ ଥାଆନ୍ତି । ନ୍ୟାୟାଳୟର ନିର୍ଦ୍ଦେଶ କିମ୍ବା ସାଧାରଣ ଲୋକଙ୍କ ବିରୋଧ ସେମାନଙ୍କ ପାଇଁ କିଛି ମାନେ ରଖେନା ।

ବନ୍ଦ ଡାକରା ଆସିଲେ ବନ୍ଦ ମାଫିଆମାନେ ସକ୍ରିୟ ହୋଇଯାଆନ୍ତି । ଗାଡି ମଟର ଅଟକାନ୍ତି । ସ୍କୁଲ, କଲେଜ, ଅଫିସ, ଦୋକାନ ବଜାର ବନ୍ଦ କରନ୍ତି । ଅନେକ ଜାଗାରେ ବନ୍ଦ ଯୋଗୁ ରେଳ ଗାଡି ବାରରୁ ଚବିଶି ଘଣ୍ଟା ଧରି ଅଟକି ରହେ । ବାଟରେ ଅଟକି ରହି ଯନ୍ତ୍ରଣା ପାଉଥିବା ରୋଗୀଟିଏ ପ୍ରତି ବି ତଥାକଥିତ ସକ୍ରିୟ ଦଳୀୟ କର୍ମୀମାନଙ୍କର ଦରଦ ନଥାଏ । ସ୍ଥାନ ବିଶେଷରେ ଗାଡି, ମୋଟର ଚାଳକଙ୍କ ପ୍ରତି ଆକ୍ରମଣ କରିବାକୁ ମଧ୍ୟ ବନ୍ଦ ପାଳନକାରୀମାନେ ପଛାଇନଥାନ୍ତି ।

ଏହା ସତ ଯେ ଅନେକ ବନ୍ଦ ଡାକରା ସଫଳ ହୁଏ । ଅନେକ ବି ବିଫଳ ହୁଏ । ଅବଶ୍ୟ ବନ୍ଦଟିଏ ବିଫଳ ହେଲେ ଯେ ଏହି ଡାକରା ଦେଇଥିବା ରାଜନୈତିକ ଦଳର ଜନପ୍ରିୟତା ନଥାଏ, ଏହା ଏକ ସ୍ଥାନାନ୍ତରିତ ଧାରଣା । ବନ୍ଦ ସଫଳତା ଏବଂ ବିଫଳତା କେବଳ ସାଧାରଣ ଜନତା ଭିତରେ ଭୟ ସଂଚାର କରିବାରେ ଡିଗ୍ରୀ ଉପରେ ହିଁ ନିର୍ଭର କରେ । ବନ୍ଦ ବେଳେ ଯେଉଁ ଦଳର ମାଫିଆମାନେ ଯେତେ ଅଧିକ ଭୟ ସୃଷ୍ଟି କରିପାରନ୍ତି, ସେ ବନ୍ଦ ତାଙ୍କର ସେତେ ସଫଳ ହୋଇଥାଏ ।

ବନ୍ଦକୁ ନେଇ ସ୍ୱାଭାବିକ କିଛି ପ୍ରଶ୍ନ ଆସେ । ସେ ପ୍ରଶ୍ନ ଭିତରେ ଅଛି – ଅଧିକାଂଶ ଲୋକ ବନ୍ଦକୁ ପସନ୍ଦ କରୁନଥିଲେ ବି ରାଜନୈତିକ ଦଳମାନେ ବନ୍ଦ ଡାକରା ଦିଅନ୍ତି କାହିଁକି ? ଗୋଟିଏ କାରଣ ପାଇଁ ଦେଶର ରାଜନୈତିକ ଦଳମାନେ ଭିନ୍ନ ଭିନ୍ନ ଦିନରେ ବନ୍ଦ ଡାକରା ଦେବାର କାରଣ ବା କ'ଣ ?

ଏସବୁ ପ୍ରଶ୍ନର ଉତ୍ତର କିନ୍ତୁ ବେଶ୍ ସିଧା ଏବଂ ସ୍ପଷ୍ଟ । ଉତ୍ତର ହେଲା, ଗଣତାନ୍ତ୍ରିକ ଭାରତରେ ଦୁଇଟି ସମାଜ ଅଛି । ଗୋଟିଏ ହେଉଛି ରାଜନୈତିକ ସମାଜ ଏବଂ ଅନ୍ୟଟି ହେଉଛି ନାଗରିକ ସମାଜ । ଏହି ଦୁଇଟି ସମାଜର ନିଜସ୍ୱ ଆତ୍ମପରିଚୟ ଅଛି ଏବଂ ଏଠି ଏମାନେ ପାଖପାଖି ରହନ୍ତି ।

ରାଜନୈତିକ ସମାଜର ଏବେ ପ୍ରାଧାନ୍ୟ ବଢୁଛି । ଏହାର ସଭ୍ୟମାନେ ନିଜର ସତ୍ତା ଏବଂ ପ୍ରଗତି ପାଇଁ ପ୍ରତ୍ୟକ୍ଷ ରାଜନୀତି କରନ୍ତି ଏବଂ ଏହାର ଅନେକ ସଭ୍ୟ ମଧ୍ୟ ରାଜନୀତିକୁ ପ୍ରତ୍ୟକ୍ଷ ସମର୍ଥନ କରନ୍ତି ।

ଶାସନ କ୍ଷମତା ଦଖଲ କରିବା ହେଉଛି ରାଜନୈତିକ ସମାଜର ମୂଳ ଲକ୍ଷ୍ୟ । ସେଥିପାଇଁ ସେମାନେ ନିଜ ସଂଗଠନକୁ ସବୁ ସମୟରେ ଦୃଢ ତଥା କ୍ରିୟାଶୀଳ ରଖିବାକୁ ଚାହାନ୍ତି । ଭୋଟଦାତାଙ୍କୁ ଏକାଠି ରଖି ନିର୍ବାଚନ ଜିତିବା ଉପରେ ଏମାନେ ଜୋର ଦିଅନ୍ତି ।

ରାଜନୈତିକ ସମାଜ ପାଇଁ ବନ୍ଦ ତେଣୁ ଏକ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ର । ନିଜ ସଂଗଠନର ଶକ୍ତି ପରୀକ୍ଷା ପାଇଁ ଦଳମାନେ ନିଜ ପାଖରେ ରଖିଥିବା ବାହୁବଳୀମାନଙ୍କୁ ବା ମସଲ ଫୋର୍ସକୁ ଏହି କାମରେ ଲଗାନ୍ତି । ସଂଗଠନର କ୍ଷମତା ଏଥିରେ ପରୀକ୍ଷା କରନ୍ତି । ବନ୍ଦରେ ବାହୁବଳୀ ଶକ୍ତିମାନଙ୍କର ଯେପରି ଡ୍ରିଲଟିଏ ହୋଇଥାଏ । ଅନ୍ୟ କଥାରେ କହିଲେ, ବନ୍ଦ ହେଉଛି ପାର୍ଟି ମସଲମ୍ୟାନ୍‌ଙ୍କର ଏକ ଡ୍ରିଲ୍ – ଏକ ପ୍ରସ୍ତୁତି ଅଭ୍ୟାସ ।

ସୁତରାଂ ବନ୍ଦ ବେଳେ ଯେଉଁ କ୍ଷତି ହୁଏ ରାଜନୈତିକ ଦଳର ସଭ୍ୟ ତଥା ସମର୍ଥକମାନେ ଏଥିପାଇଁ ଦାୟୀ । ଏମାନେ ସାଧାରଣ ଲୋକଙ୍କୁ ଆକ୍ରମଣ କରନ୍ତି ; ହିଂସା ଘଟାନ୍ତି ଏବଂ ନାଗରିକ ସମାଜର ସ୍ଥିତିକୁ ବିପଦାପନ୍ନ କରିଦିଅନ୍ତି ।

ବନ୍ଦ ସଂସ୍କୃତି ନେଇ ରାଜନୈତିକ ଏବଂ ନାଗରିକ ଏହି ଦୁଇ ସମାଜ ଭିତରେ ମତ ପାର୍ଥକ୍ୟ ଆସିଥାଏ । ନାଗରିକ ସମାଜର ଯୁକ୍ତି ହେଲା, ଗଣତନ୍ତ୍ର ଗଣ ସମର୍ଥନରେ ଚାଲେ । ଗଣ ପସନ୍ଦକୁ ଏହା ଆଦର କରେ । କିନ୍ତୁ ବିଡ଼ମ୍ବନା ଯେ ବନ୍ଦରେ କିନ୍ତୁ ସାଧାରଣ ଲୋକର ପସନ୍ଦ ବା ଅପସନ୍ଦକୁ ଏହି ବନ୍ଦ ସଂସ୍କୃତି ପ୍ରତ୍ୟାଖ୍ୟାନ କରିଦିଏ । ନୀତି ବା ଆଦର୍ଶଟିଏର ପରିବର୍ତ୍ତନ ଅଥବା ସ୍ଥାପନ ପାଇଁ ବନ୍ଦ ପାଳିତ ହୁଏ ନାହିଁ । ନିର୍ବାଚନ ପୂର୍ବରୁ ନିଜର ସାଂଗଠନିକ ମେସିନ କେତେ ସକ୍ଷମ ଏବଂ କେତେ ମାତ୍ରାରେ ପ୍ରସ୍ତୁତ ହୋଇ ରହିଛି ଏହାର ପ୍ରଦର୍ଶନ କରିବା ପ୍ରତିଟି ବନ୍ଦ କାର୍ଯ୍ୟକ୍ରମରେ ସବୁ ରାଜନୈତିକ ସମାଜର ଉଦ୍ଦେଶ୍ୟ ହିଁ ଥାଏ ।

ଭାରତରେ ଏଇ କିଛି ବର୍ଷ ଧରି ଯେଉଁ ବନ୍ଦ ସଂସ୍କୃତି ଚାଲିଛି, ଏଥିନେଇ ଅନ୍ୟ ଏକ ପ୍ରଶ୍ନ ବି ଆସେ । ସେ ପ୍ରଶ୍ନ ହେଉଛି, ବନ୍ଦକୁ ସମର୍ଥନ କରୁଥିବା ବ୍ୟକ୍ତିମାନେ ପ୍ରକୃତରେ କିଏ ?

ଏ ଦେଶର ଔପଚାରିକ ଗୋଷ୍ଠୀ ବା ଫର୍ମାଲ ଗ୍ରୁପ ବନ୍ଦକୁ ସମର୍ଥନ କରନ୍ତି ନାହିଁ । ଫର୍ମାଲ ଗୋଷ୍ଠୀ କହିଲେ ଯେଉଁମାନେ ସ୍ଥାୟୀ କିମ୍ବା ଶୃଙ୍ଖଳିତ ଜୀବିକାରେ ବଞ୍ଚିଥାଆନ୍ତି । ଏମାନେ ଚାକିରିଆ ହୋଇପାରନ୍ତି କିମ୍ବା ବ୍ୟବସାୟୀ ।

ବନ୍ଦ ବେଳେ ଯେଉଁମାନେ ନିଜ ଛାତିକୁ ଖୋଲା କରି ହାତରେ ଲାଠି ଧରି ଉତ୍ପାତ କରନ୍ତି ସେମାନଙ୍କୁ ଏଠାକାର ପିଲାମାନେ ବି ପସନ୍ଦ କରନ୍ତିନି । ସିନେମା ଷ୍ଟାଇଲ୍‌ରେ ହେଉଥିବା ବନ୍ଦ ମାଫିଆମାନଙ୍କର ବନ୍ଦ ପାଳନ ଛୋଟ ପିଲାଙ୍କୁ ପ୍ରଭାବିତ ବି କରେନି ।

ବାସ୍ତବରେ ବନ୍ଦକୁ ସମର୍ଥନ କରୁଥିବା ଗୋଷ୍ଠୀ କିନ୍ତୁ ନିଆରା । ଏମାନଙ୍କ ଭିତରେ ଅନେକ ଏମିତି ଥାଆନ୍ତି ଯେଉଁମାନଙ୍କର ସ୍ଥିର ଜୀବିକା ବା ରୋଜଗାର ନଥାଏ । ବେଆଇନ ଭାବେ ରେଳବାଇ ଯାଗା ଦଖଲ କରିଥିବା ଲୋକ ହେଉଛନ୍ତି ପ୍ରାୟ ଏହି ଗୋଷ୍ଠୀର ଲୋକ । ରାସ୍ତା ଅବରୋଧ କରି ଦୋକାନ କରିଥିବା ବସ୍ତି ବାସିନ୍ଦା, ରିକ୍ସା ଅଟୋରିକ୍ସା ଚାଳକ ଏମାନଙ୍କ ଭିତରେ ବି ସାମିଲ । ଏମାନେ ପ୍ରକୃତରେ ଏକ ଅନୌପଚାରିକ ଗୋଷ୍ଠୀ – ଏକ ଇନ୍‌ଫର୍ମାଲ ଗ୍ରୁପ୍ । ଏମାନେ ସମସ୍ତେ ହେଉଛନ୍ତି ବନ୍ଦ ସମର୍ଥକଙ୍କ ଭିତରୁ ପ୍ରାୟ ନବେ ପ୍ରତିଶତ ।

ଏହି ଗୋଷ୍ଠୀର ଲୋକଙ୍କର ନିଜର ସ୍ଥିତି ପାଇଁ ରାଜନୈତିକ ଦଳକୁ ପ୍ରତ୍ୟକ୍ଷ ସମର୍ଥନ କରନ୍ତି । ବନ୍ଦ ଡାକରା ଆସିଲେ ସେମାନେ ତେଣୁ ସୁଯୋଗଟିଏ ପାଇଗଲେ ବୋଲି ଭାବନ୍ତି । ବନ୍ଦକୁ ସେମାନେ ସମର୍ଥନ କରନ୍ତି । ଆଶା ଥାଏ, ବନ୍ଦ ସଫଳ ହୋଇଗଲେ ତାଙ୍କୁ ରାଜନୈତିକ ସାହାଯ୍ୟ ମିଳିବାରେ କିଛି ଅସୁବିଧା ହେବନି ।

ସ୍ପଷ୍ଟ କହିଲେ, ଏବେ ରିକ୍ସା ଚାଳକଙ୍କଠାରୁ ବସ୍ତି ବାସିନ୍ଦା ପର୍ଯ୍ୟନ୍ତ ଏମାନେ ସମସ୍ତେ କୌଣସି ନା କୌଣସି ରାଜନୈତିକ ଦଳର ପ୍ରତ୍ୟକ୍ଷ ସମର୍ଥକ । ଏମାନେ ପ୍ରତ୍ୟେକ ରାଜନୈତିକ ଦଳର ଏକ ବଡ ଭୋଟ ବ୍ୟାଙ୍କ । ରାଜନୈତିକ ଦଳ ବନ୍ଦ ଡାକରା ଦେଲେ ଏମାନେ ତାଙ୍କୁ ସମର୍ଥନ କରନ୍ତି ଏବଂ ଏହି ଗୋଷ୍ଠୀ ଯଦି କୌଣସି ଗୋଷ୍ଠୀଗତ କାରଣ ନେଇ ବନ୍ଦ ଡାକରା ଦିଅନ୍ତି ରାଜନୈତିକ ଦଳ ଏବଂ ଏହି ଅନୌପଚାରିକ ଗୋଷ୍ଠୀର ପାରସ୍ପରିକ ସାହାଯ୍ୟ ଏବଂ ସମର୍ଥନରେ ଭାରତବର୍ଷରେ ବନ୍ଦ ସଂସ୍କୃତି ବଞ୍ôଚେ ଏବଂ ଆଗକୁ ବଢେ ।

ବନ୍ଦ ସଂସ୍କୃତିକୁ ଯେଉଁମାନେ ବଞ୍ôଚାଇ ରଖନ୍ତି, ଏଠାରେ ଥିବା ନାଗରିକ ସମାଜର ମୌଳିକ ଧାରାକୁ ସେମାନେ ଖାତିର କରନ୍ତି ନାହିଁ । ପ୍ରକାଶ ଥାଉକି ନାଗରିକ ସମାଜ ମୁକ୍ତ ବିଚରଣ ଚାହେଁ । ଜୀବିକା ଉପାର୍ଜନର ସ୍ୱାଧୀନତା ଚାହେଁ । ଏଠି ଏକ ଶୃଙ୍ଖଳିତ ତଥା ହିଂସାଶୂନ୍ୟ ପରିବେଶକୁ ଏ ସମାଜର ସଭ୍ୟ ପସନ୍ଦ କରେ । କିନ୍ତୁ ବନ୍ଦ ବେଳେ ନାଗରିକ ସମାଜର ଏ ସୂକ୍ଷ୍ମ ସତ୍ତାକୁ ବନ୍ଦ କର୍ମକର୍ତ୍ତାମାନେ ଜାଣି ଜାଣି ଧ୍ୱଂସ କରିଦିଅନ୍ତି ।

ହଁ, ଏ ଆଲୋଚନାର ଏ ଶେଷ କଥା – ପୃଥିବୀର ସମସ୍ତ ଦୃଢ ଗଣତାନ୍ତ୍ରିକ ରାଷ୍ଟ୍ରରେ ରାଜନୈତିକ ଏବଂ ନାଗରିକ ସମାଜ ଭିତରେ ଥିବା ସହବସ୍ଥାନ ବେଶ୍ ଉନ୍ନତମାନର । ପ୍ରସବ ଅପେକ୍ଷାରେ ଥିବା କୌଣସି ଏକ ଗର୍ଭବତୀ ମହିଳାଙ୍କୁ ବାଟରେ ଅଟକ ରଖି ବନ୍ଦ ସଫଳ ହୋଇଛି ବୋଲି ଚିତ୍କାର କରୁଥିବା ବନ୍ଦ କର୍ମୀମାନଙ୍କୁ ସେଠି ହତ୍ୟାକାରୀ ବୋଲି ଗଣାଯାଏ ।

ବନ୍ଦ ସଂସ୍କୃତି ବାହାବା ଦେଉଥିବା ଭାରତବର୍ଷର ରାଜନୈତିକ ଦଳ ଏବଂ ଗୋଷ୍ଠୀ ଏକଥା ତେଣୁ ବୁଝିବା ଜରୁରୀ । କାରଣ ଏଠି ନାଗରିକ ସମାଜଟିଏ ବି ପାଖାପାଖି ଅଛି ।



# ବରିଷ୍ଠ ନାଗରିକଙ୍କ ସୁରକ୍ଷା

ବରିଷ୍ଠ ନାଗରିକ ଏବେ ଆଉ ସୁରକ୍ଷିତ ନୁହଁନ୍ତି । ଘରେ ଏକାକୀ ଥିଲେ ହତ୍ୟା ଓ ଲୁଣ୍ଠନର ଭୟ ଏବଂ ନିଜ ପିଲାଙ୍କ ପାଖରେ ରହୁଥିଲେ ନିର୍ଯାତିତ ହେବାର ଘଟଣାମାନ ଘଟୁଛି । ଏ ସବୁ ଘଟଣା ବୟସ୍କଙ୍କ ନିଜ ଆତ୍ମୀୟ ତଥା ଜଣା ଲୋକ ହିଁ କରନ୍ତି । ବୃଦ୍ଧ ବୃଦ୍ଧାଙ୍କ ପ୍ରତି ଏ ସମାଜ କାହିଁକି ଯେ ଏତେ ଅସଂବେଦନଶୀଳ, ଏ ପ୍ରଶ୍ନ ତେଣୁ ଆସେ । ଭୁବନେଶ୍ବରରେ ସଂପ୍ରତି ଘଟିଥିବା ବୃଦ୍ଧ ଡାକ୍ତର ଦଂପତିଙ୍କ ହତ୍ୟା ଏ ପ୍ରଶ୍ନକୁ ଏବେ ଅଧିକ ଖୋରାକ ଦେଇଛି ।

ହଁ, ପାଠକ ବନ୍ଧୁ ଏହା ସତ, ଘରେ ବୃଦ୍ଧ ପିତାମାତା, ଜେଜେ ଏବଂ ଜେଜେ ମା'ଙ୍କୁ ନିର୍ଯାତନା ଦେବା ଏବେ ଏକ ବୃହତର ସମସ୍ୟା । ଏ ସମସ୍ୟା ଆଜିର ଏ ବସ୍ତୁବାଦୀ ତଥା ଉପଭୋକ୍ତାବାଦୀ ସମାଜରେ ପ୍ରତିଦିନ ଘଟୁଛି । ଏହା କ୍ରମଶଃ ବୃଦ୍ଧି ବି ପାଉଛି ।

ବୃଦ୍ଧ, ବୃଦ୍ଧାଙ୍କୁ ନିର୍ଯାତନା ଦେବା କିଛି ଖବର ଏଇ କିଛି ଦିନ ତଳେ ଖବର କାଗଜ ମାନଙ୍କରେ ପ୍ରକାଶିତ ହୋଇଥିଲା । ପ୍ରଥମ ଖବରଟି ଥିଲା, ଜଣେ ୩୫ ବର୍ଷୀୟ ଯୁବକ ତାର ୬୦ ବର୍ଷୀୟ ବୃଦ୍ଧ ପିତାଙ୍କୁ ପିଟିପିଟି ହତ୍ୟା କରିଦେଲା । ହତ୍ୟାର କାରଣ ଥିଲା, ରୋଗୀ ବାପା ରାତି ସାରା ଖଁ ଖଁ ହୋଇ କାଶୁଥିଲା ଏବଂ ଏହି କାଶ ଯୋଗୁଁ ପୁଅ ରାତିରେ ଶୋଇ ପାରୁନଥିଲା ।

ଦ୍ୱିତୀୟ ଘଟଣାଟି ଥିଲା ବେଶ୍ ମର୍ମନ୍ତୁଦ । ଜଣେ ୩୦ ବର୍ଷୀୟ ଯୁବକ ପଞ୍ଚାବନ ବର୍ଷିୟା ତା'ର ବିଧବା ମା'କୁ ନିର୍ଘୃମ୍ ପିଟିଲା ଏବଂ ଘରେ ନିଆଁ ଲଗାଇ ଦେବାକୁ ଉଦ୍ୟମ କଲା । ପ୍ରଶ୍ନ କଲା ବେଳେ ସେ ଉତ୍ତର ଦେଲା, ମା' ତାକୁ ଘରେ ନ ବସି କିଛି ରୋଜଗାର କରିବା କଥା ପ୍ରତିଦିନ କହୁଥିଲା ।

ଏପରି ଉଦାହାରଣ ତ ଅନେକ ଅଛି । ଘରେ ବୁଢାବୁଢୀଙ୍କୁ ଠିକ୍ ସମୟରେ ଖାଇବାକୁ ନଦେବା, ଠିକ୍ ସମୟରେ ଔଷଧ ନ ଦେବା, ଘରେ ଦିନ ସାରା ତାଲା ପକାଇ ରଖିବା, ବୁଢାବୁଢୀଙ୍କୁ ଏକ ଫର୍ଣ୍ଣିଚର ବୋଲି ବିବେଚନା କରିବା ଏବଂ ଏମାନଙ୍କୁ କିଛି ମୌଳିକ ସୁବିଧା ଯୋଗାଇ ନଦେବା ଭାରତବର୍ଷରେ ଅନେକ ପରିବାରରେ ଏହା ବର୍ତ୍ତମାନ ଏକ ନିତିଦିନିଆ ଘଟଣା ।

ବରିଷ୍ଠ ନାଗରିକଙ୍କ ନିର୍ଯାତନା ନେଇ ଏବେ ଏକ ଅଧ୍ୟୟନ ନଜରକୁ ଆସିଲା । ଏଥିରେ ଥିଲା, ଏଠି ପ୍ରାୟ ୪୦ ପ୍ରତିଶତ ଘରେ ବୁଢ଼ାବୁଢ଼ୀଙ୍କ ପ୍ରତି ଦୁର୍ବ୍ୟବହାର କରାଯାଏ । ଏଥିରୁ ପ୍ରାୟ ୨୫ ପ୍ରତିଶତ ଘଟଣାରେ ବୟସ୍କମାନଙ୍କୁ ଦୈହିକ ଯନ୍ତ୍ରଣା ଦିଆଯାଏ । ଅଥଚ ଏହା ଏକ ଆଶ୍ଚର୍ଯ୍ୟର କଥା ଯେ ପ୍ରାୟ ୯୦ ପ୍ରତିଶତ ଘଟଣାରେ ନିର୍ଯାତିତ ବୃଦ୍ଧ ଏବଂ ବୃଦ୍ଧାମାନେ ଏକଥା ବାହାରେ ପ୍ରକାଶ କରନ୍ତି ନାହିଁ । କାରଣ ଦର୍ଶାନ୍ତି, ଘରର ଇଜ୍ଜତ କାଳେ ପଦାରେ ପଡିଯିବ କିମ୍ବା ପ୍ରଘଟ ହୋଇଗଲେ ଘଟଣା ବଢ଼ିଯାଇପାରେ । ନିର୍ଯାତନାର ମାତ୍ରା ଅଧିକ ବି ହୋଇପାରେ । ସବୁ ସମୟରେ ହିଁ ପିତାମାତା ନିଜ ଦୁଃଖ ପାଇଁ ଭାଗ୍ୟକୁ ଦୋଷ ଦିଅନ୍ତି ।

ଅସଲ କଥା ହେଲା, ଭାରତର ଏହି ବରିଷ୍ଠ ନାଗରିକ ଗୋଷ୍ଠୀ ଏକ ନମନୀୟ, ଅସୁରକ୍ଷିତ ଏବଂ ଦୁର୍ବଳ ଗୋଷ୍ଠୀ । ଏମାନଙ୍କୁ ସହଜରେ ଆକ୍ରମଣ କରିହେବ । କରା ବି ଯାଉଛି । କାରଣ ଏମାନଙ୍କ ଭିତରୁ ଅଧିକାଂଶ ଏବେ ଏକାକୀ ରୁହନ୍ତି । ଯନ୍ତ୍ରଣା ତଥା ନିଃସଙ୍ଗତାକୁ ସହ୍ୟ କରି ନପାରି ଏମାନଙ୍କ ଭିତରୁ ଅନେକ ଆତ୍ମହତ୍ୟା କରୁଛନ୍ତି ।

ଗୋଟିଏ କଥା ସ୍ପଷ୍ଟ ଯେ, ବରିଷ୍ଠ ନାଗରିକଙ୍କୁ ନେଇ ଯେତେ ସବୁ ନିର୍ଯାତନା ବା ଆକ୍ରମଣଜନିତ ଘଟଣା ଦୃଷ୍ଟିକୁ ଆସେ ସେଥିରୁ ଅଧିକାଂଶ ସହରୀ ମଧ୍ୟବର୍ଗୀ ପରିବାରରେ ହିଁ ଘଟିଥାଏ ଏବଂ ମଧ୍ୟବର୍ଗୀ ପଡୋଶୀଟି ଏହା ଦେଖୁଥିଲେ ବି ବାହାରେ ଏହାକୁ ପ୍ରକାଶ କରିବାକୁ ଇଚ୍ଛା କରେନି । ସ୍ୱାର୍ଥପରତା ଏବଂ ସମ୍ବେଦନଶୀଳହୀନତା ହିଁ ପଡୋଶୀକୁ ନୀରବ ରହିବାକୁ ସମ୍ଭବତଃ ବାଧ କରେ ।

ଭାରତୀୟ ନିମ୍ନ ବର୍ଗ କିନ୍ତୁ ବୃଦ୍ଧ ପିତାମାତାଙ୍କୁ ନିର୍ଯାତନା ନଦେବାରେ ବେଶ୍ ଯତ୍ନଶୀଳ । ପଡୋଶୀ ଘରେ ଏପରି ଦୁର୍ବ୍ୟବହାରର ସୁରାକ ପାଇଲେ ସେ ବାହାରେ ଏହାକୁ ପ୍ରକାଶ କରେ ।

ବୃଦ୍ଧ ପିତାମାତାଙ୍କୁ ଅବହେଳା ତଥା କଷଣ ଦେବାର କିଛି କାରଣ ମଧ ନଜରକୁ ଆସେ । ଏହାର ଦୁଇଟି ମୁଖ୍ୟ କାରଣ ଅଛି । ପ୍ରଥମଟି ହେଉଛି ଆର୍ଥିକ ଏବଂ ଅନ୍ୟଟି ହେଉଛି ପୁରାପୁରି ସାମାଜିକ ।

ଆର୍ଥିକ କାରଣଟି ହେଲା, ସହର ଭିତରେ ଥିବା ଦାମିକା ଘର ବା ଖାଲି ଜାଗାକୁ ଅନେକ ସମୟରେ ପୁଅ ବିକି ଦେଇ ସହରର ତଳି ଅଂଚଳରେ ଜାଗା କିଣିବାକୁ ଚାହେଁ ଏବଂ ବଳକା ଅର୍ଥକୁ ତାର ବ୍ୟବସାୟରେ ଖର୍ଚ୍ଚ କରିବାର ଯୋଜନା କଥା କହେ । ବାପା ମନାକଲେ ନିର୍ଯାତନା ଆରମ୍ଭ ହୋଇଯାଏ । ଆର୍ଥିକ କାରଣର ଏହା ଏକ ଦୃଷ୍ଟାନ୍ତ ।

ସାମାଜିକ କାରଣରେ କିନ୍ତୁ ଏଇ ଅର୍ଥନୀତି ବିଷୟ ଆସେନି । ଚାକିରିଆ

ପୁଅ ବୋହୂ ଅନେକ ସମୟରେ ବୁଢାବୁଢୀଙ୍କୁ ଘରେ ଚାବି ପକାଇ ଚାକିରି କ୍ଷେତ୍ରକୁ ଯାଆନ୍ତି । ଅନେକ ବୃଦ୍ଧ-ବୃଦ୍ଧା ଏହାକୁ ଏକ ପ୍ରକାର ନିର୍ଯାତନା ବୋଲି ଭାବନ୍ତି କିନ୍ତୁ ପୁଅ ବୋହୂଙ୍କୁ ପଚାରିଲେ ସେମାନେ ଉତ୍ତର ଦିଅନ୍ତି, ଘର ଖୋଲା କରି ଚାଲିଗଲେ ବୁଢାବୁଢୀ ସୁରକ୍ଷିତ ନୁହନ୍ତି । ସେମାନଙ୍କ ପ୍ରତି ବାହ୍ୟ ଆକ୍ରମଣର ଆଶଙ୍କା ଥାଏ । ଚାକିରିର ବାଧ୍ୟତା ନେଇ ତେଣୁ ସେମାନେ ନିଜ ପିତାମାତାଙ୍କୁ ଘରେ ତାଲା ପକାଇ ଯାଆନ୍ତି । ଏପରି ବି ହୁଏ, ଆର୍ଥିକଭାବେ ସ୍ୱଚ୍ଛଳ ଅନେକ ପିତାମାତା ପୁଅବୋହୂଙ୍କ ଠାରୁ ନିଜ ଇଚ୍ଛାରେ ପୃଥକ ରହିବାକୁ ପସନ୍ଦ କରନ୍ତି । ପିଲାଙ୍କ ଆଧୁନିକ ଜୀବନଶୈଳୀ ଅନେକ ସମୟରେ ତାଙ୍କୁ ଭଲ ବି ଲାଗେ ନାହିଁ ।

ବରିଷ୍ଠ ନାଗରିକଙ୍କ ସୁରକ୍ଷା ପାଇଁ ୨୦୦୭ ମସିହାରେ ଭାରତ ସରକାର ଏକ ଆଇନ ଆଣିଛନ୍ତି । ଆଇନର ନାଁ ହେଉଛି, ଦି ମେଣ୍ଟେନାନ୍ସ ଆଣ୍ଡ ଓ୍ୱେଲ୍‌ଫେୟାର ଅଫ୍ ପ୍ୟାରେଂଟସ୍ ଆଣ୍ଡ ସିନିଅର ସିଟିଜନସ୍ ଆକ୍ଟ-୨୦୦୭ । ଆଇନରେ ଥିବା ବ୍ୟବସ୍ଥା ହେଲା, ଘରେ ରହୁଥିବା ବୃଦ୍ଧ ପିତାମାତା, ଜେଜେ, ଜେଜେ ମା'ଙ୍କର ଭରଣ ପୋଷଣ କରିବା, ସୁରକ୍ଷା ଦେବା, ଯତ୍ନ କରିବା, ଏହା ପିଲାଙ୍କ ପାଇଁ ଆଇନସିଦ୍ଧ ଏବଂ ବାଧ୍ୟତାମୂଳକ କର୍ତ୍ତବ୍ୟ । ବାପା ମା' ଙ୍କୁ ପୋଷିବା ଏକ ନୈତିକତାର ପ୍ରଶ୍ନ କହି ଏହାକୁ ଆଉ ଆଡେଇ ଦିଆଯାଇ ନପାରେ । ଆଇନର ଖିଲାପ ହେଲେ ଦୋଷୀ ପୁଅ ବୋହୂଙ୍କୁ ଜେଲ୍ ଦଣ୍ଡ ସହ ଜୋରିମାନା ଦେବାକୁ ହୋଇପାରେ ।

ଏହି ଆଇନରେ କେବଳ ବରିଷ୍ଠ ନାଗରିକମାନଙ୍କର ସୁରକ୍ଷା କଥା ନାହିଁ । ଏଥିରେ ବୟସ୍କ ପାଇଁ କେନ୍ଦ୍ର ସରକାର, ରାଜ୍ୟ ସରକାର, ଏନ୍‌ଜିଓ, ଏବଂ ପୋଲିସର କର୍ତ୍ତବ୍ୟ କ'ଣ ହେବା ଉଚିତ, ସେଥିନେଇ ଏକ ସୁବିସ୍ତୃତ ଉଲ୍ଲେଖ ରହିଛି ।

କେନ୍ଦ୍ର ସରକାର ପ୍ରାୟ ସବୁ ସହରରେ ବରିଷ୍ଠ ନାଗରିକମାନଙ୍କ ପାଇଁ ଆବାସିକ ଘରମାନ ତିଆରି କରିବେ । ରାଜ୍ୟ ସରକାରମାନେ ବୃଦ୍ଧବୃଦ୍ଧାଙ୍କ ନିମନ୍ତେ ଲୋଭନୀୟ କଲ୍ୟାଣକାରୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବେ । ପୋଲିସ ନିଜ ଇଲାକାରେ ଥିବା ବୃଦ୍ଧବୃଦ୍ଧାଙ୍କ ତାଲିକା ତିଆରି କରି ସେମାନଙ୍କୁ ସାମୟିକ ଦେଖା କରିବେ ଏବଂ ତାଙ୍କ ସୁରକ୍ଷା ତଥା ଯତ୍ନ କଥା ବୁଝିବେ ଏବଂ ଏନ୍‌ଜିଓମାନେ ବୟସ୍କ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପାଇଁ ସଚେତନତା ସୃଷ୍ଟି କରିବେ । ଏହା ଏକ ସମନ୍ୱିତ ସାମାଜିକ କାର୍ଯ୍ୟକ୍ରମ ହେବ ଏବଂ ଆଇନର କଡା ପରିଧି ଭିତରେ ଏହା ଚାଲିବ ।

ଏସବୁ ଏବେ କାହିଁକି ? ଏପରି ପ୍ରଶ୍ନ ମଧ୍ୟ ଆସିବଣି । ଏହାର ଉତ୍ତର ହେଉଛି, ବରିଷ୍ଠ ନାଗରିକ ଅର୍ଥାତ୍ ୬୦ ବର୍ଷରୁ ଉର୍ଦ୍ଧ୍ୱ ବୟସର ଲୋକଙ୍କ ସଂଖ୍ୟା ଭାରତରେ ଏବେ ପ୍ରାୟ ୮ କୋଟି ହେଲାଣି । ଏହି ସଂଖ୍ୟା ନିୟମିତ ଭାବେ ବଢୁଛି ।

ଆର୍ଥିକ ସ୍ୱଚ୍ଛଳତା ଏବଂ ସାମାଜିକ ପ୍ରଗତି ଜୀବନର ବଞ୍ଚିବାର ସୀମା ବଢାଇ ଦେଲାଣି ।

କିଛି ସମାଲୋଚକମାନେ କିନ୍ତୁ କହନ୍ତି, ବୃଦ୍ଧ-ବୃଦ୍ଧାଙ୍କୁ ନେଇ ପାରିବାରିକ ନିର୍ଯାତନା କେବଳ ଆଇନରେ ସମାଧାନ କରିବା କଷ୍ଟ । ବାପା ମା'ଙ୍କୁ ପଚାରିବା ଏକ ନୈତିକତାର କଥା ॥ ଭାରତୀୟ ସଂସ୍କୃତିର ଏହା ଏକ ପୁରୁଣା ବ୍ୟବସ୍ଥା ॥ ଉଚ୍ଚ ରକ୍ତ ଚାପ, ମଧୁମେହ, କର୍କଟ ରୋଗ, ଆଣ୍ଠୁଗଣ୍ଠି ବାତ ପରି ରୋଗରେ ପୀଡ଼ିତ ଥିବା ପିତାମାତାଙ୍କୁ ସେବା କରିବା ପିଲାଙ୍କ କର୍ତ୍ତବ୍ୟ । ଏକଥା ଭାରତୀୟ ପୁରାଣ ଶାସ୍ତ୍ରମାନଙ୍କରେ ଅଛି ॥ ଯଦି ବରିଷ୍ଠ ନାଗରିକଙ୍କୁ ନେଇ ନିର୍ଯାତନା ବଢୁଛି ଏସବୁ ନୈତିକତା ଶିକ୍ଷାର ଅଭାବରୁ ହିଁ ଘଟୁଛି ॥ ଏଥିପ୍ରତି ଦୃଷ୍ଟି ଦେବା ଦରକାର ।

ଏମାନେ ଏକଥା ବି କହନ୍ତି, ବୃଦ୍ଧ ପିତାମାତାମାନେ ତେଣୁ ନିଜ ସମ୍ପତ୍ତିକୁ ପୁଅ ବୋହୂଙ୍କ ନାଁରେ କରିଦେବା ଉଚିତ ନୁହେଁ ॥ ଯଦି ଦରକାର ହୁଏ କେବଳ ଉଇଲ୍‌ଟିଏ କରାଯାଇପାରେ॥ ନିଜ ପ୍ରତି ହେଉଥିବା ଅବହେଳାକୁ ଦୈହିକ ଯନ୍ତ୍ରଣାରେ ପରିଣତ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା ଠିକ୍ ନୁହେଁ ଏବଂ ପିଲାମାନଙ୍କ ଦୃଷ୍ଟିଭଙ୍ଗୀ ଏବଂ ମତକୁ ମଧ୍ୟ ପିତାମାତାମାନେ ସମ୍ମାନ ଦେବା ଦରକାର ॥

ଏଇଠି ଟୋକେଇ ଗପର ସାରକଥାଟି କହି ଏ ଆଲୋଚନା ଶେଷ କରିବାକୁ ଇଚ୍ଛା ॥ ଗପଟି ଠିକ୍ ଏମିତି – ବୃଦ୍ଧ ବାପାଙ୍କୁ ସବୁ ସମୟ ପାଇଁ ବାହାରେ ଛାଡି ଆସିବାକୁ ପୁଅ ବଜାରରୁ ଟୋକେଇଟିଏ କିଣି ଆଣିଲା ॥ ବୃଦ୍ଧଙ୍କୁ କୁହାଗଲା, ଏ ଟୋକେଇରେ ବସେଇ ତାଙ୍କୁ ତୀର୍ଥ ଦେଖେଇବାକୁ ନିଆଯିବ ॥ ଘରେ ଥିବା ଛୋଟ ନାତିଟି କିନ୍ତୁ ଏସବୁ ଲକ୍ଷ୍ୟ କରୁଥିଲା ॥ ସକାଳୁ ପୁଅ ବାପାଙ୍କୁ ଟୋକେଇରେ ବସେଇ ନେବାକୁ ଗଲାବେଳେ ନାତି ପଛରୁ ଡାକି କହିଲା, 'ବାପା, ଜେଜେଙ୍କୁ ଛାଡି ଦେଇ ଏ ଟୋକେଇ ଘରକୁ ଆଣିବ ॥ କାରଣ ତମେ ଯେତେବେଳେ ବୁଢା ହେବ, ମୋତେ ଆଉ ଟୋକେଇ କିଣିବାକୁ ପଡିବନି ॥'

ହଁ ସାବଧାନ, ଆମ ଭିତରୁ ଯେ କୌଣସିଙ୍କ ପାଇଁ ଏ ଟୋକେଇ ଗଳ୍ପ ପ୍ରଯୁଜ୍ୟ ବି ହୋଇପାରେ ॥



# ଭଡ଼ାରେ ମାତୃତ୍ୱ

**ଇ**ଏ ସରୋଗେଟ୍ ମଦରଙ୍କ କଥା । ଭଡାରେ ନିଆଯାଉଥିବା ମାତୃତ୍ୱର ଏ କାହାଣୀ । ଯାହାର ଅର୍ଥ ହେଲା, ଏଇ ମାତୃତ୍ୱରେ ଅନ୍ୟ ଦମ୍ପତିର ଶିଶୁ ଭ୍ରୁଣକୁ ନାରୀଟିଏ ନିଜ ଗର୍ଭରେ ଧାରଣ କରେ । ଆସନ୍ନପ୍ରସବା ମା'ର କଷ୍ଟ ଏବଂ ସୁଖର ଅନୁଭୂତି ସେ ନିଏ । ଠିକ୍ ସମୟରେ ସେ ପିଲା ଜନ୍ମ କରେ ଏବଂ ଜନ୍ମ ପରେ ପିଲାଟିକୁ ମୂଳ ଦମ୍ପତିକୁ ଦେଇଦିଏ । ଅନେକ ସ୍ଥଳରେ ସରୋଗେଟ୍ ମା ଅନ୍ୟର ପିଲା ଧାରଣ ପାଇଁ ନିଜ ଗର୍ଭାଶୟକୁ ବିକି ବି ଦେଇଥାନ୍ତି ।

ସରୋଗେଟ୍ ମା ପ୍ରକୃତ ବା ଜେନେଟିକ୍ ମା' ନୁହେଁ । ସେ କେବଳ ଏକ ଜୈବିକ ମା', ବାୟୋଲୋଜିକାଲ୍ ମଦର । ଅନ୍ୟର ଭ୍ରୁଣକୁ ସେ ନିଜ ପେଟରେ ରଖିଥାଏ, ଜନ୍ମ ଦିଏ । ବାସ୍ ଏତିକି ।

ଭଡାରେ ଏଇ ମାତୃତ୍ୱରେ ଯେଉଁ ନୀତି, ନୈତିକତା, ଆବେଗ ଏବଂ ବ୍ୟବସାୟର ପ୍ରଭାବ ପରିଦୃଷ୍ଟ ହେଉଛି, ଠିକ୍ ତାକୁ ହିଁ ନେଇ ଏଠି ଅନେକ ଦିନୁ ଚର୍ଚ୍ଚା ଚାଲିଛି ଏବଂ ଏଥିନେଇ ନିଜେ ଭାରତ ସରକାର ବି ଖୁବ୍ ବ୍ୟସ୍ତ ।

ଏଇ କିଛି ଦିନ ତଳେ ସମ୍ବାଦଟି ବାହାରି ଥିଲା । ଏ ସମ୍ବାଦ ହେଲା ମଧ୍ୟବୟସ୍କ ସ୍ତ୍ରୀ ଲୋକଟି ନିଜ ଝିଅର ଛୁଆ ଭ୍ରୁଣକୁ ନିଜ ଗର୍ଭରେ ପାଳି ଠିକ୍ ସମୟରେ ମା' ହେଲେ । କାରଣ ଥିଲା ଝିଅ ତାଙ୍କର ମା' ହେବାକୁ ଦୈହିକ ଅକ୍ଷମ ଥିଲା । ଝିଅର ଗର୍ଭାଶୟ ଠିକ୍ ନଥିଲା ।

ନୀତିବାଦୀମାନେ ସେତେବେଳେ ଅଭିଯୋଗ କରିଥିଲେ, ନିଜ ଝିଅର ଭ୍ରୁଣକୁ ଗର୍ଭରେ ଧରି ମା' ହେବା ନୈତିକତା ନୁହେଁ । ଭାରତୀୟ ପାରମ୍ପରିକ ପାରିବାରିକ ପବିତ୍ରତାର ଏହା ପରିପନ୍ଥୀ । ବିଜ୍ଞାନର ବିଚିତ୍ରତାକୁ ମା' ପେଟରେ ଅନୈତିକ ଭାବେ ପ୍ରୟୋଗ କରିବା ଠିକ୍ ହେଉନି ।

ଏଇଠି କିନ୍ତୁ ନାରୀବାଦୀଙ୍କ ଯୁକ୍ତି ଥିଲା ନିଆରା । ସରୋଗେଟ୍ ମା'କୁ ସେମାନେ ତାରିଫ କଲେ । ମାତୃତ୍ୱ ପାଇଁ ଅକ୍ଷମ ଥିବା ନିଜ ଝିଅ ପାଇଁ ସ୍ୱଇଛାରେ ମାତୃତ୍ୱ ଆବୋରି ନେଇଥିବା ମା'ର ଏ କାମକୁ ଏକ ବଳିଷ୍ଠ ସାମାଜିକ ସେବା ବୋଲି ଅଭିହିତ କଲେ ଏବଂ ଦାବି କଲେ, ଏପରି ମାତୃତ୍ୱ ଏକ ସୁନ୍ଦର ପୃଥିବୀ ଗଠନରେ ହିଁ ସାହାଯ୍ୟ କରିଛି ଏବଂ ସୃଷ୍ଟି ପ୍ରକ୍ରିୟାକୁ ଚାଲୁ ରଖିବାରେ ଏହା ସହାୟତା କରିଛି । ଆଜକୁ ପଚାଶ ବର୍ଷ ତଳେ ବିଶିଷ୍ଟ ସମାଜବିଜ୍ଞାନୀ ତଥା ଆମେରିକୀୟ ସାମ୍ବାଦିକ ଆଲଭିନ୍ ଟଫଲ୍‌ର ତାଙ୍କ ବହୁଚର୍ଚ୍ଚିତ ପୁସ୍ତକ ଫ୍ୟୁଚର ସକ୍ ରେ ପାରମ୍ପରିକ ମାତୃତ୍ୱର ଭବିଷ୍ୟତ ନେଇ ଏକ ଟିପ୍ପଣୀ ଦେଇଥିଲେ । ଏଥିରେ ଥିଲା – ନଭେଲ୍‌ଟି ବା ନୂତନତ୍ୱର ସ୍ଲୋଗାନ୍ ଦିନେ ପୃଥିବୀର ଏ ଧାରାବାହିକ ପରିବାରର ଚରିତ୍ରକୁ ପ୍ରଭାବିତ କରିବ । ମାତୃତ୍ୱ ପାଇଁ ଏଥିରେ ନୂଆ ଫର୍ମୁଲା ସୃଷ୍ଟି ହେବ । ଭଡାରେ ମାତୃତ୍ୱ ବା ସରୋଗେଟ୍ ମଦରହୁଡ୍, ଶେଷରେ ପାରିବାରିକ ବନ୍ଧନକୁ ଭାଙ୍ଗିଦେବ ।

ଏ ସମ୍ପର୍କରେ ଟଫ୍‌ଲରଙ୍କ ଆହୁରି ବି ଉକ୍ତି ଥିଲା – ଗୋଟିଏ ସମାଜର ପରିବାରଟି ହେଉଛି ଏକ ବିରାଟ ସକ୍ ଆବ୍‌ଜର୍ବର୍ । ଏକ ଅନୁଷ୍ଠାନ ଭାବେ ସମାଜରେ ଏଠି ପରିବାରର ସ୍ଥାନ ଅନନ୍ୟ । ବାହାର ଦୁନିଆ ସହ ସଂଗ୍ରାମ କରି କ୍ଷତାକ୍ତ ହୋଇ ବ୍ୟକ୍ତିଟିଏ ଯେତେବେଳେ କୌଣସି ଏକ ସୁରକ୍ଷିତ ଜାଗାକୁ ଫେରିଯିବାକୁ ଚାହେଁ ସେ କେବଳ ପ୍ରଥମେ ନିଜ ପରିବାର କଥା ଭାବେ । କାରଣ ପରିବାର ସମାଜର ଏକ ସ୍ଥାୟୀ ବିନ୍ଦୁ ।

ଅଥଚ ଆଧୁନିକ ଶିଳ୍ପ ବିପ୍ଳବ ପରେ ପରିବାର ଚଳନରେ ଯେଉଁ ଆଭ୍ୟନ୍ତରୀଣ ଆଘାତ ଦେଖାଦେବ, ସେଇ ଆଘାତ ବା ସକ୍‌କୁ ବର୍ତ୍ତମାନର ପରିବାରପ୍ରଥା କେତେ ଦୂର ସହ୍ୟ କରିପାରିବ, ଟଫଲର୍ ସେବେ ପ୍ରଶ୍ନଟିଏ କରିଥିଲେ । ତାଙ୍କ ଭାଷାରେ, ସେ ଆଘାତ ହେଉଛି ସରୋଗେଟ୍ ମାତୃତ୍ୱର ଆଘାତ – ମିଷ୍ଟିକ୍ ଅଫ୍ ମଦରହୁଡ୍ । ହଁ, ପାଠକ ବନ୍ଧୁ ! ଭାରତରେ ମଧ୍ୟ ଏବେ ସରୋଗେଟ୍ ମାତୃତ୍ୱ ପାଇଁ ଚାହିଦା ବଢିଛି । ଭଡାରେ ମାତୃ ଗର୍ଭାଶୟ ନେବାକୁ ବିଜ୍ଞାପନ ବାହାରୁଛି । ସରୋଗେଟ୍ ମା' ମାନଙ୍କର ଲମ୍ବା ତାଲିକା ପ୍ରକାଶିତ ହେଉଛି । ଅନେକ ଆଧୁନିକ ଯୁବତୀ ସେମାନଙ୍କର ମା' ହେବାର କ୍ଷମତା ଥିବା ସତ୍ତ୍ୱେ ବି ଅନ୍ୟ ମାତୃ ଗର୍ଭରେ ନିଜର ପିଲା ବଢାଇ ନିଜେ ମା' ହେବାକୁ ପସନ୍ଦ କରୁଛନ୍ତି । ପିଲା ଧାରଣ କରି ସେ ଆଉ ରୋଗିଣା ହେବାକୁ ଚାହୁଁ ନାହାନ୍ତି ।

ଏଇଟା ହିଁ ଏବେ ଭାରତ ପାଇଁ ଏକ ସାମାଜିକ ସମସ୍ୟା । ଏ ସମସ୍ୟା ସଂପ୍ରତି ବ୍ୟାପକ ନ ହୋଇଥିଲେ ବି ଏହାର ବ୍ୟାପ୍ତି ପାଇଁ ଆଉ ଡେରି ହେବନି ।

ଏଇ ସମସ୍ୟାର କିଛି କଥା ଏଇଠି ଏ ଆଲୋଚନାର ପରିଧି ଭିତରକୁ ଅଣାଯାଇପାରେ ।

ଭଡା ମାତୃତ୍ୱରେ ଯେଉଁ ଜିନିଷଟି ପ୍ରଥମେ ପ୍ରଭାବିତ ହେଉଛି, ସେ ହେଉଛି ମାତୃତ୍ୱ ନିଜେ । ହଜାର ହଜାର ବର୍ଷ ଧରି ମାତୃତ୍ୱକୁ ନେଇ ଯେଉଁ ବନ୍ଧନ ସୃଷ୍ଟି ହୋଇଥିଲା ତାହା ଭାଙ୍ଗିଯାଉଛି ।

ମନସ୍ତତ୍ତ୍ୱବିତ୍‌ମାନେ ଏକ ବିଶ୍ଳେଷଣ ଦିଅନ୍ତି । ପିଲା ଜନ୍ମ କରିବାର କ୍ଷମତା ଥିଲେ ମା'ମାନେ ଗର୍ବ ଅନୁଭବ କରନ୍ତି । ନିଜ ପିଲାକୁ ଗର୍ଭରେ ଧରି ମା' ହେବାର ଅମାପ ଖୁସି ଅଛି କହି ଆତ୍ମସନ୍ତୋଷ ପାଆନ୍ତି । ସେଇଥିପାଇଁ ତ ଗର୍ଭବତୀ ସ୍ତ୍ରୀ ଲୋକର ମହିମାଗାନ କରି ଅନେକ ଚିତ୍ର ଓ ଲେଖା ପ୍ରକାଶିତ ହୁଏ । ଏହା ଖାଲି ଭାରତୀୟ ସାହିତ୍ୟରେ ନୁହେଁ । ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ମାତୃତ୍ୱ ପ୍ରତି ଆବେଗିକ ଆବେଦନ ଅଛି ।

ସ୍ୱାଭାବିକ ତେଣୁ ପ୍ରଶ୍ନ ଆସେ, ଅନ୍ୟ ଗର୍ଭାଶୟକୁ ଭଡାରେ ନେଇ ନିଜ ଭ୍ରୂଣକୁ ସେଠି ବଢାଇବାରେ କି ମାତୃ ସୁଖ ଥାଏ ।

ସରୋଗେଟ୍ ମାତୃତ୍ୱର ବର୍ତ୍ତମାନ ଅନ୍ୟ ଏକ ବଡ ସମସ୍ୟା ହେଉଛି ଏହା ଚାରିପଟେ ଗଢିଉଠିଥିବା ମାର୍କେଟ୍ । ଅନ୍ୟ ଦମ୍ପତିଙ୍କ ପାଇଁ ଗର୍ଭାଶୟକୁ ଭଡାରେ ଦେବା ସଂପ୍ରତି ଏକ ଲୋଭନୀୟ ବ୍ୟବସାୟ । ଅନେକ ସକ୍ଷମ ମଧ୍ୟ ବୟସ୍କା ମା'ମାନେ ଏଇ ବ୍ୟବସାୟରେ ଏବେ ସାମିଲ । ଏପରି ଏକ ବ୍ୟବସାୟ ସମ୍ପର୍କରେ ପ୍ରଥମ ଘଟଣା ଘଟିଥିଲା ଏଇ ଗତ ଦଶନ୍ଧିରେ ଚଣ୍ଡିଗଡରେ । ଚଣ୍ଡିଗଡର ଜଣେ ମହିଳା ତାଙ୍କ ନିଯୁକ୍ତି ଦାତାଙ୍କ ପିଲାକୁ ସେତେବେଳେ ନିଜ ଗର୍ଭରେ ରଖିବାକୁ ରାଜି ହୋଇଥିଲେ ଏବଂ ସେଥିପାଇଁ ସେ ବେଶ୍ ବଡ ପରିମାଣରେ ଅର୍ଥ ବି ନେଲେ । ମହିଳା ଜଣକ ସେବେ ସଫେଇ ଦେଇଥିଲେ, ଏଇ ଅର୍ଥରେ ସେ ତାଙ୍କର ପକ୍ଷାଘାତ ରୋଗରେ ଆକ୍ରାନ୍ତ ସ୍ୱାମୀଙ୍କର ଚିକିତ୍ସା କରିବେ ଏବଂ ନିଜ ଭବିଷ୍ୟତକୁ ସୁରକ୍ଷିତ ରଖିବେ । ମହିଳାଙ୍କର ଏ ଆଚରଣକୁ ନେଇ ସେତେବେଳେ ଦେଶ ସାରା ବି ଏକ ତର୍କ ଆରମ୍ଭ ହୋଇଯାଇଥିଲା । ବ୍ୟଭିଚାର ଏବଂ ଅନୈତିକତାର ଏଇ ସରୋଗେଟ୍ ମାତୃତ୍ୱ ଯେ

ଏଙ୍କ ଦାହକ ଏଥିନେଇ ଅନେକ ଅଭିଯୋଗ ଆସିଥିଲା ।

ଗତ ଦଶନ୍ଧି ତଳେ ଆରମ୍ଭ ହୋଇଥିବା ଭଡା ମାତୃତ୍ୱକୁ ନେଇ ଏ ବ୍ୟବସାୟ ଯେବେଠୁଁ ଚାଲୁଛି । ମଧ୍ୟବିତ୍ତ ଏବଂ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ତିରିଶିରୁ ପଞ୍ଚତିରିଶ ବର୍ଷୀୟା ହଜାର ହଜାର ଯୁବତୀ ଏଇ ବ୍ୟବସାୟରେ ସଂପୃକ୍ତ ଅଛନ୍ତି ।

ଯାହା ଜଣାଯାଏ, ଜଣେ ଯୁବତୀ ତାର ଗର୍ଭାଶୟକୁ ଭଡା ଦେବାକୁ ଦୁଇ ଲକ୍ଷରୁ ତିନି ଲକ୍ଷ ଟଙ୍କା ନିଏ । ବିଦେଶୀ ଦମ୍ପତି ଏହି କାମ ପାଇଁ ଭାରତୀୟ ସରୋଗେଟ ମା' ମାନଙ୍କୁ ପଚିଶରୁ ତିରିଶି ଲକ୍ଷ ଟଙ୍କା ଦିଅନ୍ତି ଏବଂ ପିଲା ଜନ୍ମ ପର୍ଯ୍ୟନ୍ତ ଏମାନେ ସବୁ ଖର୍ଚ୍ଚ ବହନ କରନ୍ତି ।

ଭଡା ମାତୃତ୍ୱ ପାଇଁ ବି ଗଣମାଧ୍ୟମରେ ବିଜ୍ଞାପନ ଦିଆଯାଏ ଏବଂ ଅନେକ ସ୍ୱାମୀମାନେ ନିଜ ସ୍ତ୍ରୀମାନଙ୍କୁ ସରୋଗେଟ୍ ମା' ହୋଇ ଅର୍ଥ ଉପାର୍ଜନ କରିବାକୁ ବାଧ୍ୟ କରନ୍ତି ବୋଲି ଏକ ରିପୋର୍ଟ ମଧ୍ୟ ଏବେ ପ୍ରକାଶିତ ହୋଇଥିଲା । ସରୋଗେଟ୍ ମା'ମାନଙ୍କର ଆବିର୍ଭାବ ଯୋଗୁଁ ଅଳ୍ପ ଏବଂ ମଧ୍ୟବୟସ୍କ ଦମ୍ପତିଙ୍କ ଭିତରେ ଏବେ ସନ୍ତାନହୀନତା ସୃଷ୍ଟି ହୋଇଗଲାଣି । ଅନେକ ଆଉ ଏଇ ବୟସରେ ବାପା ମା ହେବାକୁ ଚାହୁଁନାହାନ୍ତି । ପିଲା ଜନ୍ମ ପାଇଁ ଯେତେବେଳେ ଭଡାରେ ମା'ମାନେ ମିଳୁଛନ୍ତି, ସେତେବେଳେ ନିଜ କ୍ୟାରିୟର ପ୍ରତି ନଜର ନ ଦେଇ ଅଳ୍ପ ବୟସରେ ନବଜନ୍ମିତ ପିଲାର ବାପା-ମା ହେବାର କିଛି ମାନେ ନାହିଁ - ଏହା ଅନେକଙ୍କ ଯୁକ୍ତି ।

ଅସଲ କଥା ହେଲା, ଆଧୁନିକ ଯୁବକ ଯୁବତୀଙ୍କର ନିଜ ଚାକିରି ଏବଂ କ୍ୟାରିୟର ପ୍ରତି କମିଟମେଣ୍ଟ୍ ଏବେ ବେଶି । ଯଦିଓ ନିଜର ପିଲାଟିଏ ପାଇଁ ସେମାନଙ୍କର ଇଚ୍ଛା ଥାଏ, ତଥାପି କ୍ୟାରିୟର ତିଆରି ଏବଂ ପିଲା ଜନ୍ମ ଏଇ ଦୁଇ ପ୍ରତିବଦ୍ଧତା ଭିତରେ ଦେଖା ଦେଉଥିବା ଦ୍ୱନ୍ଦ୍ୱର ମୁକ୍ତି ପାଇଁ ସେମାନେ ସରୋଗେଟ୍ ମା'ମାନଙ୍କ ମାଧ୍ୟମରେ ଡେରିରେ ପିଲା ଏବଂ ମାତୃତ୍ୱ ଚାହିଁଛନ୍ତି । ଭୟ ହୁଏ, ଜୈବିକ ଗର୍ଭାଶୟରେ ପରିବର୍ତ୍ତନ ଆସିବା ଯୋଗୁଁ କମ୍ ବୟସରେ ମା' ହେବାର ପରମ୍ପରା ନିଶ୍ଚୟ ଭାଙ୍ଗିଯିବ ଏବଂ ଅନେକ କ୍ଷେତ୍ରରେ ଏହା ଅବସର ବୟସ ପର୍ଯ୍ୟନ୍ତ ବି ବିଳମ୍ବିତ ହୋଇପାରେ ।

ଏସବୁ ସମସ୍ୟା ଭିତରେ ସରୋଗେଟ୍ ମା'ମାନଙ୍କ ପାଇଁ ଆହୁରି ଏକ ସମସ୍ୟା ହେଉଛି, ସାମାଜିକ ଅପବାଦ ବା ସୋସିଆଲ୍ ଷ୍ଟିଗ୍‌ମା । ସତ କଥା ହେଲା, ସରୋଗେଟ୍ ମା'ମାନଙ୍କର ଜୀବନ ମୋଟେ ସହଜ ନୁହେଁ । ଏମାନେ ଆସନ୍ନ ପ୍ରସବା

ମା’ ହେବା ବେଳେ ପଡୋଶୀ ଏବଂ ସମ୍ପର୍କୀୟମାନେ ପ୍ରଶ୍ନ କରନ୍ତି – ଇଏ କ’ଣ ? ଅବସ୍ଥା ତ ଏପରି ହୁଏ ଅନେକ ମା’ ଏବଂ ମୂଳ ଦମ୍ପତିମାନେ ତେଣୁ ପିଲା ଜନ୍ମ ପର୍ଯ୍ୟନ୍ତ ଲୁଚି ରହିବାକୁ ଉଚିତ ମଣନ୍ତି ।

ହଁ, ସରୋଗେଟ୍ ମାତୃତ୍ୱ ବର୍ତ୍ତମାନ ଭାରତରେ ଏକ ବଡ ସମସ୍ୟା । ଏ ପର୍ଯ୍ୟନ୍ତ ଏ ମାତୃତ୍ୱକୁ ସାଧାରଣରେ ଗ୍ରହଣ କରା ଯାଇପାରିନାହିଁ । ସବୁଠାରୁ ବଡ କଥା ହେଲା, ଭଡା ମାତୃତ୍ୱର ବ୍ୟବସାୟିକକରଣ ରୋକିବା ପାଇଁ ଏଠି ସେମିତି କିଛି ଆଇନ ଏପର୍ଯ୍ୟନ୍ତ ନାହିଁ । ସାମାଜିକ ଅପବାଦ ବିରୁଦ୍ଧରେ ସଂଗ୍ରାମ ପାଇଁ ସେମିତି କିଛି ସାମାଜିକ ସଚେତନତା ସୃଷ୍ଟି ବି ହୋଇନାହିଁ ଏବଂ ଅତ୍ୟଧିକ ମାତୃ ବାତ୍ସଲ୍ୟ ଯୋଗୁ ଯଦି ସରୋଗେଟ ମା’ଟି, ପିଲା ଜନ୍ମ ପରେ ସେ ପିଲାକୁ ମୂଳ ଦମ୍ପତିକୁ ଦେବାକୁ ମନା କରିଦିଏ, ତାର ସମାଧାନ ପାଇଁ ଏଠି ସେମିତି କିଛି ନିୟମ ନାହିଁ । ଯଦିଓ ଭାରତୀୟ ଭେଷଜ ଗବେଷଣା କାଉନ୍‌ସିଲ୍ ସରୋଗେଟ୍ ମା’ମାନଙ୍କ ପାଇଁ କିଛି ମାର୍ଗଦର୍ଶୀ ନୀତି ବା ଗାଇଡ୍‌ଲାଇନ୍ସ କରିଛନ୍ତି ତାହା ସରୋଗେଟ୍ ମାତୃତ୍ୱ ନିୟନ୍ତ୍ରଣ ଏବଂ ପରିଚାଳନା କରିବାକୁ ଯଥେଷ୍ଟ ନୁହେଁ ।

ଏ ଆଲୋଚନାର ଏ ଶେଷ କଥା – ଭଡାରେ ମାତୃତ୍ୱ ଯୋଗୁଁ ହୁଏତ ଭାରତର ପାରମ୍ପରିକ ପରିବାର ସମୟ କ୍ରମେ ବିଲୁପ୍ତ ହୋଇପାରେ ଏବଂ ପ୍ରଫେସନାଲ୍ ମା’ମାନେ ପିଲା ଜନ୍ମ ଏବଂ ଏହାର ପାଳନ କରିବାକୁ ସୁନ୍ଦର ଏକ ଲୋଭନୀୟ ବଜାରଟିଏ ସ୍ଥାପନ କରିପାରନ୍ତି ।

ଅବଶ୍ୟ, ଅକ୍ଷମ ଗର୍ଭାଶୟର ଅଧିକାରିଣୀ ଥିବା ବନ୍ଧ୍ୟା ସ୍ତ୍ରୀ ଲୋକଟିଏ ପାଇଁ ସରୋଗେଟ୍ ମା’ର ଆବଶ୍ୟକତା କିଛି ଭୁଲ୍ ବା ଦୋଷ ନୁହେଁ, କିନ୍ତୁ ଭଡାରେ ମାତୃତ୍ୱ ନେଇ ଏ କୁତ୍ସିତ ବ୍ୟବସାୟ ବନ୍ଦ ହେବା ଉଚିତ ।

ଭଡାମାତୃତ୍ୱକୁ ରୋକିବାକୁ ଖୁବ୍ ଶୀଘ୍ର ଏକ ଆଇନ ଆସିବାର ସୂଚନା ଆସିଲାଣି । ସମଲିଙ୍ଗି ଏବଂ ବିଦେଶୀ ଦମ୍ପତିଙ୍କ ପାଇଁ ବ୍ୟବସାୟିକ ସୂତ୍ରରେ ସରୋଗେଟ୍ ମା’ ନହେବା ନେଇ ଏଥିରେ ପ୍ରତିବନ୍ଧକ ରହୁଛି ।



# ଭାରତୀୟ ମଧ୍ୟବର୍ଗଙ୍କ କଥା

ଏଇ କିଛି ଦିନ ତଳେ ପ୍ରାୟ ଅନେକ ଦିନ ଧରି ଏକ ଦୈନିକ ଇଂରାଜୀ ଖବରକାଗଜରେ ଭାରତୀୟ ମଧ୍ୟବିତ୍ତ ଶ୍ରେଣୀ ଉପରେ ଏକ ବିତର୍କ ଚାଲିଥିଲା । ମଧ୍ୟବର୍ଗଙ୍କ ସ୍ୱରୂପ, ଚରିତ୍ର ଏବଂ ଭବିଷ୍ୟତ ନେଇ ଏଥିରେ ଚର୍ଚ୍ଚା ହେଉଥିଲା । ଏଇ ଚର୍ଚ୍ଚାରେ ସାମିଲ ଥିଲେ ଡାକ୍ତର, ଅଧ୍ୟାପକ, ପତ୍ରକାର, ଶ୍ରମିକ ସଂଗଠନର ନେତା ଏବଂ ଅନ୍ୟ ବୁଦ୍ଧିଜୀବୀ ।

ମଧ୍ୟବିତ୍ତଙ୍କ ସପକ୍ଷରେ ଯେତିକି ଯୁକ୍ତି ଥିଲା, ତା' ଠାରୁ ବିପକ୍ଷରେ ଯୁକ୍ତି ଥିଲା ବେଶି । ବିପକ୍ଷରେ ଏପରି କୁହାଯାଉଥିଲା – ଭାରତୀୟ ମଧ୍ୟବର୍ଗ ବାସ୍ତବରେ ଏ ଦେଶର ସମ୍ବିଧାନର ବିଫଳତା ପାଇଁ ଦାୟୀ । ପରିବେଶ ପ୍ରଦୂଷଣରୁ ଭ୍ରଷ୍ଟାଚାର ପର୍ଯ୍ୟନ୍ତ, ସବୁଥିରେ ଏମାନଙ୍କର ଭୂମିକା ବେଶି । ଏମାନେ ଏବେ ବିଶ୍ୱର ନଗ୍ନ ଉପଭୋକ୍ତାବାଦ ଭିତରେ ବନ୍ଦୀ ଏବଂ ଖାଲି ଏତିକି ନୁହେଁ, ଏମାନେ ଏମାନଙ୍କର ପବିତ୍ର ଆତ୍ମାକୁ କାହିଁ କେବେଠୁଁ ବିକ୍ରି କରିସାରିଲେଣି ।

ମଧ୍ୟବର୍ଗଙ୍କ ସମ୍ପର୍କରେ ଏପରି ପ୍ରତିକ୍ରିୟା ପଢ଼ିସାରିବା ପରେ ପ୍ରଶ୍ନ ଆସିଥିଲା, ଏ ତର୍କରେ ଭାଗ ନେଇଥିବା ସମସ୍ତ ଲେଖକ-ଲେଖିକା ତ ମଧ୍ୟବିତ୍ତ ଶ୍ରେଣୀର । ଏମାନେ ପରସ୍ପରକୁ ଏପରି ବିରୁଦ୍ଧ କରିପାରନ୍ତି କିପରି ଏବଂ ମଧ୍ୟବିତ୍ତ ଶ୍ରେଣୀର ଏଇ ଖବରକାଗଜ ଏହାକୁ କିପରି ବା ଏପରି ପ୍ରକାଶ କରିପାରେ ?

ଏ ପ୍ରଶ୍ନ ଅବଶ୍ୟ ସ୍ଥାନାନ୍ତରିତ ନୁହେଁ । କାରଣ ହେଉଛି, ଶ୍ରମିକ ସଂଗଠନର କୌଣସି ପତ୍ରିକାରେ ଶ୍ରମିକ ବିରୋଧୀ ଲେଖା ପ୍ରକାଶିତ ହୁଏ ନାହିଁ । ଏପରି ଲେଖା ପ୍ରକାଶ କରିବାକୁ କାହାର ସାହସ ବି ନଥାଏ । ଏମିତି ବି ହୁଏ କୌଣସି ଏକ ଗରିବ ଲୋକ ତା'ର ଦାରିଦ୍ର୍ୟ ପାଇଁ ସମୁଦାୟ ଗରିବ ଶ୍ରେଣୀକୁ କେବେ ଦୋଷ ଦିଏନାହିଁ । ତାର ଦୁଃଖ ପାଇଁ ସେ ହୁଏତ ଭଗବାନଙ୍କୁ ଦାୟୀ କରିପାରେ ।

ଠିକ୍ ଅନୁରୂପ ସ୍ୱଭାବ ବି ଅଛି ଧନୀମାନଙ୍କର । ଧନୀ ଲୋକଟିଏ ନିଜର କିଛି ଦୁର୍ଭାଗ୍ୟ ପାଇଁ ସମୁଦାୟ ଧନୀ ଶ୍ରେଣୀକୁ ଭୁଲ୍ ଦିଏନା ଏବଂ ୱାଲ୍ ଷ୍ଟ୍ରିଟ୍ ଜର୍ଣ୍ଣାଲ୍‌ରେ ବି ଧନୀକ ଶ୍ରେଣୀ ବିରୁଦ୍ଧରେ କୌଣସି ଲେଖା ବାହାରିବାକୁ ସୁଯୋଗ ଦିଆଯାଏ ନାହିଁ ।

ୱାଲ୍ ଷ୍ଟ୍ରିଟ୍ ଜର୍ଣ୍ଣାଲ୍ ହେଉଛି ଧନୀମାନଙ୍କର ମୁଖପତ୍ର । ସେମାନଙ୍କର ଅଭାବ ଏବଂ ବିଭବର ପତ୍ରିକା ।

ସୁତରାଂ ପୃଥିବୀ ସାରା ଥିବା ଧନୀ ଏବଂ ଗରିବ ଶ୍ରେଣୀ କେବେ ସେମାନଙ୍କର ଆତ୍ମସମୀକ୍ଷା କରନ୍ତି ନାହିଁ କିମ୍ବା ଆତ୍ମବିଶ୍ଳେଷଣରେ ଏମାନଙ୍କର ମୋଟେ ବିଶ୍ୱାସ ନଥାଏ ।

ଅଥଚ ମଧ୍ୟବିତ୍ତ ଶ୍ରେଣୀଙ୍କ କଥା ପୂରା ନିଆରା । ଏମାନେ ନିଜ ଶ୍ରେଣୀର ଭୁଲ୍ ପାଇଁ ସମାଲୋଚନା କରିବାରେ ଯେତିକି ଆଗ୍ରହୀ ଥାଆନ୍ତି ତା' ଠାରୁ ବେଶୀ ଆଗ୍ରହୀ ଥାଆନ୍ତି ନିଜକୁ ସଂଶୋଧନ କରିବାରେ ଏବଂ ଏଇ ସଂଶୋଧନରେ ଯେପରି ସମାଜରେ ସଂସ୍କାର ଆଣିହେବ ଏଥିପାଇଁ ସେମାନଙ୍କର ନଜର ବେଶି ଥାଏ ।

ଏହା ହିଁ ବୋଧେ ଭାରତୀୟ ମଧ୍ୟବିତ୍ତ ଶ୍ରେଣୀର ବୈଶିଷ୍ଟ୍ୟ । ଏକ ସ୍ୱତନ୍ତ୍ର ଢ଼ିଚରେ ଭାରତର ମଧ୍ୟବର୍ଗ ଏ ଦେଶର କଳା, ସଂସ୍କୃତି, ସାହିତ୍ୟ, ରାଜନୀତି ଏବଂ ଅର୍ଥନୈତିକ ପ୍ରକ୍ରିୟାକୁ ଅକ୍ଷୁଣ୍ଣ କରି ବାନ୍ଧି ରଖିବାରେ ଏ ପର୍ଯ୍ୟନ୍ତ ସକ୍ଷମ ହୋଇପାରିଛି ।

ତେବେ ଏ ଦେଶର ଏ ମଧ୍ୟବିତ୍ତ ଶ୍ରେଣୀ ନିଜେ ଭାରି ଅସ୍ଥିର, ଅନିଶ୍ଚିତ ଏବଂ ଫିକଲ୍ ବି । ବଡ ପାଟିରେ କହିପାରୁଥିବା ଏମାନେ ଏକ ପ୍ରେସର ଗ୍ରୁପ୍ । ରାଜୀବ ଗାନ୍ଧୀ, ଭି.ପି.ସିଂହ, ଅଟଳ ବିହାରୀ ବାଜପେୟୀଙ୍କୁ ରାଜନୈତିକ ପ୍ରାଧାନ୍ୟ ଏଇ ମଧ୍ୟବର୍ଗୀମାନେ ଖୁବ ଅଳ୍ପ ସମୟ ଭିତରେ ଦେଇ ଦେଇଥିଲେ । ଅଥଚ ଏଇ ନେତାଙ୍କ ସିଡି ଖସାଇ ଦେବାକୁ ଏମାନେ ବେଶି ସମୟ ନେଇ ନଥିଲେ ।

ଭାରତୀୟ ମଧ୍ୟବିତ୍ତମାନେ ବି ରାଜନୀତିରେ ଆଦର୍ଶର ବିଚ୍ୟୁତି ଦେଖିଲେ ଭାରି ପ୍ରତିକ୍ରିୟାଶୀଳ ହୋଇଯାଆନ୍ତି । ସମସ୍ତ ଧାରାବାହିକତାକୁ ଏମାନେ ପସନ୍ଦ କରୁଥିଲେ ମଧ୍ୟ ବେଳେବେଳେ ପରିବର୍ତ୍ତନର ସ୍ଲୋଗାନ ଦିଅନ୍ତି । ୧୯୭୭ ରେ ଇନ୍ଦିରାଙ୍କ ନିର୍ବାଚନ ହାରିଯିବାରେ ଏଇ ମଧ୍ୟବର୍ଗଙ୍କ ଦୃଷ୍ଟିରେ ଇମର୍ଜେନ୍‌ସୀ ଥିଲା ଏକ ଗଣତାନ୍ତ୍ରିକ ବିଚ୍ୟୁତି ।

ସଂକ୍ଷିପ୍ତରେ ଇଏ ମଧ୍ୟବିତ୍ତ ଶ୍ରେଣୀର ଚରିତ୍ର ସ୍ୱରୂପ । କିନ୍ତୁ କେଉଁ କେଉଁମାନେ ଏ ଶ୍ରେଣୀଭୁକ୍ତ ଏକଥା ଉଠିଲେ ଟିକିଏ ଦ୍ୱନ୍ଦ୍ୱ ଆସେ ।

ମଧ୍ୟବିତ୍ତ ଶ୍ରେଣୀ କହିଲେ ସାଧାରଣ ଭାବେ ଏପର୍ଯ୍ୟନ୍ତ କେବଳ ସରକାରୀ ଚାକିରିଆଙ୍କୁ ବୁଝା ଯାଉଥିଲା । ଏଥିରେ କିନ୍ତୁ ଏବେ ସାମିଲ ହୋଇଗଲେଣି ବିଭିନ୍ନ ପବ୍ଲିକ୍ ସେକ୍ଟରର ମ୍ୟାନେଜର କମ୍ପାନୀ ପ୍ରଫେସନାଲ, ଛୋଟ ବ୍ୟବସାୟୀ, ସରକାରୀ ଦପ୍ତରର ସଚିବ ଏବଂ ସର୍ଭିସ ସେକ୍ଟରର କର୍ମଚାରୀ । ଅବଶ୍ୟ କୌଣସି ଏକ କିରାଣୀଠାରୁ ଫାକ୍ଟରୀ ଶ୍ରମିକମାନଙ୍କୁ ମଧ୍ୟବିତ୍ତ ଶ୍ରେଣୀ କହିବାରେ ବର୍ତ୍ତମାନ କୁଣ୍ଠା ଅଛି ।

ଏ ସମ୍ପର୍କରେ ବମ୍ବେ ବିଶ୍ୱବିଦ୍ୟାଳୟର ସମାଜ ବିଜ୍ଞାନ ବିଭାଗ ତରଫରୁ ଏକ ସର୍ବେକ୍ଷଣ ହୋଇଥିଲା । ସର୍ବେକ୍ଷଣରେ ରିପୋର୍ଟ ଥିଲା ବେଶ ଆଗ୍ରହପୂର୍ଣ୍ଣ । ମାତ୍ର ବାରଶହ ଟଙ୍କା ପାଉଥିବା ଜଣେ ସ୍କୁଲ ଶିକ୍ଷକ ନିଜକୁ ଜଣେ ମଧ୍ୟବିତ୍ତ ବୋଲି କହିବାକୁ ଦାବି କରୁଥିବା ବେଳେ ଏହାଙ୍କଠାରୁ ତିନିଗୁଣ ଅଧିକ ରୋଜଗାର କରୁଥିବା କୌଣସି କାରଖାନାର ଶ୍ରମିକଟିଏ ନିଜକୁ କିନ୍ତୁ ମଧ୍ୟବିତ୍ତ କହିବାରେ ଅନିଚ୍ଛୁକ ଥିଲା । ସୁତରାଂ ମଧ୍ୟବିତ୍ତ ଶ୍ରେଣୀ ନିର୍ଣ୍ଣୟ କରିବାରେ ଆୟ ଏକମାତ୍ର ଆବଶ୍ୟକତା ନୁହେଁ । ଅନେକ ସମୟରେ ଏଇ ଇନକମ୍ ଫାକ୍ଟର ମଧ୍ୟ ବିଭ୍ରାନ୍ତିକର ହୋଇଥାଏ ।

ମଧ୍ୟବିତ୍ତ ଶ୍ରେଣୀ ଚିହ୍ନଟ କରିବା ପାଇଁ ପୃଥିବୀ ସାରା ଏବେ ସହଜ ମାନଦଣ୍ଡଟି ତିଆରି ହୋଇଯାଇଛି । ସେ ହେଉଛି ମଦ ଏବଂ ଶିକ୍ଷା ପଛରେ ଜଣେ ବ୍ୟକ୍ତି କରୁଥିବା ତା'ର ମାସିକ ଖର୍ଚ୍ଚ ।

ଏହା ଦେଖାଯାଏ, ଶିକ୍ଷା ପାଇଁ ମଧ୍ୟମ ବର୍ଗ ଅଧିକ ଖର୍ଚ୍ଚ କରନ୍ତି । ଧନୀ ଏବଂ ଗରିବ ଲୋକ କିନ୍ତୁ ମଦ ପାଇଁ ଖର୍ଚ୍ଚ କରନ୍ତି ବେଶି ।

ଭାରତରେ ବାସ୍ତବରେ କାହାକୁ ଆଧାର କରି ଏବଂ କେଉଁ ପାରାମିଟରକୁ ନେଇ ଏପରି ଶ୍ରେଣୀ ବିଭାଗ ହେଉଛି ତାହା ସ୍ପଷ୍ଟ ଭାବେ ଜଣାଯାଏ ନାହିଁ । ତଥାପି ଏଇ ତିନି ଶ୍ରେଣୀର ଲୋକସଂଖ୍ୟା କିନ୍ତୁ ସ୍ଥିର ହୋଇଯାଇଛି । ଏ ହୁଏତ ମଦ ଆଉ ଶିକ୍ଷା ଉପରେ ଖର୍ଚ୍ଚକୁ ଆଧାର କରି ହୋଇପାରେ କିମ୍ବା ପାରମ୍ପରିକ ଓ ସାମାଜିକ ସ୍ୱୀକୃତି ଏଥିପାଇଁ ଗଣନାକୁ ନିଆଯାଇପାରେ ।

ପରିସଂଖ୍ୟାନ ଏପରି ଆସେ, ଭାରତରେ ମଧ୍ୟବିତ୍ତ ଶ୍ରେଣୀରେ ଥିବା ଲୋକଙ୍କ

ସଂଖ୍ୟା ଅନ୍ୟୁନ ସତୁରି ପ୍ରତିଶତ ହେବା କଥା ଏବଂ ଅବଶିଷ୍ଟ ଜନସଂଖ୍ୟାର ପନ୍ଦର ପ୍ରତିଶତ ଧନୀ ଏବଂ ଅନ୍ୟ ପନ୍ଦର ପ୍ରତିଶତ ଗରିବ ହେଲେ ସମାଜ ବେଶ୍ ସନ୍ତୁଳିତ ହୋଇଥାଏ ।

ଦୁଃଖର କଥା ଯେ, ଭାରତୀୟ ସ୍ୱାଧୀନତାର ଏଠି ପ୍ରାୟ ସତୁରି ବର୍ଷ ପରେ ଏ ସଂଖ୍ୟା ଏ ଦେଶରେ ଏ ପର୍ଯ୍ୟନ୍ତ ହାସଲ ହୋଇପାରିଲା ନାହିଁ । କାରଣ ହୁଏତ ଏଇଆ ହୋଇପାରେ – ସ୍ୱାଧୀନତା ପରଠାରୁ ପ୍ରାୟ ଚାଳିଶ ବର୍ଷ ଧରି ଏଠି ଅନୁସୃତ ହୋଇଥିବା ସମାଜବାଦୀ ନୀତି ସେତେ ଆବଶ୍ୟକୀୟ ଚାକିରି ସୃଷ୍ଟି କରିପାରିଲାନି । କିମ୍ବା ସରକାରୀ ନୀତି ଅର୍ଥନୈତିକ ଅଭିବୃଦ୍ଧି ଆଣିବାରେ ସେତେ ସକ୍ଷମ ହେଲାନି । ଯେଉଁ କିଛି ଅଭିବୃଦ୍ଧି ହେଲା ସେଥିରେ ବେଶି ନିଯୁକ୍ତି ନଥିଲା ।

ବର୍ତ୍ତମାନ କିନ୍ତୁ ଅର୍ଥନୈତିକ ସଂସ୍କାରବାଦୀମାନେ ମତ ଦିଅନ୍ତି – ଆଗାମୀ ଦଶନ୍ଧିରେ ଭାରତରେ ଉଦାରବାଦୀ ଅର୍ଥନୀତି ଯୋଗୁଁ ଏଠି ମଧ୍ୟବିତ୍ତଙ୍କ ସଂଖ୍ୟା ବଢିବ । ସେମାନଙ୍କର କଠିନ ପରିଶ୍ରମ, ସରକାରୀ ଶିକ୍ଷା ନୀତି ଏବଂ ବ୍ୟକ୍ତିଗତ ଉନ୍ନତି ପାଇଁ ସରକାରୀ ପ୍ରୋତ୍ସାହନ ଏଇ ସଂଖ୍ୟା ବୃଦ୍ଧିରେ ହିଁ ସହାୟକ ହେବ ।

ଭାରତୀୟ ମଧ୍ୟବର୍ଗଙ୍କ ସ୍ୱରୂପ ଏବଂ ଚରିତ୍ର କଥା ଶୁଣିଲା ପରେ ଏଇ ଶ୍ରେଣୀର ଭବିଷ୍ୟତ କ'ଣ ବୋଲି ପ୍ରଶ୍ନ ଆସେ । ସତ କଥା ହେଲା, ମଧ୍ୟବିତ୍ତଙ୍କ ଭବିଷ୍ୟତ କହିବା କଷ୍ଟ । କାରଣ ଏମାନେ ଏକ ଅନିଶ୍ଚିତ ଗୋଷ୍ଠୀ । କିନ୍ତୁ ଭବିଷ୍ୟତରେ ଏମାନଙ୍କ ସ୍ୱଭାବ ଏବଂ ଚଳଣିରେ ଯେ ନୂତନତା ଆସିବ ଏବଂ ବିଶ୍ୱବ୍ୟାପୀ ପଶ୍ଚିମ ଧାରା ସହ ଏମାନେ ସାମିଲ ହୋଇଯିବେ, ଏହା ବିନା ଦ୍ୱିଧାରେ କହିହେବ ।

ସ୍ୱାଧୀନତା ପରଠାରୁ ଏ ପର୍ଯ୍ୟନ୍ତ ଭାରତୀୟ ମଧ୍ୟବିତ୍ତ ଶ୍ରେଣୀ ତା'ର ପାରମ୍ପରିକ ଭାରତୀୟ ସମାଜିକ ମୂଲ୍ୟବୋଧରେ ସମୟ କ୍ରମେ ପରିବର୍ତ୍ତନ ଆଣିସାରିଲାଣି । ଏହାର ଦୁଇଟି କାରଣ ଦିଆଯାଏ । ପ୍ରଥମଟି ହେଲା, ଗୋଟିଏ ଜାଗାରେ ବିଭିନ୍ନ ଧର୍ମ, ବିଭିନ୍ନ ଜାତି ଓ ଭାଷାର ଲୋକଙ୍କ ସହ କାମ କରିବାର ବାଧ୍ୟତା ଏବଂ ଦ୍ୱିତୀୟଟି ହେଲା ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ।

ନିଜର କର୍ମସ୍ଥଳୀରେ ତେଣୁ ଭାରତୀୟ ଏଇ ମଧ୍ୟବିତ୍ତ ଶ୍ରେଣୀ ବହୁ ପୂର୍ବରୁ ତା' ପାଇଁ ସାଧାରଣ ଆଚରଣ ବିଧିଟିଏ ତିଆରି କରିସାରିଛି । ସେଥିରେ ଜାତି, ଧର୍ମ ଏବଂ ଭାଷାର ଆଉ ପ୍ରତିବନ୍ଧକ ନାହିଁ । ଏମାନେ ସେଥିପାଇଁ କମନ୍ ସିଭିଲ୍ କୋଡ୍

କଥା କହନ୍ତି । ଆଗାମୀ ଦିନରେ ହୁଏତ ଏଇ ନାଗରିକ ସଂହିତା ପାଇଁ ଦାବି ତୀବ୍ରତର ହୋଇପାରେ ଏବଂ ଅଫିସମାନଙ୍କରେ ସମାନ ଆଚରଣ ନେଇ ବ୍ୟାପକ ଯୋଜନାଟି ହୁଏତ ଆପେ ଆପେ ପ୍ରସ୍ତୁତ ହୋଇପାରେ । ଏଥିରେ ସମାନ ଭାଷା କୋଡ୍ ବା ଏପରିକି ସମାନ ଡ୍ରେସ୍ କୋଡ୍ କଥା ଯେ ରହିବ ଏହା ଅସ୍ୱୀକାର କରିହେବନି ।

ହଁ, ଏଇଠି ଆଉ ଏକ ବିଷୟ କହିବାକୁ ଇଚ୍ଛା । ଗଣତନ୍ତ୍ର ଏବଂ ଭ୍ରଷ୍ଟାଚାର ନେଇ ଭାରତୀୟ ମଧ୍ୟବର୍ଗ ଭିତରେ ଏବେ କିଛି ସମସ୍ୟା ଅଛି । ଅନ୍ୟ କଥାରେ କହିଲେ ଏ ଶ୍ରେଣୀର ଇଏ ଏକ ପ୍ରକାର ଅବସେସନ୍ । ଯଦିଓ ବା ଏମାନେ ଗଣତାନ୍ତ୍ରିକ ପ୍ରକ୍ରିୟାକୁ ଭଲ ପାଆନ୍ତି, ନିର୍ବାଚନରେ ପ୍ରତିନିଧି ଚୟନକୁ ସ୍ୱାଗତ କରନ୍ତି, ତଥାପି କେମିତି କାହିଁକି ଏମାନେ ସହଜରେ ନିର୍ବାଚିତ ପ୍ରତିନିଧିଙ୍କ ପ୍ରତି ବିମୁଖ ହୋଇଯାଆନ୍ତି ଏବଂ ଭ୍ରଷ୍ଟାଚାରୀ ବ୍ୟକ୍ତି ତଥା ନେତାଙ୍କୁ ଏମାନେ ସହଜରେ ସହ୍ୟ ବି କରିଯାଆନ୍ତି । ଏହା ବୋଧେ ଭାରତୀୟ ମଧ୍ୟବର୍ଗଙ୍କ ବିରୋଧାଭାସ ।

କିନ୍ତୁ ଏ ବର୍ଗର ମାନସିକତା ଏବେ ଯାହା, ଏହା ନିଶ୍ଚିତ ଯେ ଗଣତାନ୍ତ୍ରିକ ରାଜନୀତିରୁ ଆରମ୍ଭ କରି ପ୍ରଶାସନ ପର୍ଯ୍ୟନ୍ତ ଯେଉଁଠି ପାରମ୍ପରିକ ଆଦର୍ଶ ଏବଂ ନୀତିର ବିଚ୍ୟୁତି ଦେଖିଲେ ଏଇ ଶ୍ରେଣୀ ଅତୀତରେ ବିରୁଦ୍ଧ କରିଥିଲା ସେଇ ବିରୁଦ୍ଧ ଆଗାମୀ ଦିନରେ ବି ବେଶ୍ ବ୍ୟାପକ ହୋଇଯିବ ଏବଂ ଏଥିପାଇଁ ନିଜ ବର୍ଗର ଲୋକଙ୍କୁ ସମାଲୋଚନା କରିବାରେ ଏମାନେ କୁଣ୍ଠା କରିବେନି ।

ହଁ, ଏଇଠି ଏ ଆଲୋଚନାର ଉପସଂହାର ମହାନ୍ ଦାର୍ଶନିକ ଆରିଷ୍ଟୋଟଲ୍‌ଙ୍କ ଭାଷାରେ କରିବାକୁ ଇଚ୍ଛା । ଆରିଷ୍ଟୋଟଲ୍‌ଙ୍କ ମତ ଥିଲା – ଯେଉଁ ସମାଜରେ ମଧ୍ୟବିତ୍ତ ଶ୍ରେଣୀ ଯେତେ ସୁସ୍ଥ, ଶୁଦ୍ଧ ଏବଂ ଦକ୍ଷ, ସେ ସମାଜ ସେତିକି କୁଶଳୀ, ସେତିକି ପରଫେକ୍ଟ ।

ସୁତରାଂ ମଧ୍ୟବିତ୍ତ ଶ୍ରେଣୀର ପ୍ରାଧାନ୍ୟରେ ସୁନ୍ଦର ଦିଶୁଥିବା ଏମିତି ଏକ ସମାଜକୁ ଆଜିଠୁଁ ଅପେକ୍ଷା କରାଯାଇପାରେ ।



# ଭୋକିଲା ସାଧାରଣତନ୍ତ୍ର

ଭାରତରେ ଖାଦ୍ୟ ନିରାପତ୍ତା ବିଲ୍ ଉପରେ ଯେତେବେଳେ ଭାରତୀୟ ସଂସଦରେ ବିତର୍କ ଚାଲୁଥିଲା, ଉତ୍ତର ପ୍ରଦେଶରେ କେଉଁ ଏକ ଗାଁରେ ଛୋଟ ପିଲାମାନେ ଭୋକରେ ମାଟି ଖାଉଥିବା ସମ୍ବାଦ ଆସିଥିଲା । ଏଇଆ ବି ହୋଇପାରେ, ଆଜି ମଧ୍ୟ କେଉଁଠି ନା କେଉଁଠି ନିରୀହ ଆଦିବାସୀମାନେ ଭୋକରେ ପେଟ ମାରୁଥିବା ନିଜ ପିଲାର ପେଟ ବ୍ୟାଥା ଦୂର ପାଇଁ ପିଲାଙ୍କ ପେଟରେ ତତଲା ଲୁହାର ଚେଙ୍କ ଦେଉଥିବେ । ଭୋକରେ କାନ୍ଦି କାନ୍ଦି ପିଲାଟି ବି କେଉଁଠି ଶୋଇଯାଉଥିବ ଏବଂ ଏଇଟା ବି ହୋଇପାରେ ଆମ୍ବ କୋଇଲିର ଜାଉ ଖାଇ ଜୀବନ ବଞ୍ଚୁଥିବା ଆଦିବାସୀମାନଙ୍କୁ ମାଓବାଦୀମାନେ ମାଓବାଦୀ ହୋଇଯିବାକୁ କେଉଁଠି ପ୍ରବର୍ତ୍ତାଉ ଥିବେ । ଏକଥା କାହାଣୀ ପରି ଲଗୁଥିଲେ ମଧ୍ୟ ସତ । ଏ ହେଉଛି ସାଧାରଣତନ୍ତ୍ର ଭାରତର ଭଙ୍ଗା ଚିତ୍ର ।

କିଛି ତଥ୍ୟକୁ ଏଠି ବାରମ୍ବାର କୁହାଯାଏ । ଆଦି ମଧ୍ୟ ସେଇ ତଥ୍ୟର ପୁନଃ ଉପସ୍ଥାପନା କରାଯାଇପାରେ ।

ଭାରତ ବର୍ଷରେ ଅର୍ଦ୍ଧାଧିକ ପିଲା ଏବେ ବି ପୁଷ୍ଟିହୀନ । ସେମାନେ ହୃଷ୍ଟପୃଷ୍ଟ ନୁହନ୍ତି । ସୁଷମ ଖାଦ୍ୟ ଅଭାବରୁ ସେମାନଙ୍କର ଦେହ ଏବଂ ମସ୍ତିଷ୍କର ବିକାଶ ହୋଇପାରେ ନାହିଁ ।

ଏଠି ଭୋକିଲା ଗରିବଙ୍କ ସଂଖ୍ୟା ଉପସାହାରା ଆଫ୍ରିକୀୟ ଦେଶ ମାନଙ୍କରେ ଥିବା ଗରିବଙ୍କ ଠାରୁ ଅଧିକ । ଉପସାହାରା ଆଫ୍ରିକୀୟ ଦେଶକୁ ପୃଥିବୀର ଦରିଦ୍ରତମ ଅଞ୍ଚଳ ଭାବେ ଗଣାଯାଏ ।

ବିଶ୍ୱ ଖାଦ୍ୟ ଯୋଜନାରେ ଏ ତଥ୍ୟ ମଧ୍ୟ ଆସେ ଯେ, ଭାରତରେ ଭୋକିଲା ଲୋକଙ୍କ ସଂଖ୍ୟା ପ୍ରାୟ ତେଇଶି କୋଟି । ପୃଥିବୀରେ ଥିବା ସମସ୍ତ ଗରିବ ଲୋକଙ୍କ ସଂଖ୍ୟାର ଏହା ଏକ ଚତୁର୍ଥାଂଶ । ଜାତିସଂଘର ସଦ୍ୟତମ ରିପୋର୍ଟ ଅନୁସାରେ, ବିଶ୍ୱ

ଖାଦ୍ୟ ସୂଚାଙ୍କ ବା ଓ୍ୱାର୍ଲ୍ଡ ହଙ୍ଗର ଇଣ୍ଡେକ୍ସରେ ଭାରତର ନାଁ ପହଞ୍ଚିଲାଣି ସତାନବେରେ । ଭାରତରେ ଶିଶୁ ମୃତ୍ୟୁହାର ବେଶି । ମାତୃ ମୃତ୍ୟୁହାର ବି ବେଶି । ପ୍ରାୟ ଚାରି ଜଣ ଶିଶୁଙ୍କ ଭିତରେ ତିନି ଜଣ ଶିଶୁ କମ୍ ଓଜନ ହୋଇ ଜନ୍ମ ହୋଇଥାନ୍ତି । ଗର୍ଭବତୀ ମା' ମାନଙ୍କୁ ଏଠି ପୃଷ୍ଟିକର ଖାଦ୍ୟ ମିଳେନି । ଅନେକ ମା' ବି ଅନାହାରରେ ଗୁହନ୍ତି । ମା' ରୁ ଛୁଆ ପର୍ଯ୍ୟନ୍ତ ଭୋକ ଏଠି ଚକ୍ର ଗତିରେ ଚାଲେ ।

ଯାହା ଜଣାଯାଏ, ଏମିତି ଏକ ତଥ୍ୟ ଶୁଣି ସାରିବା ପରେ ଅନେକ ଏଠି ଆଉ ବେଶି ବିଚଳିତ ହେଉନାହାନ୍ତି । ବରଂ କାନ୍ଧକୁ ସଂକୁଚିତ କରି ଏକ ଦୀର୍ଘ ଶ୍ୱାସ ଦେଇ କହିଦିଅନ୍ତି – ଏ ସଂପର୍କରେ କ'ଣ କିଛି କରି ହେବନି ?

ସତରେ କ'ଣ କିଛି କରି ହେବନି ? ଏ ପ୍ରଶ୍ନ ମଧ୍ୟ ଏ ଲେଖକର ଆସେ । ଏକବିଂଶ ଶତାବ୍ଦୀରେ ଏକ ବୃହତ୍ ଶକ୍ତି ହେବାର ସ୍ୱପ୍ନ ଦେଖୁଥିବା ଭାରତ ବର୍ଷ ଯେ ଏଇ ଲକ୍ଷ୍ୟଠାରୁ ଏବେ ବହୁ ଦୂରରେ ଅଛି, ଏହା ବୋଧେ ସତ ।

ଆଧୁନିକ ଭାରତରେ ଭୋକିଲାର ଚେହେରା ଏବେ ନିଆରା । ପଶି ଯାଇଥିବା ପେଟ ଏବଂ ହାଡୁଆ ମୁହଁ ଦେଖି ଜଣକୁ ଆଉ ଭୋକିଲା ବୋଲି କହି ହେଉନାହିଁ । ପ୍ରାଚୁର୍ଯ୍ୟ ଭିତରେ ରହୁଥିଲେ ବି ଅନେକ ନିଜର ଶୁଖିଲା ପେଟ ଏବଂ ହାଡୁଆ ମୁହଁକୁ ନିଜ ଗ୍ଲାମୋରର ଉପାଦାନ ବୋଲି ଭାବନ୍ତି । ପ୍ରକୃତରେ ଭୋକିଲା ସେଇମାନଙ୍କୁ ବୁଝାଏ, ଯେଉଁମାନେ ଦିନସାରା କଠିନ ହାଡଭଙ୍ଗା ପରିଶ୍ରମ କରି ଦି' ବେଳା ଖାଇବାକୁ ପାଆନ୍ତି ନାହିଁ । ପୁଷ୍ଟିକର ଖାଦ୍ୟ ଏମାନଙ୍କ ପାଇଁ ସ୍ୱପ୍ନ ହୋଇଥାଏ । ଉପାସରେ ରହିବା ଅପେକ୍ଷା ମାଟି ଆଉ କେନ୍ଦୁ ଫଳ ଖାଇ ଏମାନେ ଜୀବନ ବିତାନ୍ତି ।

ବାସ୍ତବରେ ଏ ଦେଶରେ ପ୍ରସଙ୍ଗ ଏବେ ଅନାହାର ମୃତ୍ୟୁ ନୁହେଁ । ବରଂ ପ୍ରସଙ୍ଗ ହେଉଛି, ଭାରତରେ କୋଟି କୋଟି ଲୋକ ସେମାନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବି ଅନାହାରରେ ବଞ୍ଚନ୍ତି ଏବଂ ଏ ସଂପର୍କରେ ରିପୋର୍ଟ ଆସିଲେ ଭାରତୀୟ ପ୍ରଶାସନ ଏହାକୁ ପ୍ରତ୍ୟାଖ୍ୟାନ କରିଚାଲେ । କହେ ଏ ସବୁ ଡାହା ମିଛ । ଭୋକ ଆଉ ଏବେ ଇସ୍ୟୁ ନୁହେଁ ।

ଗତ ପ୍ରାୟ ଦୁଇ ଦଶନ୍ଧି ଧରି ଭାରତରେ ଗରିବଙ୍କ ସଂଖ୍ୟା କେତେ ତା'ର ଗଣନା ଚାଲିଛି । କିଛି ଅର୍ଥଶାସ୍ତ୍ରୀ, ଯୋଜନା ପ୍ରଣୟନକର୍ତ୍ତା ଏବଂ ବୁଦ୍ଧିଜୀବୀ ଗରିବ ଆକଳନରେ ବ୍ୟସ୍ତ । ଗରିବଙ୍କ ସଂଖ୍ୟା ଠିକ୍ ହୋଇଗଲେ ଏମାନଙ୍କ ପାଇଁ ସଠିକ୍

ଯୋଜନା ତିଆରି ହେବ, ଏହା ହେଉଛି ଲକ୍ଷ୍ୟ । କିନ୍ତୁ ଦୁର୍ଭାଗ୍ୟ ଯେ, ଭାରତରେ ଦାରିଦ୍ର୍ୟ ସୀମାରେଖା ତଳେ କେତେ ଲୋକ ଅଛନ୍ତି ତା'ର ନିର୍ଦ୍ଦିଷ୍ଟ ହିସାବ ମିଳୁନାହିଁ । ଯଦିଓ ୧୯୯୨ ମସିହାରୁ ଗରିବ ଗଣନା ଆରମ୍ଭ ହେଲାଣି । ବିଶେଷଜ୍ଞ କମିଟି କେତେବେଳେ ଗରିବଙ୍କ ସଂଖ୍ୟା ୨୭ ପ୍ରତିଶତ କହେ ତ କେତେବେଳେ ଏହା ୩୭ ପ୍ରତିଶତ । ଅନେକ କମିଟି ରିପୋର୍ଟରେ ଭାରତରେ ଭୋକିଲାଙ୍କ ସଂଖ୍ୟା ପଚାଶ ପ୍ରତିଶତ । ତେନ୍ଦୁଲକର କିନ୍ତୁ ଏଇ ସଂଖ୍ୟାକୁ ୩୭ ପ୍ରତିଶତରେ ସୀମିତ ରଖନ୍ତି ।

କେଉଁ ଭିତ୍ତିରେ ଭାରତରେ ଗରିବ ଗଣନା କରାଯାଏ ଏବଂ ଏହାର ପାରାମିଟର କ'ଣ ଏ ସଂପର୍କରେ ଆଲୋଚନା କରିବା ଏ ଲେଖକର ଏଠି ଇଚ୍ଛା ନୁହେଁ । ତେବେ ଏଇ ସବୁ ରିପୋର୍ଟରୁ ଯାହା ସ୍ପଷ୍ଟ ହେଉଛି, ଏହା ହେଉଛି, ଭାରତରେ ଗରିବଙ୍କ ସଂଖ୍ୟା ପ୍ରାୟ ୪୦ କୋଟିରୁ କମ୍ ନୁହେଁ ।

ଭାରତୀୟ ସାଧାରଣତନ୍ତ୍ର ପ୍ରତିଷ୍ଠା ହେବାର ୬୦ ବର୍ଷ ପରେ ବି ଏ ଦେଶର କୋଟି କୋଟି ଲୋକଙ୍କୁ ପ୍ରତିଦିନ ଖାଦ୍ୟ ପାଇଁ କାମ ଖୋଜିବାକୁ ପଡେ । ସମସ୍ତ ସରକାରୀ ଯୋଜନାକୁ ସାକାର କରିବାକୁ ଯାଇ ବିସ୍ଥାପିତ ହୋଇଥିବା ଲକ୍ଷ ଲକ୍ଷ ଲୋକଙ୍କୁ ପ୍ରତିଦିନ କାମ ପାଇଁ ରାସ୍ତା କଡରେ ଛିଡା ହେବାକୁ ହୁଏ । ଏଠି ଗୋତି ଶ୍ରମିକ ଅଛନ୍ତି । ଋଣ ଶୁଝିବାକୁ ଯାଇ ମାଗଣାରେ କାମ କରୁଥିବା ଲୋକ ଏଠି ଅନେକ । ସ୍ପଷ୍ଟ କହିଲେ କାମ ଖୋଜି କାମ ପାଉନଥିବା ଲୋକ କମ୍, କାମ କରି ଆବଶ୍ୟକୀୟ ଉପାର୍ଜନ କରୁନଥିବା ଲୋକଙ୍କ ସଂଖ୍ୟା ବି ବେଶି । ଦିନ ଶେଷରେ ଏମାନେ ତେଣୁ ଉପବାସ ରହିବା ସ୍ୱାଭାବିକ ।

ଇତିହାସ କହେ ଦୁର୍ଭିକ୍ଷ ଆସିଲେ ଲୋକେ ଏଠି ଭୋକରେ ରହୁଥିଲେ । ଅନାହାରରେ ମରୁଥିଲେ । ସାଧାରଣତନ୍ତ୍ର ଭାରତରେ ଏବେ ବି ସେଇ ଅବସ୍ଥା ଅଛି । ଲୋକେ ଅନାହାରରେ ରହନ୍ତି । ହୁଏତ ଏତେ ମରୁ ନାହାନ୍ତି ।

ଭାରତରେ ଭୋକିଲାଙ୍କ ସଂଖ୍ୟା ବୃଦ୍ଧି ନେଇ ଅନ୍ୟ କେତେକ କାରଣର ଅବତାରଣା କରାଯାଏ । ପ୍ରଥମ କାରଣ ହେଲା, ଗତ କିଛି ବର୍ଷଧରି ଦେଶରେ ଲୋକ ପିଛା କୃଷି ଉତ୍ପାଦନ ସମତା ରଖିପାରୁନି । ଜଳବାୟୁ ପରିବର୍ତ୍ତନ, ବୃଷ୍ଟିପାତରେ ଅନିୟମିତତା, ଦୁର୍ଭିକ୍ଷ ଏବଂ ମରୁଡି ଏଥିପାଇଁ ଦାୟୀ । କୃଷିଜାତ ପଦାର୍ଥର କମ୍ ଉତ୍ପାଦନ ଏବଂ ଖାଦ୍ୟ ଦରବୃଦ୍ଧି ଏ ଖାଲି ଭାରତର ଅବସ୍ଥା ନୁହେଁ । ପୃଥିବୀସାରା ବି ଖାଦ୍ୟ ଉତ୍ପାଦନ କମିଛି । ଖାଦ୍ୟ ଦର ବଢିଛି ।

ଦ୍ୱିତୀୟ କାରଣ ହେଲା, ଭାରତରେ ମଧ୍ୟବର୍ଗୀଙ୍କ ସଂଖ୍ୟା ଅହେତୁକ ଭାବେ ବୃଦ୍ଧି ପାଇଛି ।ଏମାନଙ୍କର କ୍ରୟ ଶକ୍ତି ଏବେ ଅଧିକ । ଏମାନେ ଏବେ ଭଲ ଖାଉଛନ୍ତି । ଅଧିକ ଖାଉଛନ୍ତି ଏବଂ ବେଶି ନଷ୍ଟ ବି କରୁଛନ୍ତି ଏବଂ ତୃତୀୟ କାରଣ ହେଲା, ମୁକ୍ତ ବଜାର ଅର୍ଥନୀତିକୁ ଭାରତ ବର୍ଷ ଆପଣାଇ ନେବା ପରେ ଏହା ବିଶ୍ୱାସ ଥିଲା ଯେ ଏଠି ଅଧିକ କୃଷି ଉତ୍ପାଦନ ପାଇଁ ନୂଆ ନୂଆ କୌଶଳ ପ୍ରୟୋଗ ହେବ । କୃଷିରେ ବିଦେଶୀ ପୁଞ୍ଜି ଲାଗିବ । ଜେନେଟିକ୍ ଖାଦ୍ୟ ଶସ୍ୟର ଉତ୍ପାଦନ ହେବ । ଚାହିଦା ଠାରୁ ଉତ୍ପାଦନ ଅଧିକ ହେବ । ଏହା କିନ୍ତୁ ବାସ୍ତବରେ ହେଉନାହିଁ । ଖାଦ୍ୟଭାବ ହିଁ ଭୋକିଲାଙ୍କ ସଂଖ୍ୟା ବଢାଉଛି ଏବଂ ଭୋକ ଦାଉରୁ ମୁକ୍ତି ପାଇଁ ପାଣି ବୋତଲର ଦାମ୍ ଠାରୁ କମ୍ ଦରରେ ବି ମା' ତାର ଛୁଆକୁ ଅନ୍ୟକୁ ବିକ୍ରି କରିଦେବାକୁ ବାଧ୍ୟ ହେଉଛି ।

ଏକ ଭୋକ ମୁକ୍ତ ଭାରତ ଗଠନ ପାଇଁ 'ଖାଇବାର ନ୍ୟାୟ କଥା' ଉଠିଲାଣି । ଅନ୍ୟ କଥାରେ କହିଲେ, 'ଜଷ୍ଟିସ୍ ଅଫ୍ ଇଟିଂ' । ଏକ ସୁନ୍ଦର ବିକଳ୍ପ ପୃଥିବୀର ଗଠନ ନେଇ ଏହାର ପ୍ରଥମ ଆବଶ୍ୟକତା ସଂପର୍କରେ କହିବା ବେଳେ ନୋବେଲ ବିଜେତା ପାବ୍ଲୋ ନିରୋଦା ପ୍ରଥମେ ହିଁ ଏଇ ଖାଇବାର ନ୍ୟାୟ କଥା କହିଥିଲେ ଏବଂ ଗତ ଦୁଇ ହଜାର ଏକ ମସିହାରେ ଖାଦ୍ୟ ଅଧିକାର ନେଇ ଏକ ମକଦ୍ଦମାର ବିଚାର କଲାବେଳେ ଭାରତରେ ଏକ ସ୍ୱଷ୍ଟ ଖାଦ୍ୟ ନୀତି ପାଇଁ ମାନ୍ୟବର ସୁପ୍ରିମକୋର୍ଟ ଭାରତ ସରକାରଙ୍କୁ ନିର୍ଦ୍ଦେଶ ମଧ୍ୟ ଦେଇଥିଲେ ।

ଭୋକିଲାଙ୍କ ଭୋକ ମେଣ୍ଟାଇବା ପାଇଁ ଏବଂ ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ଯେ ଏଠି କିଛି ସରକାରୀ ଯୋଜନା ନାହିଁ, ତାହା ଠିକ୍ ନୁହେଁ । ଏଠି କିଛି ସାର୍ବଜନୀନ ଯୋଜନା ଅଛି ଏବଂ କିଛି ଲକ୍ଷ୍ୟଭିତ୍ତିକ ଯୋଜନା ବି ରହିଛି । ମହାତ୍ମା ଗାନ୍ଧୀ ନିଶ୍ଚିତ ନିଯୁକ୍ତି ଯୋଜନାରେ ପ୍ରତ୍ୟେକ ଦରିଦ୍ର ପରିବାର ଜଣେ ସକ୍ଷମ ସାବାଳକକୁ ଶହେ ଦିନର କାମ ଯୋଗାଇ ଦିଆଯିବାର ବ୍ୟବସ୍ଥା ଅଛି । ଇନ୍ଦିରା ଆବାସ ଯୋଜନାରେ ଗରିବଙ୍କୁ ଘର ମିଳିବା ଯୋଜନା ରହିଛି । ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଗରିବଙ୍କୁ ରିହାତି ଦରରେ ଖାଦ୍ୟ ଶସ୍ୟ ଦେବାରେ ଦୋକାନ ଅଛି ଏବଂ ସବୁଠାରୁ ବଡ କଥା ହେଲା, ଭାରତରେ ପ୍ରାୟ ଚଉଦ୍ କୋଟି ସ୍କୁଲ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଯୋଜନାରେ ରନ୍ଧା ଖାଦ୍ୟ ଦିଆଯାଉଛି । ଏପରି ଯୋଜନା ପୃଥିବୀରେ ସର୍ବବୃହତ୍ ଯୋଜନା ।

ପ୍ରଶ୍ନ କିନ୍ତୁ ଆସେ, ଏତେ ସାମାଜିକ ଯୋଜନା ସତ୍ତ୍ୱେ ଭାରତରେ ଭୋକିଲାଙ୍କ

ସଂଖ୍ୟା କମୁନାହିଁ କାହିଁକି ? ଏହାର ଯେଉଁ ଏକମାତ୍ର କାରଣ ଦିଆଯାଏ, ସେ ହେଉଛି ଦୁର୍ନୀତି ଦୂରୀକରଣ ଯୋଜନା ପାଇଁ ଉଦ୍ଦିଷ୍ଟ ଥିବା ଦୁର୍ନୀତି ଭରା ଭିତ୍ତିଭୂମି । ମଧ୍ୟାହ୍ନ ଭୋଜନ ଯୋଜନା ଠାରୁ ଆରମ୍ଭ କରି ଇନ୍ଦିରା ଆବାସ ଯୋଜନା ପର୍ଯ୍ୟନ୍ତ ସବୁ ଯୋଜନାରୁ ଲକ୍ଷ୍ୟକୁ କିଛି ଦୁର୍ନୀତିଗ୍ରସ୍ତ ବାବୁ ଏବଂ ରାଜନେତାମାନେ ଭଣ୍ଡୁର କରି ଦେଉଛନ୍ତି ।

ଏବେ ପୁଣି ନୂଆ ଆଇନ ଆସିଛି ଖାଦ୍ୟ ନିରାପତ୍ତା ଆଇନ । ଭୋକିଲାଙ୍କୁ ଖାଦ୍ୟ ଯୋଗାଇ ଦେବା ଏଣିକି ପ୍ରତି ସରକାରଙ୍କର ବାଧ୍ୟ କର୍ତ୍ତବ୍ୟ । ଖାଦ୍ୟ ଯୋଗାଇ ନପାରିଲେ ଭୋକିଲାଙ୍କୁ ଭତ୍ତା ମିଳିବ ।

ଖାଦ୍ୟ ନିରାପତ୍ତା ଯୋଜନା ସଂପ୍ରତି ଏକ ଐତିହାସିକ ନିଷ୍ପତ୍ତି । ବେଳେବେଳେ ନିଷ୍ପତ୍ତିଟିଏ ବି ଇତିହାସର ମୋଡ ବଦଳାଇଦିଏ ।

ସୁତରାଂ ଭୋକିଲାଙ୍କ କଥା କହିବାକୁ ଭାରତୀୟ ଗଣମାଧ୍ୟମ ଏଣିକି ଅଧିକ ସମୟ ଦେବା ଉଚିତ । କାରଣ ଭୋକରେ ମାଟି ଖାଉଥିବା ପିଲାଙ୍କ ପାଇଁ ଏଠି ଗଣମାଧ୍ୟମକୁ ଯେତିକି ସମୟ ମିଳୁନାହିଁ, ବଡ ରାଜନେତାଙ୍କ ବ୍ୟକ୍ତିଗତ ଜୀବନ କଥା କହିବାକୁ ତା'ଠାରୁ ଅଧିକ ସମୟ ମିଳୁଛି ।

ସାଧାରଣତନ୍ତ୍ର ତିଆରି କରିବା ଯେତିକି କଷ୍ଟ ଏହାକୁ ଧରି ରଖିବା ବି ସେତିକି କଷ୍ଟ । ଏବେଠୁ ସଜାଗ ନ ହେଲେ, କୋଟି କୋଟି ଭୋକିଲାଙ୍କ ଚାପରେ ହୁଏତ ଏ ସାଧାରଣତନ୍ତ୍ର ଭାଙ୍ଗିଯାଇପାରେ । ଭୋକିଲା ଲୋକ ପାପ କରିବା ସ୍ୱାଭାବିକ ।



# ବିବାହ ଆଡ଼ମ୍ବର

ଏ ଲେଖକକୁ ଏବେ ଦୁଇଟି ଦୃଶ୍ୟ ପ୍ରଭାବିତ କରିଥିଲା । ପ୍ରଥମ ଦୃଶ୍ୟଟି ଥିଲା ଟିଭିରେ ପ୍ରସାରିତ ଏକ ଦୃଶ୍ୟ । ଏହା ଓଡିଶାର ଘଟଣା । କୌଣସି ଏକ ବିବାହ ଭୋଜିର କର୍ତ୍ତାମାନେ କିପରି ଭୋଜିରେ ବଳି ପଡିଥିବା ହଣ୍ଡା ହଣ୍ଡା ଡାଲି, ଭାତ ଏପରିକି ମାଂସ ତରକାରୀକୁ କୌଣସି ଏକ ନଈ ପଠାରେ ପୋତି ଦେଉଥିଲେ । ସଂଭବତଃ କାରଣ ଏଇଆ ଥିଲା, ଆବଶ୍ୟକତା ଠାରୁ ବେଶି ଖାଦ୍ୟ ତିଆରି ହୋଇଥିଲା କିମ୍ବା ଗୃହକର୍ତ୍ତା କମ୍ ରୋଷେଇ କରି ଖାଇବାକୁ  ଦେଇ ନ ପାରିବାର ଅପବାଦ ନେବାକୁ ଚାହିଁନଥିଲେ । ଭାରତରେ ଯେ ଖାଦ୍ୟ ଦ୍ରବ୍ୟର ଦରବୃଦ୍ଧି ଘଟିଛି ଏଥିରୁ କାହିଁ ମନେ ହେଉନଥିଲା ।

ଦ୍ୱିତୀୟ ଦୃଶ୍ୟ ଥିଲା ଏ ଲେଖକର ନିଜସ୍ୱ ଅନୁଭୂତି । ସଂପ୍ରତି ଏକ ବିବାହ ଉତ୍ସବରେ ଭୋଜିଖାଇଲା ବେଳେ ଭୋଜିକର୍ତ୍ତାମାନେ ଜଣେ ଲୋକଙ୍କୁ ନିର୍ଘୃମ ପିଟୁଥିଲେ । ତା' ହାତରୁ ଖାଦ୍ୟ ପ୍ଲେଟ ଛଡାଇବାକୁ ଚେଷ୍ଟା ହେଉଥିଲେ ବି ସେ ଛାଡୁ ନଥିଲା । ଜଣାଗଲା, ସେ ନିମନ୍ତିତ ଅତିଥି ନଥିଲା କିମ୍ବା କୌଣସି ଉପହାର ନେଇ ସେ ଆସିନଥିଲା । ବାହାଘରର ଆଡମ୍ବର, ଭୋଜି ବାସ୍ନା ଏବଂ ନିଜର ଭୋକ ସମ୍ଭାଳି ନପାରି ସେ ଖାଇବାକୁ ଆସିଯାଇଥିଲା ବୋଲି ସଫେଇ ଦେଉଥିଲା ।

ଭାରତରେ ବିବାହ ଉତ୍ସବ ଖୁବ ଆଡମ୍ବରରେ ପାଳିତ ହୁଏ । ବାଣ, ରୋଷଣୀ, ଭୋଜି, ସାଜସଜାରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୁଏ । ଗରିବ ଲୋକଟି ମଧ୍ୟ ନିଜ ଆତ୍ମୀୟର ବିବାହ ଉତ୍ସବରେ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରେ । ଅନେକ ସମୟରେ ଏପରି ଖର୍ଚ୍ଚ ବି ବାଧ୍ୟତା ହୋଇଥାଏ । ବିବାହର ସାମାଜିକ ସ୍ୱୀକୃତି ପାଇଁ ଏହା ଦରକାର ହୁଏ ।

ଧନୀ ଲୋକଙ୍କ ପାଇଁ ଆଡମ୍ବରପୂର୍ଣ୍ଣ ବିବାହ ଏକ ପ୍ରତିଷ୍ଠାର ପ୍ରଶ୍ନ । ନିଜର ସାମାଜିକ ସ୍ଥିତି ବଜାୟ ରଖିବାକୁ ଏହା ଏକ ମାଧ୍ୟମ । ଧନ ତଥା ସଂପତ୍ତି ପ୍ରଦର୍ଶନ ନିମନ୍ତେ ବିବାହ ଉତ୍ସବ ହିଁ ଏକ ସୁଯୋଗ । ବାହାଘର ଧୁମ୍‌ଧାମ୍ ଦେଖିଲେ ପରିବାର ଲୋକ ଖୁସି ହୁଅନ୍ତି; ବନ୍ଧୁ ବାନ୍ଧବମାନେ ପ୍ରଶଂସା କରନ୍ତି । ପଡୋଶୀ ଶତ୍ରୁ ନରମି ଯାଏ । ନିଜର ସଂଭ୍ରାନ୍ତପଣ ଜାହିର ପାଇଁ ଯଦି ବିବାହ ଉତ୍ସବରେ ଅଧିକ ଖର୍ଚ୍ଚ ହୋଇଗଲା ତେବେ କ୍ଷତି କଣ ? ଏପରି ଦମ୍ଭୋକ୍ତି ହୁଏ ।

ଭାରତରେ ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବ ଏଠି ଏକ ସଂସ୍କୃତିରେ ପରିଣତ ହୋଇଗଲାଣି । ବିବାହ ଅନୁଷ୍ଠାନର ଯେପରି ଏହା ଏକ ଅଂଶ । ବର୍ତ୍ତମାନ ଏହା ଯେପରି ଏକ ସାମାଜିକ ଚାହିଦା । କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀ କିମ୍ବା ପଦବୀଧାରୀ ବ୍ୟକ୍ତିମାନଙ୍କର ବାହାଘରର ଧୁମ୍‌ଧାମ୍ ଆଉ ଏକଚାଟିଆ ଘଟଣା ନୁହେଁ । କିନ୍ତୁ ବିଡମ୍ବନା ହେଲା, ଏପରି ଏକ ବିପଦପୂର୍ଣ୍ଣ ସଂସ୍କୃତି ଏବଂ ଧାରାକୁ ଭାରତୀୟ ସମାଜ ପ୍ରତ୍ୟାଖ୍ୟାନ ନକରି ବରଂ ଗ୍ରହଣ କରିନେଉଛି ।

କୌଣସି ସାମାଜିକ ପ୍ରସଙ୍ଗ ଯେତେବେଳେ ଏକ ସଂସ୍କୃତି ହୋଇଯାଏ ସେତେବେଳେ ଲାଭ ଉପାର୍ଜନକାରୀ ବ୍ୟବସାୟୀମାନେ ଏହାର ଲାଭ ନେବାକୁ ସକ୍ରିୟ ହୋଇଯାଆନ୍ତି । ବର୍ତ୍ତମାନର ଉଦାରୀକରଣ ଯୁଗରେ ଏହା ଏକ ସ୍ୱାଭାବିକ ଘଟଣା । ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବ ପାଇଁ ସଂପ୍ରତି ଜଣକୁ ଆଉ ପରିଶ୍ରମ କରିବାକୁ ପଡୁନାହିଁ । ଉତ୍ସବର ନିଖୁଣ ଆୟୋଜନ ନିମନ୍ତେ ଠିକାଦାର ଅନ୍ୟ କଥାରେ କହିଲେ ଇଭେଣ୍ଟ ମ୍ୟାନେଜର ମାନେ ମିଳିଲେଣି । ବିବାହ ମଣ୍ଡପ କିପରି ହେବ, ଶାଢୀ, ସେରୱାନୀ, ପୋଷାକ, ଗହଣା କେଉଁଠୁ ଆସିବ; ଫୁଲ, ରୋଷଣୀର ବିବାହ ଉତ୍ସବ କିପରି ଆରବିୟାନ୍ ନାଇଟସ୍ ପରି ଦିଶିବ ଏବଂ ପାନୀୟ ଠାରୁ ଭୋଜନ ପର୍ଯ୍ୟନ୍ତ କିପରି ସ୍ୱାଦ ଯୁକ୍ତ ହେବ, ଏହାର ବନ୍ଦୋବସ୍ତ ଏଇ ଇଭେଣ୍ଟ ମ୍ୟାନେଜରମାନେ କରି ଦିଅନ୍ତି ।

ଏଇ କିଛି ଦିନ ତଳେ ଭାରତରେ ସଂଗଠିତ ଏକ ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବ ଗିନିଜ୍ ବୁକ୍ ଅଫ୍ ରେକର୍ଡରେ ରହିଛି । ସେ ହେଉଛି ବିଶିଷ୍ଟ ଶିଳ୍ପପତି ଲକ୍ଷ୍ମୀ ମିତଲଙ୍କର ପୁଅ ବାହାଘର । ମିତଲଙ୍କ ପୁଅ ବାହାଘର ଉତ୍ସବ ହେଲା ସୁଦୂର ଫ୍ରାନ୍ସରେ । ଅତିଥିଙ୍କୁ ଚର୍ଚ୍ଚା କରାଗଲା ପ୍ୟାରିସ୍ ନିକଟବର୍ତ୍ତୀ ଭର୍ସାଇଲ ରାଜପ୍ରାସାଦରେ । ଉଲ୍ଲେଖ ଥାଉକି, ଇତିହାସର ଏକ ସୁପରିଚିତ ନାଁ ଏ ଭର୍ସାଇଲ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଜର୍ମାନୀକୁ ନିୟନ୍ତ୍ରିତ କରିବାକୁ ଏଇଠି ଚୁକ୍ତି କରାଯାଇଥିଲା । ଭର୍ସାଇଲ ରାଜପ୍ରାସାଦର ବିବାହ ଅଭ୍ୟର୍ଥନାରେ ମିତଲ ସାହେବ କୁଆଡେ ପ୍ରାୟ ଦୁଇ ଶହ କୋଟି ଟଙ୍କା ଖର୍ଚ୍ଚ କରିଛନ୍ତି ବୋଲି ଖବର ଆସିଛି ।

ଭାରତରେ ମିତଲଙ୍କ ପରି ଧନୀମାନଙ୍କର ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବ ପାଇଁ ସେମିତି କିଛି କଟକଣା ଏଠି ନାହିଁ । ଥିଲେ ବି ଏହା କାର୍ଯ୍ୟକାରୀ ହୁଏନି । ସ୍ପଷ୍ଟ କହିଲେ ଏ ଦେଶରେ ବଡବଡ ବାହାଘର ମାନଙ୍କରେ ଯେତିକି ଖାଦ୍ୟ ନଷ୍ଟ ହୁଏ ଏବଂ ଯେତିକି ବିଜୁଳିବତୀ ରୋଷଣୀରେ ଜଳେ, ଏହା ବାସ୍ତବରେ ଏ ଦେଶର କୋଟି କୋଟି ଭୋକିଲା ଏବଂ ବିଜୁଳି ନପାଇ ଗ୍ରାମାଞ୍ଚଳରେ ଅନ୍ଧାରରେ ରହୁଥିବା

ଅସଂଖ୍ୟ ଲୋକଙ୍କ ପ୍ରତି କିପରି ଉପହାସ ପରି ଲାଗେ ।

ବିବାହ ଉତ୍ସବରେ ହେଉଥିବା ଅତ୍ୟଧିକ ଖର୍ଚ୍ଚ ଏବଂ ବଦଖର୍ଚ୍ଚକୁ ନିୟନ୍ତ୍ରଣ କରିବାକୁ ଭାରତରେ ମଧ୍ୟ ଆଇନର ଅଭାବ ନାହିଁ । ଦୁର୍ଭାଗ୍ୟ ଯେ, ଏହା ସଠିକ କାର୍ଯ୍ୟକାରୀ ହୋଇପାରୁନାହିଁ କିମ୍ବା ଏ ଆଇନରେ ଥିବା ବ୍ୟବସ୍ଥା ମାନିବାକୁ ଲୋକେ ଏଠି ପ୍ରସ୍ତୁତ ନାହାନ୍ତି । ଅସଲ କଥା ହେଲା, ଅନେକ ଜିନିଷ ଆଇନରେ ପରିବର୍ତ୍ତିତ ହୋଇପାରେନି । ପରିବର୍ତ୍ତନ ପାଇଁ ମାନସିକତାର ପରିବର୍ତ୍ତନ ଦରକାର ହୁଏ । ସୁତରାଂ ବିବାହ ଉତ୍ସବରେ ନିଜର ଅହଂକୁ ଦେଖାଇବା ପାଇଁ ହେଉଥିବା ଅତ୍ୟଧିକ ଖର୍ଚ୍ଚକୁ ରୋକିବା ଏବେ ଦରକାର ହେଉଛି ।

ବାହାଘରର ଅନ୍ୟାବଶ୍ୟକ ଦେଖାଣିଆ ପ୍ରଦର୍ଶନ ବର୍ତ୍ତମାନ ଏକ ବୃହତ୍ ସାମାଜିକ ପ୍ରସଙ୍ଗ । ଏହାର ସୁଦୂର ପ୍ରସାରି ପ୍ରଭାବ ଦେଖିବାକୁ ମିଳେ । ଏହାର ପ୍ରଥମ ପ୍ରଭାବ ହେଉଛି, ଏହା ଯୌତୁକ ପ୍ରଥାକୁ ବାହାବା ଦେଉଛି । ବର ଘର କନ୍ୟା ଘରୁ ଯୌତୁକ ନ ଆଣିଲେ ବାହାଘର ଆୟୋଜନ କରିପାରୁନି । ବର୍ତ୍ତମାନର ବଢନ୍ତା ଯୌତୁକ ନିର୍ଯାତନା ଏବଂ ଯୌତୁକ ହତ୍ୟା ଏଇ ଯୌତୁକ ପ୍ରଥା ଯୋଗୁଁ ବୋଲି ଅଭିଯୋଗ ହୁଏ ଏବଂ ଯୌତୁକ ଦେଇନପାରି ଲକ୍ଷ ଲକ୍ଷ ଝିଅ ଅବିବାହିତ ରହିଯାଉଥିବାର କାରଣ ବି ଏଇ ଯୌତୁକ ଦାବି । କଥା ବି ଏତିକିରେ ଅଟକି ରହୁନାହିଁ । ଯୌତୁକ ଦେଇ ଆର୍ଥିକ ସର୍ବସ୍ୱାନ୍ତ ହୋଇଯାଇଥିବା ଗରିବ ଚାଷୀଟି ମାନସିକ ସନ୍ତୁଳନ ହରାଇ ଆତ୍ମହତ୍ୟା କରୁଛି ଏବଂ ନିଜ ପିତାର ମୃତ୍ୟୁ ପାଇଁ ନିଜକୁ ଦାୟୀ କରି ଝିଅଟି ମଧ୍ୟ ଆତ୍ମହତ୍ୟାରେ ଜୀବନ ହାରୁଛି । ଏହା କାହାଣୀ ନୁହେଁ । ବାସ୍ତବତା ଏବଂ ଦ୍ୱିତୀୟ ପ୍ରଭାବଟି ହେଲା ବର୍ତ୍ତମାନର କ୍ରମବର୍ଦ୍ଧିଷ୍ଣୁ କନ୍ୟା ଭ୍ରୁଣ ହତ୍ୟା । ଝିଅକୁ ବାହାଦେଇ ଋଣ ଭାରରେ ସନ୍ତୁଳୁ ଥିବା କିମ୍ବା ଝିଅକୁ ବାହାନଦେଇ ନିଜ ଘରେ ଅବିବାହିତ ରଖିଥିବା କନ୍ୟା ପିତା କାହିଁକି ବା ଝିଅ ଜନ୍ମକୁ ସ୍ୱାଗତ କରିବ ଏହା ଏବେ ସାଧାରଣରେ ପ୍ରଶ୍ନ । ଏ ପ୍ରଶ୍ନ ସାଧାରଣ ହେଲେ ବି ଆଡମ୍ବରପୂର୍ଣ୍ଣ ବିବାହର ହିସାବ ରଖିବାକୁ ଆମ ପାଖରେ ଯେପରି ସମୟ ନାହିଁ । ସେନ୍‌ସେକ୍ସ ସୂଚକାଙ୍କର ହିସାବ ବର୍ତ୍ତମାନ ବଡକଥା । କନ୍ୟା ପ୍ରତି ଉଦାସୀନତା କିଛି ଗୁରୁତ୍ୱ ରଖେନି ।

ଏଠି ଏଇ ଆଲୋଚନାରେ ଏକ ବିଡମ୍ବନା କଥା କହିବାକୁ ଇଚ୍ଛା । ପ୍ରାୟ ସବୁ ରାଜନେତା ଏବଂ ସାମାଜିକ କର୍ମକର୍ତ୍ତା ବିବାହ ଆଡମ୍ବରକୁ ବିରୋଧ କରନ୍ତି । କିନ୍ତୁ ଯେତେବେଳେ ନିଜ ପୁଅ କିମ୍ବା ନିଜ ଝିଅ ବା ଆତ୍ମୀୟଙ୍କର ବିବାହ ପ୍ରସଙ୍ଗ ଆସେ, ଏମାନେ କିନ୍ତୁ ଏକ ଦାମିକା ବିବାହ ଉତ୍ସବକୁ ବିରୋଧ କରିପାରନ୍ତି ନାହିଁ । ନିଜ ପୋଷ୍ୟ ପୁତ୍ରର ବିବାହ ଉତ୍ସବ ପାଇଁ ଚଳଚଞ୍ଚଳ ଚେନ୍ନାଇ ସହରକୁ ତାମିଲନାଡୁର

ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜୟଲଳିତା କିଛି ସମୟ ପାଇଁ ଠପ୍ କରି ଦେଇଥିଲେ ବୋଲି ଖବର ଆସିଥିଲା ।

ସୁତରାଂ ଶସ୍ତା ନିରାଡମ୍ବର ବିବାହ ଉତ୍ସବ ବର୍ତ୍ତମାନ ଏକ ଆବଶ୍ୟକତା । ଗଣବିବାହ ଏଇ ଆବଶ୍ୟକତାକୁ ପୂରଣ କରିପାରିବ ବୋଲି ଅନେକ ମତ ଦେଲେଣି । ଏ ଲେଖକ ମହାରାଷ୍ଟ୍ରର ବିଦର୍ଭରେ ଚାଲିଥିବା ଗଣବିବାହ ସଂପର୍କରେ ଏକ ରିପୋର୍ଟ ଏବେ ଦେଖିଥିଲା । ମହାରାଷ୍ଟ୍ର ସରକାର ବି ଏ ବିବାହକୁ ପ୍ରୋତ୍ସାହନ ଦିଅନ୍ତି । ଗଣବିବାହରେ ନିଜ ପୁଅ ଝିଅଙ୍କୁ ବିବାହ ଦେବାକୁ ଲୋକଙ୍କର ଏଠି ଆଗ୍ରହ ରହିଛି ।

ମହାରାଷ୍ଟ୍ରର ଏଇ ବିଦର୍ଭ ଅଞ୍ଚଳରେ କୃଷକମାନେ ବେଶି ଆତ୍ମହତ୍ୟା କରନ୍ତି । ଏକ ସର୍ବେକ୍ଷଣରୁ ଜଣାଯାଇଛି, ଏହାର କାରଣ କୃଷି ଋଣ ନୁହେଁ । ବରଂ ଆଡମ୍ବର ପୂର୍ଣ୍ଣ ବିବାହ କରିବାକୁ ଯାଇ ଅତ୍ୟଧିକ ଋଣ କରିଥିବା ଏହାର କାରଣ । ଦିବାଥାନ ନାମକ ଏକ ଗାଁରେ ଗଣବିବାହ ଅନେକ ବର୍ଷ ଧରି ଚାଲିଛି । ବର୍ଷକରେ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଏବଂ ଗୋଟିଏ ଥର ଏହି ବିବାହ ଉତ୍ସବ ଅନୁଷ୍ଠିତ ହେଉଛି । ଏଥିପାଇଁ ଝିଅ ବା ପୁଅ ବିବାହ ଦେଉଥିବା ପରିବାର ମାତ୍ର ସାତ ହଜାର ଟଙ୍କା ଖର୍ଚ୍ଚ କରୁଛି । ବାହାଘରରେ ଏଠି ଆଡମ୍ବର ନାହିଁ । ଭୋଜିଭାତ ବି ନାହିଁ ।

ଏବେ କିନ୍ତୁ ଅଭିଯୋଗ ଆସିଲାଣି, ରାଜନେତାମାନେ ଏଇ ଉତ୍ସବକୁ ଯାଇ ଏହାକୁ ଏକ ରାଜନୈତିକ ଘଟଣା କରିସାରିଲେଣି । ପ୍ରକାରାନ୍ତରେ ଏ ଉତ୍ସବକୁ ନିଜ ସମର୍ଥକମାନଙ୍କ ଦ୍ୱାରା ଏମାନେ ଚାନ୍ଦା ଦେଇ ଗଣବିବାହର ମୂଳ ପବିତ୍ରତା ନଷ୍ଟ କରିଦେଲେଣି । କୌଣସି ଉତ୍ସବରେ ରାଜନେତା ଯୋଗଦେବା ଖରାପ କଥା ନୁହେଁ । ଏହା ଦ୍ୱାରା ବିବାହ ସାମାଜିକ ସ୍ୱୀକୃତି ପାଏ । ସାଧାରଣରେ ଏଥିନେଇ ବିଶ୍ୱାସ ବଢ଼େ । ଗଣବିବାହ ପବିତ୍ରତା ଯେପରି ନଷ୍ଟ ନହୁଏ ରାଜନେତାମାନେ ସର୍ତକ ରହିବାକୁ ଏବେ ଦାବି ମଧ୍ୟ ଆସୁଛି ।

ସୁତରାଂ ଦାମିକା ଆଡମ୍ବରପୂର୍ଣ୍ଣ ବିବାହ ଉତ୍ସବ ପରିବର୍ତ୍ତେ ଶସ୍ତା ବିବାହ ଉତ୍ସବ ନେଇ ଏକ ମାନସିକତା ତିଆରି କରିବାର ସମୟ ସଂପ୍ରତି ଆସିଛି । ଅତ୍ୟଧିକ ବିବାହ ଖର୍ଚ୍ଚ ଯୋଗୁ ବିବାହ ଅନୁଷ୍ଠାନ ଭାରତରେ ବିପଦରେ ପଡିବା ପୂର୍ବରୁ ଏହାର ସୁଧାର ପାଇଁ ଏଇ ମାନସିକତା ଦରକାର ହେଉଛି । ଏଥିପାଇଁ କିଛି ସମାଜ ସଂସ୍କାରକଙ୍କର ଆବଶ୍ୟକତା ରହିଛି, ଯେଉଁମାନଙ୍କୁ ଲୋକେ ବିଶ୍ୱାସ କରୁଥିବେ, ଯେଉଁମାନେ ରୋଲ ମଡେଲ ହୋଇପାରିଥିବେ । ପ୍ରକୃତରେ ଶସ୍ତା ବିବାହ ଉତ୍ସବର ସଂପ୍ରତି ସାମାଜିକ ଦାମ୍ ବେଶି । ନୁହେଁ କି ?



# ବିବାହ ଖର୍ଚ୍ଚ

ବିବାହ ଉତ୍ସବ ପାଳନ ପାଇଁ ଭାରତୀୟମାନେ ଏବେ ଅତ୍ୟଧିକ ଖର୍ଚ୍ଚ କରୁଛନ୍ତି କି ? ଏପରି ଏକ ପ୍ରଶ୍ନ ନେଇ ଆଜିର ଏ ଚର୍ଚ୍ଚା ।

ଚିତ୍ର ତାରକା, ଶିଳ୍ପପତି, ରାଜନେତାଙ୍କର ପୁଅଝିଅଙ୍କ ବିବାହ ଉତ୍ସବରେ ହେଉଥିବା ଖର୍ଚ୍ଚ କଳନା କରିବା କଷ୍ଟ । ଭାରତୀୟ ଗଣମାଧ୍ୟମ ମଧ୍ୟ ଏହାର ପ୍ରଚାରରେ ଲାଗିଛି । ଅନେକ ସମୟରେ ଏହା ବହୁଳ ବ୍ୟୟର ଗଣମାଧ୍ୟମ ବି ଏକ ଅଂଶ ହୋଇଯାଏ । ବିବାହର ଫଟୋ ଉଠାଇ ମାଗାଜିନରେ ଛାପିବାକୁ ଏମାନେ କୋଟି କୋଟି ଟଙ୍କା ନିଅନ୍ତି । ପୁରୁଷ ଏବଂ ସ୍ତ୍ରୀ ଭିତରେ ବିବାହ ପରି ପବିତ୍ର ବ୍ୟକ୍ତିଗତ ଘଟଣାକୁ ପ୍ରଚାର କରି ମିଡିଆ ଯେ କେଉଁ ସାମାଜିକ ଉଦ୍ଦେଶ୍ୟ ସାଧନ କରୁଛି, ଏହା ଏବେ ଏକ ବଡ ପ୍ରଶ୍ନବାଚୀ ।

ଭାରତରେ ବିବାହ ଉତ୍ସବ ବର୍ତ୍ତମାନ ଏକ ବୃହତ ଶିଳ୍ପ । ପ୍ରତିବର୍ଷ ଏହି ଉତ୍ସବମାନଙ୍କରେ ଖର୍ଚ୍ଚ ହେଉଥିବା ଅର୍ଥର ପରିମାଣ ପ୍ରାୟ ପାଞ୍ଚ ହଜାର କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଏବଂ ବର୍ଷକୁ ବର୍ଷ ଏହି ଖର୍ଚ୍ଚ ୨୦-୩୦ ପ୍ରତିଶତ ହାରରେ ବଢୁଛି । ବିବାହ ଉତ୍ସବ ଏକ ଶିଳ୍ପ ଏଇଥିପାଇଁ ଯେ ଏଥିରେ ଏବେ ଅନେକଙ୍କୁ କାମ ମିଳୁଛି । ଟେଣ୍ଟବାଲାଠାରୁ ଫୁଲବାଲା ପର୍ଯ୍ୟନ୍ତ ସମସ୍ତଙ୍କର ଏଥିରେ ଉପାର୍ଜନ ଅଛି । ଉତ୍ସବ ପରିଚାଳକ ବା ଇଭେଣ୍ଟ ମ୍ୟାନେଜର ଲକ୍ଷ ଲକ୍ଷ ଟଙ୍କାରେଏ କାମର ଠିକା ନେଉଛନ୍ତି ।

ବାହାଘରରେ ଅଧିକ ବ୍ୟୟ କରିବା ନିଶା ଏବର ଧାରା ନୁହେଁ । ବହୁ ପୁରୁଣା କାଳରୁ ଏହା ଚାଲିଆସୁଛି ଏବଂ ବିବାହ ଉତ୍ସବକୁ ଜାକଜମକ କରିବା ଖାଲି ସହରର କଥା ନୁହେଁ । ଏହା ଏପରି ଦର୍ଶନୀୟ ଭାବେ ଗ୍ରାମାଞ୍ଚଳରେ ମଧ୍ୟ ହୁଏ ।

ବିଶିଷ୍ଟ ଲେଖକ ନିରଦ ସି. ଚୌଧୁରୀ ତାଙ୍କ ବହୁଚର୍ଚ୍ଚିତ ପୁସ୍ତକ 'ଟୁ ଲିଭ୍ ଆଣ୍ଡ ନଟ୍ ଟୁ ଲିଭ୍' ରେ ଭାରତୀୟମାନଙ୍କର ବିବାହ ଉତ୍ସବର ଏକ ସମାଜଶାସ୍ତ୍ରଭିତ୍ତିକ

ବର୍ଣ୍ଣନା ଦେଇଛନ୍ତି । ଚୌଧୁରୀ କହନ୍ତି, ଘରେ କାହାର ବିବାହ ଉତ୍ସବ ଆସିଲେ ଅନେକଙ୍କୁ ସେମାନଙ୍କର ସାମାଜିକ ପ୍ରତିଷ୍ଠା, ପ୍ରତିପତ୍ତି, ପ୍ରଭାବ ଏବଂ ଧନ ପ୍ରଦର୍ଶନ କରିବାର ସୁଯୋଗ ମିଳିଗଲା ବୋଲି ଧରାଯାଏ । ସାମାଜିକ ସହଯୋଗ ସୃଷ୍ଟି ପାଇଁ ଏହା ଏକ ଅବସର ବୋଲି ମନେ କରାଯାଏ ଏବଂ ଆତ୍ମୀୟ ମାନଙ୍କର ସାମାଜିକ ମିଳନକୁ ଏହା ଏକ ମାଧ୍ୟମ ବୋଲି ଗ୍ରହଣ କରାଯାଏ ।

ଏହା ସତ, ନିଜ ପୁଅଝିଅ ବାହାଘର ଉତ୍ସବରେ ଗାଁ ଜମିଦାରମାନେ ହଜାର ହଜାର ଲୋକଙ୍କୁ ଭୋଜି ଦିଅନ୍ତି; ବାଣ ରୋଷଣୀରେ ପଟୁଆରକୁ ବେଶ୍ ଦର୍ଶନୀୟ କରିଥାନ୍ତି । ଏହାର ଉଦ୍ଦେଶ୍ୟ ଥାଏ, ନିଜ ସାମାଜିକ ପ୍ରତିଷ୍ଠାକୁ ନ୍ୟୁନ ନକରିବା ଏବଂ ଅନ୍ୟଠାରୁ ଧନ ଆଉ ପ୍ରଭାବରେ କମ୍ ନୁହନ୍ତି, ତାହା ପ୍ରଦର୍ଶନ କରିବା ।

ପୁରୁଣା କାଳରେ ଏହି ଅଭ୍ୟାସ ଏବେ ଆମ ସଂଭ୍ରାନ୍ତ ସମାଜକୁ ଗ୍ରାସ କରିଦେଇଛି । ବାହାଘରରେ ଅତ୍ୟଧିକ ଖର୍ଚ୍ଚ କରିବାର ମାନସିକତା ଧନୀଙ୍କଠାରୁ ସାଧାରଣ ଜନତା ସମସ୍ତଙ୍କ ପାଖରେ ପ୍ରାୟ ପହଞ୍ଚିଗଲାଣି । ଏ ମାନସିକତା ସଂପ୍ରତି ଏକ ରୋଗ ହୋଇଯାଇଛି ।

ଏକଦା ସାମାଜିକ ସହଯୋଗ ପ୍ରତିଷ୍ଠା ନିମନ୍ତେ ଉଦ୍ଦିଷ୍ଟ ଥିବା ବିବାହ ଉତ୍ସବ ସାମାଜିକ ପ୍ରତିଯୋଗିତାର ଏକ ଘୃଣ୍ୟ ରୂପ ନେଇସାରିଲାଣି । ସେଇଥିପାଇଁ ତ ବାହାଘର ଉତ୍ସବରେ ଖର୍ଚ୍ଚ ବଢୁଛି । ପଦବୀ ଏବଂ ଷ୍ଟାଟସ୍ ଅନୁଯାୟୀ ଅତିଥିଙ୍କର ତାଲିକା ପ୍ରସ୍ତୁତ ହେଉଛି । ନିଜର ବିବାହ ମୁହୂର୍ତ୍ତ ଯେ ଅନେକ ଦିନ ମନେରହୁ ଏ ଚିନ୍ତା ଏବେ ପ୍ରାୟ ସମସ୍ତଙ୍କୁ କାବୁ କରିନେଇଛି ।

ହଁ, ପାଠକ ବନ୍ଧୁ! ଅନେକ ପ୍ରତିଷ୍ଠିତ ବ୍ୟକ୍ତିର ବିବାହ ଉତ୍ସବ ଆଉ ନିଜଘରେ ହେଉନାହିଁ । ଏହି ଉତ୍ସବସବୁ ପର୍ଯ୍ୟଟନ ସ୍ଥାନମାନଙ୍କରେ ହେଉଛି । ପୁରୁଣା ଦୁର୍ଗ ବା ରାଜଉଆସଟିଏ ମିଳିଗଲେ ଭଲ ।

ବିବାହ ଉତ୍ସବ ଆଉ ଗୋଟିଏ ଦିନରେ ମଧ୍ୟ ଶେଷ ହେଉନାହିଁ । ଏହା ଅନେକ ଦିନ ଧରି ଚାଲୁଛି । ଏହି ଦିନମାନଙ୍କରେ ବାହାଘର ମଧ୍ୟ ଅନେକ ଥର ହେଉଛି । ବିବାହ ପରି ଏକ ପବିତ୍ର ପ୍ରାଥମିକ ସାମାଜିକ ଅନୁଷ୍ଠାନକୁ ଏକ ସୁନ୍ଦର ଷ୍ଟେଜ ସୋ'ରେ ପରିଣତ କରିଦିଆଯାଉଛି । ଉତ୍ସବକୁ ଉପଭୋଗ କରିବା ଆଳରେ ଏହା ଯେପରି ଏକ ତାମ୍‌ସା - ଥିଏଟର ହୋଇଯାଉଛି । ଉତ୍ସବ ତେଣୁ ବ୍ୟୟବହୁଳ

ହେବା ସ୍ୱାଭାବିକ । ଅବଶ୍ୟ ଉତ୍ସବରେ ଖର୍ଚ୍ଚ କରିବାକୁ ଅନେକଙ୍କର ଆଉ କୁଣ୍ଠା ନାହିଁ ।

ଖାସ୍ ଏଇଥିପାଇଁ ତ ବ୍ୟାବସାୟିକ ଇଭେଣ୍ଟ ମ୍ୟାନେଜରଙ୍କର ବ୍ୟବସାୟ ଏବେ ବଢୁଛି । ଉତ୍ସବକୁ କିପରି ସୁନ୍ଦର ଏବଂ ସରସ କରିହେବ ସେଇଥିପାଇଁ ନୂଆ ନୂଆ ଚିନ୍ତା ସେମାନେ ଦେଉଛନ୍ତି । ବିବାହ ପେଣ୍ଡାଲ୍ କିପରି ହେବ; ସାଜସଜ୍ଜା କିପରି ହେବ; ନିମନ୍ତ୍ରଣ କାର୍ଡର ଡିଜାଇନ କିପରି ହେବ ଏବଂ ଅତିଥିଙ୍କ ଅଭ୍ୟର୍ଥନା କିପରି ହେବ ବିବାହ ବ୍ୟବସାୟୀଙ୍କ ପାଖରେ ତା'ର ଭଲ ଭଲ ସ୍କିମ୍ ଅଛି ।

ଅସଲ କଥା ହେଲା, ଏହି ପ୍ରଫେସନାଲ୍ ବିବାହ ଠିକାଦାରମାନଙ୍କର ବାହା ହେଉଥିବା ବରକନ୍ୟାଙ୍କ ସହ କିଛି ଆତ୍ମିକ ସମ୍ପର୍କ ନଥାଏ । ଏମାନେ ବରକନ୍ୟାର ଚାଲିଚଳନ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜଣା ଥାଆନ୍ତି । ଅଥଚ ଏହି ଇଭେଣ୍ଟ ମ୍ୟାନେଜରମାନେ ଉତ୍ସବର ଆୟୋଜନ ଦାୟିତ୍ୱ ନେଇଥାନ୍ତି । ଗ୍ରାହକର ବରାଦ ଅନୁସାରେ ଉତ୍ସବକୁ ସଜେଇ ଥାଆନ୍ତି । ଉତ୍ସବ ପାଳନ ପାଇଁ ରାଜପ୍ରସାଦ କିମ୍ବା ଦୁର୍ଗ ନ ମିଳିଲେ ଏସବୁ ସେଟିଂରେ ହୋଇଥାଏ । ବର କନ୍ୟାକୁ ରାଜପୁତ୍ର ଓ ରାଜକନ୍ୟା ପରି ବେଶ କରି ବସାଇ ଦିଅନ୍ତି । ସେମାନେ ଯେପରି ପରକନ୍ୟା ଏବଂ ଦେବଦୂତ ପରି ଦିଶନ୍ତି ।

ବିବାହର ପାରମ୍ପରିକ ରୀତି ଆଉ ନାହିଁ । ଯେତେସବୁ କୃତ୍ରିମତାରେ ଉତ୍ସବକୁ ଆକର୍ଷଣୀୟ କରିହେବ, ତା'ର ସବୁ ପ୍ରୟାସ ହେଉଛି । ଏଥିପାଇଁ ଅର୍ଥର ଅଭାବ ନାହିଁ; ଏବଂ ଉତ୍ସବକୁ ରଙ୍ଗୀନ କରିବାକୁ ବ୍ୟାବସାୟିକ ଇଭେଣ୍ଟ ମ୍ୟାନେଜରଙ୍କ ପାଖରେ ସ୍କିମ୍‌ର ମଧ୍ୟ ଅଭାବ ନାହିଁ, ଯଦିଓ ଏହା ବିବାହ ପ୍ରତି ଉପହାସଟିଏ ହୋଇଯାଇଛି ।

ଅନେକ ରାଜ ପରିବାରରେ ବର୍ତ୍ତମାନ ସେଇ ପୁରୁଣା ପାରମ୍ପରିକ ଶୈଳୀରେ ଏବଂ ନିଜର ଆରାଧ୍ୟ ଦେବତାଙ୍କ ମନ୍ଦିରରେ ବିବାହ ଉତ୍ସବ ଅନୁଷ୍ଠିତ ହେଉଛି । ବେଦୀ ପାଖରେ ଚାଉଳ ଚୂନାରେ ମୁରୁଜ ପଡୁଛି । ସାତ ସାଧବଙ୍କ ହୁଳହୁଳି ଶବ୍ଦ ଶୁଭୁଛି ଏବଂ ପରିବାରର ସଭ୍ୟ ତଥା ଅତି ଆତ୍ମୀୟମାନଙ୍କୁ ନେଇ ଉତ୍ସବ କରାଯାଉଛି । ଅଥଚ ଆଧୁନିକ ନକଲି ରାଜପୁତ୍ରମାନେ ରାଜପ୍ରସାଦର ସେଟିଂ ଭିତରେ ନିଜର ବିବାହ ଉତ୍ସବ କରିବା ପ୍ରୟାସରେ ଅଛନ୍ତି । ଏହା ଖାଲି ବିଡମ୍ବନା ତ ନୁହେଁ, ଅବାସ୍ତବ ବି ଲାଗେ ।

ବିବାହ ଉତ୍ସବରେ ଖର୍ଚ୍ଚର ପରିମାଣ ବୃଦ୍ଧି ପାଇବାର କିଛି କାରଣ ମଧ୍ୟ ଦିଆଯାଏ । ପ୍ରଥମ କାରଣଟି ହେଉଛି, ଆର୍ଥିକ ଅଭିବୃଦ୍ଧି । ଏହି ଅଭିବୃଦ୍ଧି ଭାରତବର୍ଷରେ

ନୂତନ ଧନୀକ ଶ୍ରେଣୀଟି ସୃଷ୍ଟି କରିସାରିଲାଣି । ଦ୍ୱିତୀୟ କାରଣଟି ହେଉଛି, କଳା ଟଙ୍କା । ଆର୍ଥିକ ଉଦାରବାଦରେ ଦୁର୍ନୀତି ବଢ଼ିଛି ଏବଂ ଟିକସ ଫାଙ୍କି ମଧ୍ୟ ବୃଦ୍ଧି ପାଇଛି । କଳା ଟଙ୍କାର ବେଆଇନ ସଞ୍ଚୟ ଅନେକଙ୍କୁ ନିଜର ଉପଭୋଗ ପାଇଁ ଖର୍ଚ୍ଚ କରିବାରେ ଆଉ ସଂକୁଚିତ କରିଦେଉନି ଏବଂ ତୃତୀୟ କାରଣଟି ହେଉଛି ହଠାତ୍ ବିତ୍ତଶାଳୀ ହୋଇଯିବା ହେତୁ ନିଜର ସାମାଜିକ ଅହଂକାର ପ୍ରଦର୍ଶନ କରିବାର ଏକ ବିକୃତ ମାନସିକତା କେମିତି ବିପଦ୍‌ଜନକ ଭାବେ ବଢ଼ିଛି ।

ଖାସ୍ ଏହି କାରଣ ଯୋଗୁଁ ହିଁ ବିବାହ ଖର୍ଚ୍ଚରେ ଆଉ ସୀମା ରହୁନାହିଁ ଯଦିଓ ଉତ୍ସବ ପାଳନ ପାଇଁ ପ୍ରତିଯୋଗିତା ଅନେକଙ୍କୁ ଋଣୀ କରିଦେଉଛି ଏବଂ ଯୌତୁକ ପ୍ରଥାକୁ ବି ବାହବା ଦେଉଛି ।

ହଁ, ଏଇଠି ଏ ଆଲୋଚନା ଶେଷ କରିବାକୁ ଇଚ୍ଛା । ବିବାହରେ ଏ ବଦ୍‌ଖର୍ଚ୍ଚ ଏବେ ରୋକାଯିବା ଦରକାର । ଏଥିନେଇ ଆଇନ ମଧ୍ୟ ହେବା ଜରୁରୀ ଏବଂ ଖର୍ଚ୍ଚର ସୀମା ଟପିଗଲେ କଠିନ ଦଣ୍ଡର ବ୍ୟବସ୍ଥା ରହିବା ଉଚିତ । କାରଣ ଭାରତରେ ଏବେ ମଧ୍ୟ ଦାରିଦ୍ର୍ୟ ସୀମାରେଖା ତଳେ କୋଟି କୋଟି ଲୋକ ଅଛନ୍ତି ଯେଉଁମାନଙ୍କ ପାଇଁ ଦୁଇବେଳା ଖାଦ୍ୟ ମିଳିବା କଷ୍ଟ ଏବଂ ବର୍ତ୍ତମାନର ନବ୍ୟ ଧନୀ ସାମନ୍ତବାଦୀ ସାମାଜିକ ଅହଂକାରକୁ ଗଣତାନ୍ତ୍ରିକ ସମାଜରେ ନିୟନ୍ତ୍ରଣରେ ରଖିବା ମଧ୍ୟ ଉଚିତ ।

ଏଇ କିଛି ଦିନ ପୂର୍ବେ ଜଣେ ଇଭେଣ୍ଟ ମ୍ୟାନେଜରଙ୍କ ବିବାହ ଉତ୍ସବ ନେଇ ଏକ ପୁସ୍ତକ ଉନ୍ମୋଚନ କଲା ବେଳେ ରାଜ୍ୟପାଳ ସୁରଜିତ ସିଂ ବର୍ଣ୍ଣାଲା ମଜାରେ କହିଦେଲେ, ଆଜିକୁ ଚଉବନ ବର୍ଷ ତଳେ ତାଙ୍କର ହେଉଥିବା ବାହାଘରରେ ମାତ୍ର ପଚାଶ ଟଙ୍କା ଖର୍ଚ୍ଚ ହୋଇଥିଲା । ଅବଶ୍ୟ ଏହା ପ୍ରେମ ବିବାହ ଥିଲା । ତେବେ ବ୍ୟୟବହୁଳ ବିବାହ ଉତ୍ସବ ବିବାହର ସ୍ଥାୟିତ୍ୱ ପାଇଁ ଗ୍ୟାରେଣ୍ଟି ନୁହେଁ ।



# ବିଦ୍ୟାଳୟରେ ଯୌନଶିକ୍ଷା

ଏଡ୍ସ, ଏଚଆଇଭି, କୁମାରୀ ମାତୃତ୍ୱ ଏବଂ ଜନ୍ମ ନିୟନ୍ତ୍ରଣ ପ୍ରସଙ୍ଗରେ ଚିନ୍ତା କରୁଥିବା ପଣ୍ଡିତମାନେ କହନ୍ତି -ଅସୁରକ୍ଷିତ ଯୌନ ସମ୍ପର୍କ ହିଁ ଏଠି ସବୁ ସାମାଜିକ ଦୁର୍ଭାଗ୍ୟର ମୂଳ କାରଣ । ସେମାନେ ଏଥିନେଇ ଏକ ପରିସଂଖ୍ୟାନଟିଏ ଦେଇ କହନ୍ତି, ଭାରତରେ ତେୟାନବେ ପ୍ରତିଶତ ଲୋକ ଯୌନଶିକ୍ଷା କ'ଣ ଜାଣନ୍ତି ନାହିଁ ଏବଂ ପ୍ରାୟ ଅଶି ପ୍ରତିଶତ ଲୋକ ନିଜର ଯୌନ ସମସ୍ୟା ନେଇ ଅନ୍ୟକୁ କହିବାକୁ ସଂକୋଚ କରନ୍ତି ।

ଏହି ପରିସଂଖ୍ୟାନକୁ ଟିକିଏ ବଳିଷ୍ଠ କରିଦେବାକୁ ଭାରତରେ ଥିବା ଏଡ୍ସ ରୋଗୀଙ୍କ ସମ୍ପର୍କରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ଏକ ଆକଳନ ଦିଆଯାଏ । ଏଡସ୍ ଆକ୍ରାନ୍ତ ରୋଗୀଙ୍କ ସଂଖ୍ୟା ଏଠି ଏବେ ପ୍ରାୟ ପଚାଶ ଲକ୍ଷ । ପୃଥିବୀରେ ଏହା ଦ୍ୱିତୀୟ । ଦକ୍ଷିଣ ଆଫ୍ରିକା ଏ ପ୍ରସଂଗରେ ପ୍ରଥମରେ ଅଛି ଏବଂ ଏହି ଧାରା ଯଦି ଲାଗିରହେ, ଆଉ ମାତ୍ର କେଇ ବର୍ଷ ଭିତରେ ଭାରତରେ ଏଡସ୍ ରୋଗୀଙ୍କ ସଂଖ୍ୟା ବ୍ରିଟେନ୍‌ର ଲୋକ ସଂଖ୍ୟାଠାରୁ ଅଧିକ ହୋଇଯିବ ।ଏପରି ଏକ ବିସ୍ଫୋରକ ପରିସ୍ଥିତିର ମୁକାବିଲା ପାଇଁ ପିଲାଙ୍କୁ ଯୌନଶିକ୍ଷା ଦିଆଯିବା ଯେ ଉଚିତ, ଭାରତ ନୀତି ନିର୍ଦ୍ଧାରକ ମୁରବୀମାନେ ଯୁକ୍ତି ଦର୍ଶାନ୍ତି ।

ତେବେ ସେକ୍ସ କଥା ପିଲାଙ୍କୁ କହିବ କିଏ ? ଏ ପ୍ରଶ୍ନ ଆସିଲା ବେଳେ ଯୌନଶିକ୍ଷା ପାଇଁ ଏଜେନ୍ସି ଖୋଜା ଯାଇଥିଲା । ଏଥିନେଇ ଅନେକ ପ୍ରବନ୍ଧ ଏବଂ ସେମିନାର ହୋଇଥିଲା ଏବଂ ଶେଷରେ ରାଜନେତାମାନେ ସ୍ଥିର କରିଦେଲେ, ଯୌନ ଶିକ୍ଷା ପାଇଁ ବିଦ୍ୟାଳୟ ହିଁ ପ୍ରକୃଷ୍ଟ ସ୍ଥାନ । ଶ୍ରେଣୀ ଗୃହରେ ଯୌନ ବିପତ୍ତି ବିରୁଦ୍ଧରେ ସଂଗ୍ରାମ କରିବା ସହଜ ।

ହଁ ପାଠକ ବନ୍ଧୁ, ଯାହା ଜଣାଯାଏ, କେନ୍ଦ୍ର ସରକାର ତାଙ୍କ ସ୍କୁଲମାନଙ୍କରେ

ଯୌନ ଶିକ୍ଷାର ସିଲାବସ୍ ରଖି ସାରିଲେଣି ଏବଂ ସବୁ ରାଜ୍ୟ ସରକାର ତାଙ୍କ ପିଲାଙ୍କ ପାଇଁ ଏ ଶିକ୍ଷାର ପାଠ୍ୟଖସଡା ପ୍ରସ୍ତୁତ କରିବାକୁ ପ୍ରସ୍ତାବ ଆସିସାରିଛି । ଓଡିଶାର ସ୍କୁଲମାନଙ୍କରେ ବି ଯୌନ ଶିକ୍ଷା ଦିଆଯିବ । କିନ୍ତୁ ଯୌନ ବା ସେକ୍ସ ଶବ୍ଦ ଉପରେ ବେଶି ଗୁରୁତ୍ୱ ନଦେବାକୁ ପ୍ରସ୍ତାବ ଆସୁଛି ।

ନୈତିକତାବାଦୀମାନେ ଯୌନ ଶିକ୍ଷା ପରି ଏକ ସମ୍ବେଦନଶୀଳ ପ୍ରସଙ୍ଗ ନେଇ ବେଶ୍ ବିବ୍ରତ ହୋଇପଡିଛନ୍ତି । ବିବ୍ରତର କାରଣ ହେଉଛି, ସେମାନେ ମୁକ୍ତ ଯୌନ ଚିନ୍ତା ଏବଂ ସମ୍ପର୍କକୁ ବିରୋଧ କରନ୍ତି । କହନ୍ତି, ଖୋଲା ଯୌନ ବ୍ୟବହାର କୌଣସି ଏକ ସମୃଦ୍ଧ ସଭ୍ୟତାକୁ ଅକ୍ଲେଶରେ ଧ୍ୱଂସ କରିଦେଇଥାଏ ଏବଂ ଯେ ପର୍ଯ୍ୟନ୍ତ ଯୌନ କଥା ପରିବାର ଭିତରେ ଆବଦ୍ଧ ଥାଏ, ତାହା ସମାଜ ପାଇଁ ମଙ୍ଗଳ । ନୀତିବାଦୀଙ୍କ ଏହି କଥାକୁ ସଂପ୍ରତି ଆଧୁନିକ ସମାଜବିତ୍‌ମାନେ ମାନିବାକୁ ପ୍ରସ୍ତୁତ ନୁହନ୍ତି ଏବଂ ଯୁକ୍ତି ଦିଅନ୍ତି, ଯେହେତୁ ସେକ୍ସ ଜୀବନରଏକ ସତ୍ୟଏବଂ ଅବିଚ୍ଛେଦ ପ୍ରସଂଗ, ସେଇଥିପାଇଁ ଗୋଟିଏ ସ୍ୱାସ୍ଥ୍ୟକର ମାନବୀୟ ଯୌନ ବ୍ୟବହାର ଉପରେ ଗୁରୁତ୍ୱ ନ ଦେଲେ କୌଣସି ନୈତିକ ଶିକ୍ଷା ପୂର୍ଣ୍ଣତା ପାଇବା ସମ୍ଭବ ନୁହେଁ । ଭିକ୍ଟୋରିଆ ସମୟ ପରେ ଅର୍ଥାତ୍ ଉଣେଇଶ ଶତାବ୍ଦୀରୁ ବ୍ୟକ୍ତିର ଯୌନ ପ୍ରସଙ୍ଗ ଉପରେ ରାଷ୍ଟ୍ରଶକ୍ତିର ନିୟନ୍ତ୍ରଣ ଆସି ସାରିଲାଣି । ଏଇ ସମାଜବିତ୍‌ଙ୍କ ଭିତରେ ମାଇକେଲ୍ ଫୋକ୍‌ଲେ ଅଛନ୍ତି । ଶ୍ରେଣୀ ଗୃହରେ ଯୌନ ଶିକ୍ଷା ନେଇ ଖୋଲାଖୋଲି ଆଲୋଚନା ହେଲେ ଯେ ଗୋଟିଏ ସମାଜ ସେଠି ଥିବା ଯୌନ ଲାଳସାକୁ ସଂଯତ କରିପାରିବ, ଏହା ଫୋକଲ୍‌ଙ୍କ ମତ (ହିଷ୍ଟ୍ରୀ ଅଫ୍ ସେକ୍ସୁଆଲିଟି - ମାଇକେଲ୍ ଫୋକ୍‌ଲେ) ।

ଏସବୁ ତାତ୍ତ୍ୱିକ କଥା ସାଧାରଣରେ ବୁଝିବା ହୁଏତ କଷ୍ଟ ହୋଇପାରେ । କିନ୍ତୁ ସ୍କୁଲମାନଙ୍କରେ କୋମଳମତି ପିଲାମାନଙ୍କୁ ଦିଆଯିବାକୁ ଥିବା ଯୌନଶିକ୍ଷାର ପରିଣତି ଯେ ବୁଝିବା କଷ୍ଟ ହେବ ଏହା କାହିଁକି ମନେ ହେଉନାହିଁ । କାରଣ ପୃଥିବୀର ଅନେକ ଉନ୍ନତ ରାଷ୍ଟ୍ରରେ ଯେଉଁଠି ଯୌନ ଶିକ୍ଷା ଦିଆଯାଉଥିଲା ସେଠି ସେ ଶିକ୍ଷାରେ ପରିବର୍ତ୍ତନ ଆସିବା ଉଚିତ ବୋଲି ଆପତ୍ତି ଉଠିଲାଣି । ଯୌନ ଶିକ୍ଷାର ପରିଣତି ସେଠି ସେତେ ଭଲ ନାହିଁ ।

ଭାରତରେ ଯୌନ ଶିକ୍ଷାର ସ୍ୱରୂପ କିପରି ହେବ ତା'ର ପୂର୍ଣ୍ଣ ଚିତ୍ର ଏ ପର୍ଯ୍ୟନ୍ତ ମିଳିନାହିଁ । ତତ୍ତ୍ୱବିତ୍‌ମାନେ କିନ୍ତୁ ଏ ଶିକ୍ଷାର ଦୁଇଟି ଭାଗ କଥା କହନ୍ତି । ପ୍ରଥମଟି

ହେଲା ଜୈବିକ ଯୌନ ଶିକ୍ଷା ବା ବାୟୋଲୋଜିକାଲ୍ ସେକ୍ସ ଏଜୁକେଶନ୍ ଏବଂ ଦ୍ୱିତୀୟଟି ହେଲା ସଠିକ୍ ଯୌନ ମନୋବୃତ୍ତିର ସୃଷ୍ଟି – ରାଇଟ୍ ସେକ୍ସ ଆଟିଚୁଡ୍ ।

ଠିକ୍ ଅନୁରୂପ ଶିକ୍ଷା ଯଦି ଆମ ସ୍କୁଲମାନଙ୍କରେ ଦିଆଯାଏ, କିଛି ବିରକ୍ତିକର ପରିବେଶ ଶ୍ରେଣୀଗୃହରେ ଦେଖାଦେଇପାରେ । ସେଥିରୁ କିଛି କଥା ଏଇଠି କହିବାକୁ ଇଚ୍ଛା ।

ସେକ୍ସ ନେଇ ଅନଭିଜ୍ଞ ଥିବା ପିଲାଏ ପ୍ରଶ୍ନ କରିପାରନ୍ତି – ମାସ୍‌ଟୁରେସନ୍ କ'ଣ ? ପ୍ୟୁବରଟି କ'ଣ ? ହୋମୋସେକ୍ସୁଆଲ୍ କ'ଣ ? ଯୌନ ଶିକ୍ଷାର ଏସବୁ ବିଷୟ ରହିବା ଦରକାର ବୋଲି ମାଇକେଲ୍ ଫୋକଲେ଼ ତାଙ୍କର ହିଷ୍ଟ୍ରୀ ଅଫ୍ ସେକ୍ସୁଆଲିଟି ବହିରେ ଲେଖିଛନ୍ତି । ଏହା ଜୈବିକ ଯୌନ ଶିକ୍ଷାର ଅଂଶ ।

ଏ ପ୍ରଶ୍ନର ଉତ୍ତର କିନ୍ତୁ ଶ୍ରେଣୀ ଗୃହରେ ଦେବା ନିଶ୍ଚିତ ଭାବେ କଷ୍ଟକର ହେବ । ଏଥିରେ ବିପଦ ବି ଅଛି । ବିପତ୍ତି ହେଉଛି, ଏଠି ଆମର ସହଶିକ୍ଷା ଚାଲେ । ପୁଅଝିଅ ଏକାଠି ବସି ପାଠ ପଢନ୍ତି । ସାମାଜିକୀକରଣ ପ୍ରକ୍ରିୟାରେ ସେମାନେ ସାମିଲ ହୁଅନ୍ତି ।

ଦ୍ୱିତୀୟ ବିପତ୍ତିଟି ହେଉଛି, ଯୌନ ଉତ୍ତେଜନାର ଭୟ । ଏ ଭୟ ଏଇଥିପାଇଁ ଯେ ସେକ୍ସ ଏକ ପ୍ରଭାବଶାଳୀ ପ୍ରବୃତ୍ତି ଏବଂ ଏହାକୁ ଉତ୍ତେଜିତ କଲେ ଏହା ବିସ୍ଫୋରକ ଅବସ୍ଥାକୁ ଆସିଥାଏ । ଶ୍ରେଣୀ ଗୃହରେ ଯୌନଶିକ୍ଷାର ଉତ୍ତେଜକ ଭାଷା ହୁଏତ ପିଲାଙ୍କ ମଙ୍ଗଳରେ ନ ଆସିପାରେ । ଏକଥା ସତ ଯେ କିଶୋର ଅବସ୍ଥା ଏକ ତରଳ ଅବସ୍ଥା । ଏଥିରେ ସବୁ ବିଷରେ ଜାଣିବାକୁ ଇଚ୍ଛା ଯେପରି ପ୍ରବଳ ଥାଏ, ଏହାକୁ ପ୍ରୟୋଗ କରିବାର ଇଚ୍ଛା ମଧ୍ୟ ସେମିତି ଅଧିକ ଥାଏ । ଉତ୍ତେଜିତ ସେକ୍ସ ପ୍ରବୃତ୍ତି ହୁଏତ ଅନୈତିକ କାର୍ଯ୍ୟ ପାଇଁ ପିଲାଟିର କୋମଳମତି ମନସ୍ତତ୍ତ୍ୱକୁ ପ୍ରଭାବିତ କରିଦେଇପାରେ । ଅପ୍ରାପ୍ତ ଯୌନ ଚେତନା ଏବଂ ଅପରିପକ୍ୱ ବିବେକ ବୃଦ୍ଧିର ଶିକାର ପିଲାଏ ହୋଇପାରନ୍ତି ।

ଜୈବିକ ସେକ୍ସ ଏଜୁକେଶନ୍ ନେଇ ବିପତ୍ତିର ଆଶଙ୍କା କରିବା କୌଣସି ଏକ ନକାରାତ୍ମକ କଳ୍ପନା ନୁହେଁ । ଏହାର ବାସ୍ତବତାର ଚିତ୍ର ଏବେ ଦେଖାଦେଲା ଦିଲ୍ଲୀରେ । ସାଙ୍ଗ ଝିଅଟିର ଅଶ୍ଳୀଳ ଫଟୋ ନେଇ ଏମ୍‌ଏମ୍‌ଏସ୍ କରୁଥିବା ସ୍କୁଲ ପିଲାମାନେ ଧରା ହେଲେ ।

ଏବେ ଏଠି ଯୌନ ଶିକ୍ଷାର ଦ୍ୱିତୀୟ ଭାଗ କଥା – ସଠିକ୍ ସେକ୍ସ ଆଟିଚ୍ୟୁଡ୍ । ଅବଶ୍ୟ ସଠିକ୍ ଯୌନ ମନୋଭାବର ସୃଷ୍ଟି ପାଇଁ ଶ୍ରେଣୀ ଗୃହରେ ଉଦ୍ଦିଷ୍ଟ ଯୌନ ଶିକ୍ଷାର ଏକ ସକାରାତ୍ମକ ପ୍ରଭାବ ଅଛି । ଏ ଶିକ୍ଷାର ରୂପରେଖ ଠିକ୍ ଏମିତି ।

ପିଲାମାନେ ଏହା ଜାଣିବା ଦରକାର ଯେ ପୁଅ ଝିଅ ପରସ୍ପର ପ୍ରତି ଆକର୍ଷଣ ହେବା ଅସ୍ୱାଭାବିକ ନୁହେଁ । ଏହା ଏକ ପ୍ରାକୃତିକ ପ୍ରକ୍ରିୟା । ଏଇ ଆକର୍ଷଣରେ ସେମାନେ କେବଳ ଭଲ ବନ୍ଧୁ ହୋଇପାରିବେ ଏବଂ ବନ୍ଧୁତ୍ୱର ଏଇ ସମ୍ପର୍କ ସାମାଜିକ ଭାବେ ଗ୍ରହଣଯୋଗ୍ୟ ହେବା ଉଚିତ ।

ଏ ସମ୍ପର୍କରୁ ଜଣେ କିନ୍ତୁ ଅନ୍ୟ ଜଣଙ୍କର ପରିସ୍ଥିତିର ଫାଇଦା ନେବା ଠିକ୍ ନୁହେଁ । ଅପ୍ରାପ୍ତ ଯୌନ ଅପବ୍ୟବହାର ମଧ୍ୟ ବନ୍ଧୁତ୍ୱର ପରିପନ୍ଥୀ । ଏହା ପାରସ୍ପରିକ ବିଶ୍ୱାସ, ସମ୍ମାନ ଏବଂ ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଥାଏ । ବନ୍ଧୁତ୍ୱର ଯେ ନିର୍ଦ୍ଦିଷ୍ଟ ଏକ ସୀମାରେଖା ଅଛି, ଯୌନ ଶିକ୍ଷାରେ ପିଲାଙ୍କୁ ଏ ବିଷୟ ବୁଝାଯାଏ ।

ସଠିକ୍ ଯୌନ ମନୋଭାବ ପାଇଁ ଥିବା ଯୌନ ଶିକ୍ଷାରେ ଏହା ବି କୁହାଯାଏ, ସାମୟିକ ଯୌନ ସମ୍ପର୍କରେ ସବୁ ସମୟରେ ବିପଦ ଥାଏ । ସାରା ଜୀବନ ପାଇଁ ସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱକୁ ଏ ବିପଦ ନଷ୍ଟ କରିଦେଇଥାଏ । ସାମାଜିକ ଅପବାଦର ଏକ ଉତ୍ତେଜକ ସ୍ମୃତି ଜୀବନକୁ ବିବ୍ରତ କରି ରଖିଦିଏ ଏବଂ କିଶୋର ଜୀବନର ଏଇ ଯୌନ ଅବସେସନ୍ ତଥା ଅପରିଣାମଦର୍ଶିତା ସମୟ କ୍ରମେ ରୋଗଟିଏ ହୋଇଯାଏ ।

ଯୌନ ଶିକ୍ଷାର ଏ ଦିଗଟି ବେଶ୍ ସକାରାତ୍ମକ ଲାଗୁଥିଲେ ବି ଭାରତୀୟ ଶ୍ରେଣୀ ଗୃହମାନଙ୍କରେ ଏ ସମ୍ପର୍କିତ ଶିକ୍ଷା କେତେଦୂର ଫଳପ୍ରଦ ହେବ, ଏହା ଦେଖିବା କଥା । ଅବଶ୍ୟ ନୀତିବାଦୀମାନେ କହନ୍ତି – ସଠିକ ଯୌନ ମନୋବୃତ୍ତି ସୃଷ୍ଟି ପାଇଁ ଏ ଶିକ୍ଷା ନୈତିକ ଶିକ୍ଷାର ଏକ ଅଂଶ । ଏହାର ନାଁ ସେକ୍ସ ଏଜୁକେଶନ୍ କାହିଁକି ?

ବିଦ୍ୟାଳୟମାନଙ୍କରେ ଯୌନ ଶିକ୍ଷାର ଆବଶ୍ୟକତା ନେଇ ଆଲୋଚନା ବେଳେ ଏ ପ୍ରଶ୍ନ ଆସେ – ପିଲାଟିର ଚରିତ୍ର ଏବଂ ବ୍ୟକ୍ତିତ୍ୱ ଗଠନ ପାଇଁ ଶ୍ରେଣୀଗୃହ ଏକମାତ୍ର ସ୍ଥାନ ନୁହେଁ । ଏଥିପାଇଁ ଆଉ ଦୁଇଟି ଏଜେନ୍‌ସି ଅଛି – ପରିବାର ଏବଂ ସମାଜ । ଏମାନଙ୍କ ଭୂମିକା ତେବେ କ'ଣ ? ଏଇ ଏଜେନ୍‌ସିମାନେ ତ ପିଲାଙ୍କ ପ୍ରତି ଥିବା ସେମାନଙ୍କର ପାରମ୍ପରିକ ଦାୟିତ୍ୱ ଠାରୁ ଦୂରେଇ ଗଲେଣି ।

ଏହା ବି ସତ, ଯୌନ ଶିକ୍ଷା ସମ୍ପୂର୍ଣ୍ଣ ଭାବେ ଏକ ଶିକ୍ଷା ପ୍ରସଙ୍ଗ ନୁହେଁ, ଯାହା

ଶ୍ରେଣୀ ଗୃହରେ ଆଲୋଚିତ ହେବ । ଏହାର ଦୁଇଟି କାରଣ ବି ଅଛି ।

ପ୍ରଥମଟି ହେଲା - ଅନେକ ପିଲା ମୋଟେ ବି ସ୍କୁଲ ଯାଆନ୍ତି ନାହିଁ । ପୁରାପୁରି ଅଶିକ୍ଷିତ । ସେମାନଙ୍କର ମଧ୍ୟ ଯୌନ ସମସ୍ୟା ରହିବ । ଯୌନଶିକ୍ଷା ସେମାନଙ୍କୁ ଦିଆଯିବ କେମିତି ?

ଏବଂ ଦ୍ୱିତୀୟଟି ହେଲା, ବିଦ୍ୟାଳୟମାନଙ୍କରେ ଯେଉଁ ଶିକ୍ଷା ଦିଆଯାଏ ତାର ସଫଳତା ପାଇଁ ପିତାମାତାଙ୍କର ମାର୍ଗ ଦର୍ଶନ ଦେବାର ଆବଶ୍ୟକତା ଅଛି । ପରିବାରର ଭୂମିକା ଏଠି ବ୍ୟାପକ । ସୁତରାଂ ଯୌନଶିକ୍ଷା ଏକ ସ୍ପର୍ଶକାତର ପ୍ରସଙ୍ଗ ହୋଇଥିବା ହେତୁ ଏଥିପାଇଁ ଶ୍ରେଣୀଗୃହର ଯେତିକି ଦରକାର ନାହିଁ, ପରିବାରର ଆବଶ୍ୟକତା ତା' ଠାରୁ ବେଶି । କିନ୍ତୁ ଦୁଃଖ ଯେ ପିଲାଙ୍କ ସହ ବାପା ମା'ଙ୍କ ସମ୍ପର୍କ କେମିତି ଏବେ ଏନେକ ସ୍ଥଳରେ ଏକ ଛୋଟିଆ ଔପଚାରିକତାରେ ସୀମିତ ହୋଇ ଯାଇଛି । ଏକାଠି ହେଲେ ବି ସେମାନଙ୍କର କଥାବାର୍ତ୍ତାରେ ଏବେ ଆତ୍ମୀୟତା ନାହିଁ । କୌଣସି ନୈତିକତାର ଶିକ୍ଷା ନାହିଁ କିମ୍ବା ପଥଭ୍ରଷ୍ଟ ହୋଇ କୌଣସି ଏକ ବଦମାସ ସାମ୍ରାଜ୍ୟରେ ପ୍ରବେଶ କଲେ  ପିଲାଙ୍କର ଯେଉଁ ଯୌନ ସଂକଟ ଦେଖାଦେବ ସେ ସମ୍ପର୍କରେ ବାପା ମା'ମାନେ ପିଲାଙ୍କୁ ସୂଚନା ବି ଦେଉନାହାନ୍ତି ।

ଅତ୍ୟଧିକ ପାରିବାରିକ ଔପଚାରିକତା କିନ୍ତୁ ପ୍ରକୃତରେ ଠିକ୍ ନୁହେଁ । ତଥାପି ପରିବାରର ଶିକ୍ଷାକୁ ଗୌଣ କରାଯାଇ ନ ପାରେ । ପରିବାର ହିଁ ପିଲାଙ୍କ ପାଇଁ ପ୍ରଥମ ବିଶ୍ୱବିଦ୍ୟାଳୟ । ଆଧୁନିକ ବାପା ମା' ବି ଏଠି ପିଲାଙ୍କୁ ନୈତିକ ମୂଲ୍ୟବୋଧ କଥା ତଥା ବ୍ୟବହାରରେ ଭଦ୍ରତା କଥା ଶିଖେଇ ପାରିବେ ।



# ଆତ୍ମହତ୍ୟା ସମାଧାନ ନୁହେଁ

**ଚା**ଷ କାମ ଯାହାର କି ଆନନ୍ଦ ତାହାର, ଏ ପଦ୍ୟ ପଂକ୍ତିଟି କୃଷକମାନଙ୍କୁ ଆଉ ରୁଚିକର ଲାଗୁନି । ଚାଷରେ ଯେ ସୁଖ ଏବଂ ସମୃଦ୍ଧି ନାହିଁ, ଏକଥା ଚାଷୀଟି ଜାଣିଗଲାଣି । ସେଇଥିପାଇଁ କୃଷିରେ ତା'ର ସାମାନ୍ୟ ବିଫଳତା ଆସିଲେ ତାକୁ ହତାଶାବୋଧ ଗ୍ରାସ କରୁଛି ଏବଂ ହତାଶାବୋଧରୁ ଆତ୍ମହତ୍ୟା ପ୍ରବଣତା । କିନ୍ତୁ ବିଡମ୍ବନା ଯେ, କିଛି ରାଜନେତା ଏବଂ ପଦାଧିକାରୀ ଚାଷୀ ଆତ୍ମହତ୍ୟା ଯେ ଏକ ପ୍ରେମଜନିତ ବ୍ୟପାର, ଏପରି କେମିତି ଖୁବ ନିର୍ଲ୍ଲଜ ଭାବେ କୁହନ୍ତି ।

ଏଇ ଅଳ୍ପ କିଛି ବର୍ଷ ଧରି ଓଡିଶାରେ ଚାଷୀ ଆତ୍ମହତ୍ୟା ଖବର ଯେପରି ଚାଞ୍ଚଲ୍ୟ ସୃଷ୍ଟି କରିଛି ଏକଥା ପୂର୍ବରୁ କେବେ ଏଠାରେ ଘଟିନଥିଲା । ରିପୋର୍ଟ ଯାହା, ଏ ପର୍ଯ୍ୟନ୍ତ ଅର୍ଥାତ ୨୦୧୫ ମସିହା ଶେଷ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରାୟ ପଚାଶ ଜଣ ଚାଷୀ ଆତ୍ମହତ୍ୟା କରି ସାରିଲେଣି ଏବଂ ପୁଣି ବି ଗଣାଚାଲିଛି । ଏମାନେ ସମସ୍ତେ କ୍ଷୁଦ୍ର ଏବଂ ନାମମାତ୍ର ଚାଷୀ । ଋଣ କରି ଏମାନେ ସମସ୍ତେ ଚାଷ କରିଥିଲେ । ମରୁଡ଼ି ଯୋଗୁଁ ଏମାନଙ୍କର ଫସଲ ନଷ୍ଟ ହୋଇଗଲା । ସାହୁକାରର ଋଣ ବୋଝ ଏମାନଙ୍କ ପାଇଁ ଥିଲା ଅସହ୍ୟ । ଏମାନେ ଦାଦନ ଶ୍ରମିକ ହୋଇପାରିନଥିଲେ କିମ୍ବା ନିଜ ସମ୍ପତ୍ତି ବିକି ଋଣ ସୁଝିବାର ଉପାୟ ପାଇ ନଥିଲେ । ଶେଷରେ ସେମାନେ ଆତ୍ମହତ୍ୟା କରିଦେଲେ । ଏକଥା ସଫେଇରେ କହନ୍ତି ଆତ୍ମହତ୍ୟା କରିଥିବା କୃଷକମାନଙ୍କର ଆତ୍ମୀୟମାନେ ।

ସତକଥା ହେଲା, ଗତ ଦଶନ୍ଧି ଧରି ଚାଷୀ ଆତ୍ମହତ୍ୟା ଏ ଦେଶର ଉଭୟ କେନ୍ଦ୍ର ତଥା ରାଜ୍ୟ ସରକାରମାନଙ୍କ ପାଇଁ ଚିନ୍ତାର ବିଷୟ ହୋଇଛି । ପ୍ରଥମେ ଏହା ମହାରାଷ୍ଟ୍ର, ଆନ୍ଧ୍ର, କର୍ଣ୍ଣାଟକ ରାଜ୍ୟରେ ସୀମିତ ଥିଲା । ବର୍ତ୍ତମାନ ଏହା ସବୁ ରାଜ୍ୟକୁ ବ୍ୟାପିଛି । ଏହା ଏବେ ସର୍ବଭାରତୀୟ ଘଟଣା । ଏଥିପାଇଁ ନୀତି ନିର୍ଦ୍ଧାରଣ ହେଉଛି । ସ୍ୱତନ୍ତ୍ର ପ୍ୟାକେଜର ବ୍ୟବସ୍ଥା ହେଉଛି । ଗଣମାଧ୍ୟମରେ ହାହୋଲା ଚାଲିଛି । କିନ୍ତୁ ଦୁଃଖ କଥା ହେଲା, ଚାଷୀ ଆତ୍ମହତ୍ୟା ଏଠି କମୁନି । ଏକଥା ହୋଇପାରେ ଚାଷୀ ଆତ୍ମହତ୍ୟା ରୋକିବାକୁ ଏ ପର୍ଯ୍ୟନ୍ତ ଆମେ ଠୋସ୍ ଉପାୟ ଖୋଜି ପାଇନାହୁଁ ।

ଏଇ ଅଳ୍ପଦିନ ତଳେ ଭାରତର ମାନ୍ୟବର ସୁପ୍ରିମକୋର୍ଟ ଚାଷୀ ଆତ୍ମହତ୍ୟା ନେଇ ସରକାରୀ ଉଦାସୀନତା ଲକ୍ଷ୍ୟ କରି କେନ୍ଦ୍ର ସରକାରଙ୍କୁ ଭର୍ତ୍ସନା କରିବାର ଖବର ଆସିଛି। କାରଣ ହେଉଛି, ବିଶିଷ୍ଟ କୃଷିବିତ୍ ଏମ୍.ଏସ୍. ସ୍ୱାମୀନାଥନଙ୍କ ରିପୋର୍ଟ କାହିଁକି କେନ୍ଦ୍ର ସରକାର ପୁରାପୁରି ଲାଗୁ କରୁନାହାନ୍ତି ବୋଲି ସ୍ପଷ୍ଟୀକରଣ ଦେବାକୁ ମାନ୍ୟବର କୋର୍ଟ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ। ସ୍ୱାମୀନାଥନଙ୍କ ରିପୋର୍ଟରେ ଅଛି – ଚାଷୀ ଆତ୍ମହତ୍ୟାର ସମୀକ୍ଷା ସରକାର ନିୟମିତ ଭାବେ କରିବେ। କିନ୍ତୁ ସ୍ୱାମୀନାଥନ ରିପୋର୍ଟ ଆସିବାର ଆଠବର୍ଷ ଭିତରେ କେନ୍ଦ୍ର ସରକାର କୃଷକ ଆତ୍ମହତ୍ୟାର କାରଣ ଏବଂ ନିରାକରଣ ଖୋଜିବାକୁ ମାତ୍ର ପାଞ୍ଚ ଥର ମିଟିଂ କରିଛନ୍ତି। ଏହା ସରକାରୀ ଉଦାସୀନତା ନୁହେଁ ତ ଆଉ କ'ଣ ?

ଜାତୀୟ ଅପରାଧ ରେକର୍ଡ଼ ବ୍ୟୁରୋ ରିପୋର୍ଟ ଅନୁସାରେ ୨୦୧୩ ମସିହାରେ ଭାରତରେ ଚାଷୀ ଆତ୍ମହତ୍ୟାର ସଂଖ୍ୟା ଥିଲା ଏଗାର ହଜାର ସାତଶହ। ୨୦୧୪ ମସିହାରେ ଏହା ଥିଲା ବାର ହଜାର ତିନି ଶହ ଏବଂ ୨୦୧୫ ମସିହାରେ ରିପୋର୍ଟ ଏ ପର୍ଯ୍ୟନ୍ତ ମିଳିନାହିଁ। ୨୦୦୪ ମସିହାରେ ଭାରତରେ ସବୁଠାରୁ ବେଶି ଚାଷୀ ଆତ୍ମହତ୍ୟା କରିଥିଲେ। ଏମାନଙ୍କ ସଂଖ୍ୟା ଥିଲା ପ୍ରାୟ ଅଠର ହଜାର।

ଭାରତୀୟ ଅପରାଧ ରେକର୍ଡ଼ ବ୍ୟୁରୋ ଚାଷୀ ଆତ୍ମହତ୍ୟା ନେଇ କିଛି କାରଣ ଦିଏ। ଏଇ କାରଣକୁ ଆତ୍ମହତ୍ୟା ଉପରେ ଗବେଷଣା କରୁଥିବା ବିଦ୍ୱାନ୍‌ମାନେ ବି ସମର୍ଥନ କରନ୍ତି। ଏଇ କାରଣ ଭିତରେ ଅଛି, କୃଷକର ଦେବାଳିଆ ପଣ, ଋଣ ବୋଝ, ଫସଲ ହାନୀ, ରୋଗ, ମାନସିକ ଅସନ୍ତୁଳନ ଏବଂ ନିଶା ସେବନ ଆତ୍ମହତ୍ୟାର ପ୍ରମୁଖ କାରଣ ଭାବେ ଗଣାଯାଏ।

ଏହା ନିଶ୍ଚିତ ଯେ, ଜଣେ କ୍ଷୁଦ୍ର ତଥା ନାମମାତ୍ର ଚାଷୀ ପାଇଁ ଋଣବୋଝ ହିଁ ବଡ଼ ସମସ୍ୟା ଏବଂ ଏହି ସମସ୍ୟା ଭାଗଚାଷୀଟି ପାଇଁ ବେଶି ଭୟଙ୍କର ହୋଇଯାଉଛି। ନିଜ ସଂପତ୍ତି ଏବଂ ବିଭିନ୍ନ ସୂତ୍ରରୁ କରିଥିବା ଋଣ ଭିତରେ ଯେତେବେଳେ ପାର୍ଥକ୍ୟ ଅଧିକ ହୋଇଯାଉଛି, କୃଷକଟି ତା'ର ମାନସିକ ଭାରସାମ୍ୟ ହରାଇ ବସୁଛି। ଏହା ବି ସତ ଯେ, ଦେଶରେ ସାମଗ୍ରିକ ଅଭିବୃଦ୍ଧି ଘଟିଥିଲେ ବି ଗରିବର ଗରିବୀ ବଢ଼ିଛି। ପାରିବାରିକ ସଂପତ୍ତି ତା'ର ହ୍ରାସ ପାଇଛି। ଅଥଚ ଧନୀମାନେ ଅଧିକ ଧନୀ ହୋଇଛନ୍ତି। ଆଶା ଏକ ସଫଳତାର ତାରତମ୍ୟ ହିଁ ହତାଶାବୋଧ ଆଣୁଛି। ଆତ୍ମହତ୍ୟା କରି ଜୀବନ ନିଃଶେଷ କରିଦେବାର ପ୍ରବଣତା ବଢ଼ାଉଛି। ଆତ୍ମହତ୍ୟାର କାରଣ ଦେଲାବେଳେ ଏପରି ଏକ ତାତ୍ତ୍ୱିକ ସିଦ୍ଧାନ୍ତ ବି ବିଶିଷ୍ଟ ସମାଜଶାସ୍ତ୍ରୀ 'ଦୁର୍ଖିମ'

ଦେଇଥିଲେ। ଭାରତୀୟ କୃଷକର ଆତ୍ମହତ୍ୟା ପାଇଁ ଦୁର୍ଖିମଙ୍କର ଏଇ ସିଦ୍ଧାନ୍ତ ଏବେ କାରଣ ହୋଇ ଯାଇଛି।

କୃଷକ ଆତ୍ମହତ୍ୟା ରୋକିବାର ବାଟ କ'ଣ ବୋଲି ଏବେ ପ୍ରଶ୍ନ ଆସୁଛି। ଅନେକ କହନ୍ତି, ସ୍ୱତନ୍ତ୍ର ପ୍ୟାକେଜ୍ ଏହାର ସ୍ଥାୟୀ ସମାଧାନ ନୁହେଁ। ୨୦୦୮ ମସିହାରେ ତତ୍କାଳୀନ ୟୁପିଏ ସରକାର କୃଷକମାନଙ୍କ ପାଇଁ କୃଷି ଋଣ ଛାଡ଼ କରିଥିଲେ। ଏଇ ଋଣ ଛାଡ଼ ବ୍ୟବସ୍ଥାରେ ଭାରତର ପ୍ରାୟ ତିନିକୋଟି ଷାଠିଏ ଲକ୍ଷ କୃଷକ ଉପକୃତ ହୋଇଥିଲେ। ଏଥିପାଇଁ ସରକାରୀ ରାଜକୋଷରୁ ପ୍ରାୟ ୬୫ହଜାର କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା।

ଓଡ଼ିଶାରେ ବି କୃଷକମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ୟାକେଜ୍ ଏବେ ଘୋଷଣା ହୋଇଛି। ସ୍ୱତନ୍ତ୍ର କୃଷି ବଜେଟର ବ୍ୟବସ୍ଥା ଏଠି ରହିଛି। ତଥାପି ଓଡ଼ିଶାରେ ଚାଷୀ ଆତ୍ମହତ୍ୟା ଅବ୍ୟାହତି ରହିବାର ଖବର ଆସୁଛି। ସମ୍ଭବତଃ ସରକାରଙ୍କ ଉପରେ ପୀଡ଼ିତ କୃଷକମାନଙ୍କର ଭରସା ପାଉନି।

ଚାଷୀ ଆତ୍ମହତ୍ୟାର ନିରାକରଣ ପାଇଁ ଏକ ଦୀର୍ଘ ମିଆଦୀ ଯୋଜନା ଉପରେ ଏବେ ଜୋର ଦେବାକୁ ପ୍ରସ୍ତାବ ଆସିଲାଣି। ରୋଗର ଚିକିତ୍ସା ଅପେକ୍ଷା ପ୍ରତିଶେଧକ ଉପରେ ଗୁରୁତ୍ୱ ଦେବାକୁ ବିଦ୍ୱାନ୍‌ମାନେ କହିଲେଣି। ଏଇସବୁ ପ୍ରସ୍ତାବରେ ଦୁଇଟି ଦିଗ କଥା ଉଲ୍ଲେଖ ହେଉଛି। ପ୍ରଥମଟି ହେଉଛି ସାମାଜିକ ଦିଗ ଏବଂ ଦ୍ୱିତୀୟଟି ହେଉଛି ଅର୍ଥନୈତିକ ଦିଗ। ସାମାଜିକ ଦିଗରେ କୃଷକମାନଙ୍କର ଶିକ୍ଷା, ସାକ୍ଷରତା ଏବଂ ଚିକିତ୍ସା ସୁବିଧାର ହାର ବୃଦ୍ଧି କଥା କୁହାଯାଇଛି। କୌଣସି ଏକ ସମସ୍ୟାକୁ ସମ୍ମୁଖୀନ ହେବାକୁ ଯେଉଁ ସାହସ ଏବଂ ସମ୍ବେଦନଶୀଳତା ଦରକାର ଏବେ ପ୍ରାୟଏହା କୃଷକଙ୍କ ଭିତରେ ନାହିଁ। ସେଥିପାଇଁ କାଉନସେଲିଙ୍ଗ୍‌ର ଆବଶ୍ୟକତା ରହିଛି।

ଅର୍ଥନୈତିକ ଦିଗରେ ଅଛି ଋଣଗ୍ରସ୍ତ କୃଷକମାନଙ୍କୁ ଚିହ୍ନଟ କରିବାର ପ୍ରକ୍ରିୟା। ପ୍ରସ୍ତାବ ଆସେ, ଭାରତରେ ଜାତୀୟକରଣ ବ୍ୟାଙ୍କମାନେ ପ୍ରତ୍ୟେକ ଅଂଚଳର ଋଣ କରିଥିବା କୃଷକମାନଙ୍କର ତାଲିକା ପ୍ରସ୍ତୁତ କରିବା ଦରକାର। କେଉଁ କୃଷକ କେଉଁ କେଉଁ ଜାତୀୟକରଣ ବ୍ୟାଙ୍କ, ଗ୍ରାମୀଣ ବ୍ୟାଙ୍କ ଏବଂ ମାଇକ୍ରୋ ଫାଇନାନ୍ସରୁ କେତେ ଋଣ ନେଇଛି ତା'ର ହିସାବ ରଖିବା ଦରକାର ଏବଂ ବ୍ୟାଙ୍କ ପ୍ରସ୍ତୁତ କରିଥିବା ଋଣଗ୍ରସ୍ତ କୃଷକର ତାଲିକା ଉପରେ ଗ୍ରାମାଞ୍ଚଳର ରାଜସ୍ୱ ଅଧିକାରୀମାନେ ନଜର ରଖିବାକୁ ସରକାରୀ ନିର୍ଦ୍ଦେଶ ରହିବା ଉଚିତ୍। ଏ ପ୍ରକ୍ରିୟା ନିଶ୍ଚୟ କଷ୍ଟ। କିନ୍ତୁ ବ୍ୟାଙ୍କ ଏବଂ ରାଜସ୍ୱ ଅଧିକାରୀଙ୍କ ନିଷ୍ଠା ରହିଲେ ମାନସିକ ଭାବେ ଦୁର୍ବଳ କୃଷକର ଚିହ୍ନଟ

କରାଯାଇପାରିବ ଏବଂ ତା'ର ଋଣ ବୋଝରେ ସମାଧାନ କରାଯାଇ ଭବିଷ୍ୟତ ଆତ୍ମହତ୍ୟାରୁ ତାକୁ ରକ୍ଷା କରାଯାଇ ପାରିବ। ନାବାର୍ଡ଼ ଏବଂ ରିଜର୍ଭ ବ୍ୟାଙ୍କର ସହାୟତା ଏଥିରେ ବି ରହିବା ଦରକାର।

କୃଷକ ଆତ୍ମହତ୍ୟା ରୋକିବାର ଦାୟିତ୍ୱ ବି ଆମ ସମସ୍ତଙ୍କର। ଏଥିରେ ସାମାଜିକ କର୍ମୀ, ଲେଖକ, ଫିଲ୍ମକାରମାନଙ୍କର ଦାୟିତ୍ୱ ବେଶି। ଚାଷୀ ଆତ୍ମହତ୍ୟାର ସାମାଜିକ ପ୍ରଭାବ ନେଇ ସଚେତନତା ସୃଷ୍ଟି କରିବା ଏମାନଙ୍କର କାମ ହେବା ଦରକାର। ୨୦୦୬ ମସିହାରେ ପ୍ରତିଷ୍ଠିତ ସିନେମା ନିର୍ମାତା ସୁମିତ୍ ଖାନ୍ନାଙ୍କର ଏକ ଡକ୍ୟୁମେଣ୍ଟାରୀ ପ୍ରସ୍ତୁତ ହୋଇଥିଲା । ଖାନ୍ନା ତାଙ୍କର ଏଇ ଅନୁସନ୍ଧାନକାରୀ ଡକ୍ୟୁମେଣ୍ଟାରୀରେ ଭାରତର ଖାଦ୍ୟଶସ୍ୟ ଉତ୍ପାଦନ ଏବଂ ଏଥିନେଇ ଥିବା କୃଷି ସମସ୍ୟା ଉପରେ ଆଲୋକପାତ କରିଥିଲେ। ଏହା ଏକ ଚମତ୍କାର ଡକ୍ୟୁମେଣ୍ଟାରୀ ଥିଲା। ଏହା ଜାତୀୟ ପୁରସ୍କାର ବି ପାଇଥିଲା।

ଅସଲ କଥାଟି ହେଲା, ଆତ୍ମହତ୍ୟା କରୁଥିବା କୃଷକ ବୋଧେ ତା'ର ମୃତ୍ୟୁପରେ ତା' ସ୍ତ୍ରୀ ଏବଂ ପିଲାଙ୍କ ଉପରେ କି ପ୍ରଭାବ ପଡ଼ିବ, ଏହା ଚିନ୍ତା କରିନଥାଏ। ବାସ୍ତବତା ହେଉଛି, କୃଷକଟିର ମୃତ୍ୟୁ ପରେ ତା'ର ସମସ୍ତ ଋଣଭାର ତା' ସ୍ତ୍ରୀ ଗ୍ରହଣ କରେ। ଋଣରୁ ମୁକ୍ତି ପାଇଁ ବିଧବା ସ୍ତ୍ରୀ ପର ଘରେ କାମ କରେ। ବନ୍ଧକ ଶ୍ରମିକ ସେ ହୁଏ ଏବଂ ବଡ଼କଥା ହେଲା, ନିଜେ ବିବାହ କରିବାକୁ ଚାହୁଁଥିଲେ ବି ଋଣ ଭାରରେ ବୁଡ଼ିଥିବା ସ୍ତ୍ରୀକୁ କୌଣସି ପୁରୁଷ ଗ୍ରହଣ କରିବାକୁ ରାଜି ହୁଏ ନାହିଁ। ଆତ୍ମହତ୍ୟା ତେଣୁ ସମାଧାନ ନୁହେଁ । ନିଜ ଆଦରଣୀୟା ସ୍ତ୍ରୀ ଏବଂ ପିଲାଙ୍କୁ ଅନ୍ୟ ଘରେ ବଂଧକ ରଖି ନିଜକୁ ହତ୍ୟାକରିଦେବାରେ ଚାଷୀଟିର କେଉଁ ସାହସ ଥାଏ । କୁହାଯାଏ, ଚାଷୀ ପରା ନିଳଠା । ଇନ୍ଦ୍ରକୁ ଭୟ କରୁନଥିବା ଚାଷୀ କିପରି ଋଣକୁ ଭୟ କରୁଛି, ଏହାହିଁ ଆଶ୍ଚର୍ଯ୍ୟ ।

ସଂକ୍ଷିପ୍ତରେ କହିଲେ, ଚାଷୀ ଆତ୍ମହତ୍ୟା ଏକ ସାମାଜିକ ପ୍ରସଙ୍ଗ। ବ୍ୟକ୍ତିଗତ ନୁହେଁ। ଏହି ପ୍ରସଂଗ କ୍ରମଶଃ ସମସ୍ୟାରୁ ସଂକଟ ହୋଇ ଗଲାଣି। ଏହାର ନିରାକରଣ ପାଇଁ ବ୍ୟାପକ ସଚେତନତା କ୍ୟାମ୍ପେନର ଆବଶ୍ୟକତା ଆସିଛି ।



# ଦାରିଦ୍ର୍ୟ ଓ ଡାହାଣୀ

ପାଖରେ ବସୁଥିବା ଜଣେ ବନ୍ଧୁ ଏବେ ଦିନେ ତାଙ୍କ ମୋବାଇଲରେ ଆସିଥିବା ଏସ୍‌ଏମ୍‌ଏସ୍ ଖବର ପଢ଼ି ମୋତେ କହିଲେ, 'ବୁଝିଲ, ଦୁଇଜଣ ଆଦିବାସୀ ମହିଳାଙ୍କୁ ଡାହାଣୀ ଅଭିଯୋଗରେ ଆଜି ହତ୍ୟା କରାଯାଇଛି । ଏଇ ଏବେ ଖବର ଆସିଛି ।' ଉତ୍ତର ଦେଲି, 'ଏହା କିଛି ନୂଆ କଥା ନୁହେଁ । ଭାରତ ବର୍ଷରେ ଏହା ଏକ ସାଧାରଣ ନିୟମିତ ଘଟଣା । ପ୍ରତିବର୍ଷ ଏପରି ଘଟଣା ଏଠି ଘଟୁଛି । ଏ ଦେଶର କେଉଁଠି ନା କେଉଁଠି କାହାକୁ ନା କାହାକୁ ଡାହାଣୀ କହି ଅପମାନିତ କରାଯାଉଛି । ଅଭିଯୁକ୍ତ ବ୍ୟକ୍ତିର ମୁଣ୍ଡ ଲଣ୍ଡା କରାଯାଉଛି । ମଣିଷ ବିଷ୍ଟା ଖାଇବାକୁ ବାଧ କରାଯାଉଛି । ମୁହଁରେ କଳା ବୋଳା ଯାଉଛି । ଉଲଗ୍ନ କରାଇ ସାଧାରଣରେ ଚଲାଇ ଚଲାଇ ନିଆଯାଉଛି ଏବଂ ପରିଶେଷରେ ଅନେକ ସ୍ଥାନରେ ଡାହାଣୀ ନାଁ ଦେଇଥିବା ନିଃସହାୟ ମହିଳାକୁ ହତ୍ୟା କରାଯାଉଛି । ଉନ୍ନତ ଭାରତରେ ଏହା ହିଁ ଏବେ ବିଡମ୍ବନା । ଏପରି ମଧ୍ୟଯୁଗୀୟ ଚିନ୍ତା ଏଠାରୁ ଏବେ ବି ଯାଇନି । ଆଶ୍ଚର୍ଯ୍ୟ ଯେ ତଥାପି ମଧ ଆମେ ବୃହତ୍ ଶକ୍ତି ହେବାର ସ୍ୱପ୍ନ ଦେଖୁଛେ ଏବଂ ଏହା ହାସଲ ପାଇଁ ଚେଷ୍ଟାରେ ବି ଅଛୁ । ଏପରି ଧାରଣାଟିଏ ବି ସୃଷ୍ଟି କରିଦିଆଯାଇଛି ଯେ ଭାରତ ବର୍ଷର ଯେକୌଣସି ଦରିଦ୍ର ଏବଂ ଶକ୍ତିହୀନ ମହିଳାଟିଏ ଭିତରେ ଡାହାଣୀର ଉପାଦାନ ଅଛି । ଏହାକୁ କେବଳ ଶୋଷଣ କରିପାରିଲେ ହେଲା ।'

ହଁ, ପାଠକ ବନ୍ଧୁ । ସେ ଦିନର ସେ ଏସ୍‌ଏମ୍‌ଏମ୍ ଖବର ଆଜିର ଏ ପ୍ରବନ୍ଧ ପାଇଁ ଖୋରାକ ଯୋଗାଇଛି । ଦରିଦ୍ରମାନେ ଯେ ସ୍ୱାର୍ଥନ୍ୱେଷୀ ଲୋକଙ୍କର ଶିକାର ହେଉଛନ୍ତି ଠିକ୍ ତାକୁ ହିଁ ନେଇ ଆଜିର ଏ ସମାଜଶାସ୍ତ୍ରୀୟ ଆଲେଖ୍ୟ ।

କୌଣସି ଧନୀ ଶିକ୍ଷିତ ମହିଳାଙ୍କୁ କେବେ କେଉଁଠି ଡାହାଣୀ କହି ନିର୍ଯାତନା ଦିଆଯିବାର ନଜିର ନାହିଁ । ଡାଆଣୀ ହେବାକୁ କିଛି ସହଜ ଟାର୍ଗେଟ ଅଛନ୍ତି । ସେମାନେ ଦରିଦ୍ର ଏବଂ ନିଃସହାୟ ମହିଳା ହୋଇଥିବେ । ଏମାନେ ସମସ୍ତେ ଥିବେ ଗ୍ରାମୀଣ ଆଦିବାସୀ କିମ୍ବା ଦଳିତ ଶ୍ରେଣୀର । ଏମାନେ ଅଧିକାଂଶ ବିଧବା ଏକକ ବା ଭିନ୍ନକ୍ଷମ ହୋଇଥିବେ । ଏମାନଙ୍କ ଘରେ ପୁରୁଷ ଲୋକ ନଥିବେ ଏବଂ ବଡ କଥା

ହେଲା, ଡାହାଣୀର ଅପବାଦ ଦେଉଥିବା ବ୍ୟକ୍ତି ଉଚ୍ଚ ଜାତିର ହୋଇଥିବେ । ଏ ହେଉଛି ଡାହାଣୀ ବଦନାମ ପାଉଥିବା ଥିବା ପୀଡ଼ିତା ଏବଂ ଏ ପୀଡ଼ା ଦେଉଥିବା ଖଳନାୟକଙ୍କ ପ୍ରକାର ଆଉ ଚରିତ୍ର ।

ଭାରତର ଏ ଡାହାଣୀ କାହାଣୀ ବେଶି ବିଦେଶୀ ଗଣ ମାଧ୍ୟମରେ ପ୍ରଚାରିତ ହୁଏ । ବିଦେଶୀ ମିଡିଆମାନେ ଭାରତରେ ଏପରି ସଂବାଦକୁ ପୃଥିବୀ ସାରା ପ୍ରସାର କରି ଭଲ ବ୍ୟବସାୟ କରନ୍ତି । ଭାରତର ପୁରାତନ ପ୍ରାଚ୍ୟ ସଂସ୍କୃତି ପ୍ରତି ତାଚ୍ଛଲ୍ୟ କରନ୍ତି ଏବଂ ସାପୁଆ କେଳାର ଦେଶରେ କୁତ୍ସିତ ଅସଂଗତିରୁ ଏ ଦେଶ ଯେ ଏବେ ମୁକ୍ତି ପାଇପାରି ନାହିଁ, ଏଥିନେଇ ଟିପପ୍ପଣୀ ଦିଅନ୍ତି ।

ଡାହାଣୀ କଥା କହିଲା ବେଳେ ବିଦେଶୀ ଗଣମାଧ୍ୟମ ଭଲ କାହାଣୀ ବି ତିଆରି କରିଦିଏ । ଏ କାହାଣୀରେ ଥାଏ ଗାଁ ରେ ରହୁଥିବା କେତେକ ମହିଳା କୁଆଡେ କୁଟାଖିଅରେ ଅନ୍ୟ ଜଣକଠାରୁ ରକ୍ତ ଶୋଷି ନେଇଯାଆନ୍ତି । ରାତି ଅଧରେ ଅଖାଦ୍ୟ ଖାଇବାକୁ ଏମାନେ ବାହାରି ଯାଆନ୍ତି । ମଣିଷର ଖୋଳ ଭିତରେ ଏମାନେ ପଶୁ ବା ଡାହାଣୀ ହୋଇପାରନ୍ତି । ସୁତରାଂ ପ୍ରଗତି ଏବଂ ବିଜ୍ଞାନର ଡିଣ୍ଡିମ ପିଟୁଥିବା ଭାରତ ଯେ ଏକ ମିଛ ପ୍ରଗତିଶୀଳ ଭାରତ, ଏମାନେ ଏପରି ପ୍ରଚାର କରିଦିଅନ୍ତି ।

ଅବଶ୍ୟ ବିଦେଶୀ ଗଣମାଧ୍ୟମ ଏପରି ଆମକୁ ତାଚ୍ଛଲ୍ୟ କରିବାର ସୁଯୋଗ ଆମ ଦେଶୀ ଗଣମାଧ୍ୟମ ତାଙ୍କୁ ଦେଇଛନ୍ତି । ଏଠାରେ ଗଣମାଧ୍ୟମ ମଧ୍ୟ ଡାହାଣୀର ଏ କୁତ୍ସିତ ସମ୍ବାଦ ଆମ ପାଖରେ ପହଞ୍ଚାଇ ଥାଏ । ଉଭୟ ପ୍ରିଣ୍ଟ୍ ଏବଂ ବୈଦ୍ୟୁତିକ ଗଣମାଧ୍ୟମ ଏହାର ପ୍ରସାର କରେ । ଡାହାଣୀ ନାଁରେ ହେଉଥିବା ନିର୍ଯାତନା ଏବଂ ହତ୍ୟାର ବିବରଣୀ ଦିଏ ଏବଂ ଅସଲ କଥା ହେଲା, ଭାରତରେ ମଧ୍ୟବର୍ଗୀ ଲୋକଙ୍କ ପାଇଁ ଏହା ଭଲ ଆଲୋଚନାର ବିଷୟ ହୋଇଯାଏ । ଦପ୍ତର, ଦୋକାନ, କଫି ହାଉସ୍ ଏବଂ ଗୁଲିଖଟି ଆସରରେ ଏ ଆଲୋଚନା ଚାଲେ । ଡାହାଣୀ ପ୍ରସଙ୍ଗକୁ ବିଶ୍ୱାସ କରିବାରେ ଉଭୟ ବିଦେଶୀ ତଥା ଭାରତୀୟ ମଧ୍ୟବିତ୍ତ ଶ୍ରେଣୀର ମାନସିକତା ପ୍ରାୟ ଏକା ।

ଏ ଦେଶର ମଧ୍ୟବର୍ଗୀ ଏ ପୃଥିବୀକୁ ଦୁଇଟି ଶ୍ରେଣୀର ବିଭକ୍ତ କରିଦେଇଛି - ଶିକ୍ଷିତ ଏବଂ ଅଶିକ୍ଷିତ । ଅଶିକ୍ଷିତ ପୃଥିବୀରେ ଅଛନ୍ତି ଗ୍ରାମୀଣ ପଛୁଆ ଦଳିତ, ଆଦିବାସୀ ପ୍ରତ୍ୟାଖିତ ମହିଳା । ଏଇ ପୃଥିବୀରେ ଡାହାଣୀର ଘଟଣା ସୃଷ୍ଟି ହୁଏ ଏବଂ ଚାଲେ । ଏ ଦୁନିଆରେ ଅନ୍ଧବିଶ୍ୱାସର ରାଜୁତି ଥାଏ । ସ୍ପଷ୍ଟ କହିଲେ ଅନ୍ଧବିଶ୍ୱାସ,

ଦାରିଦ୍ର୍ୟ ଏବଂ ଅଜ୍ଞତା ଡାହାଣୀ ପରି ଘଟଣାକୁ ଏଠି ଜନ୍ମ ଦିଏ ଏବଂ ବଞ୍ଚାଏ ।

ଏକଥା ବି ସତ ନୁହେଁ ଯେ, ଅନ୍ଧବିଶ୍ୱାସ କେବଳ ଗାଁ ଏବଂ ଦଳିତ ତଥା ଦରିଦ୍ର ଶ୍ରେଣୀ ଭିତରେ ସୀମାବଦ୍ଧ ହୋଇରହିଛି । ସହର ଏବଂ ଧନୀ ଶ୍ରେଣୀ ଭିତରେ ମଧ୍ୟ ଅନ୍ଧବିଶ୍ୱାସ ବସା ବାନ୍ଧି ଅଛି । ଅନ୍ଧବିଶ୍ୱାସ ଭୟରୁ ସୃଷ୍ଟି ହୁଏ ଏବଂ ଭୟ ହେଉଛି ପ୍ରତ୍ୟେକ ମଣିଷର ଏକ ସହଜାତ ପ୍ରକୃତି । କୌଣସି ଦୁଃଖ ଏବଂ ପ୍ରତ୍ୟାଖ୍ୟାନରେ ସଢୁଥିବା ବ୍ୟକ୍ତିଟି ଅନ୍ଧବିଶ୍ୱାସକୁ ସହଜରେ ବିଶ୍ୱାସ କରିଥାଏ ଏବଂ କିଛି ସ୍ୱାର୍ଥନ୍ୱେଷୀ ଲୋକ ସରଳ ଲୋକଙ୍କର ଏ ବିଶ୍ୱାସର ଫାଇଦା ନିଅନ୍ତି । କ୍ଷମତା ଏବଂ ଧର୍ମକୁ ଏମାନେ ଏଥିପାଇଁ ବ୍ୟବହାର କରନ୍ତି ଏବଂ ନିଜ ଦୁଃଖରୁ ରାହା ଖୋଜୁଥିବା ମଣିଷ ମାନଙ୍କ ପାଇଁ ଏ ଚାଲାକ ଲୋକ ସବୁ ଡାହାଣୀର ଉପଖ୍ୟାନ କହି ଦିଅନ୍ତି ।

ଡାହାଣୀ ବା ଉଇଚ ଉପରେ ଏକ ଗବେଷଣାତ୍ମକ ରିପୋର୍ଟ ଏ ଲେଖକ ଏବେ ପଢୁଥିଲା । ଏ ରିପୋର୍ଟ କିଛି ଏନ୍‌ଜିଓ ପ୍ରସ୍ତୁତ କରିଥିଲେ ଏବଂ ଏପରି ରିପୋର୍ଟ ପ୍ରସ୍ତୁତି ପାଇଁ କିଛି ସମାଜଶାସ୍ତ୍ରୀ ଗବେଷକମାନେ ବି ସାହାଯ୍ୟ କରିଥିଲେ । ଏ ରିପୋର୍ଟରେ ଅଛି, ଡାହାଣୀ ପ୍ରସଙ୍ଗ ହେଉଛି କିଛି ଧନୀ ଧାର୍ମିକ ବ୍ୟକ୍ତିଙ୍କର କାମ । ଏମାନେ ଗାଁରେ ଅଶିକ୍ଷିତ ମାନଙ୍କୁ ବୁଝାଇ ଦିଅନ୍ତି ଯେ, ଗାଁ କୂଅରୁ ଅସମୟରେ ପାଣି ଶୁଖିଯିବା, ସମୟରେ ବର୍ଷା ନହେବା, ଫସଲ ଉଜୁଡିଯିବା, ଘରେ କାହାରି ବାରମ୍ବାର ରୋଗ ହେବା ଏବଂ ଅସ୍ୱାଭାବିକ ଭାବେ କେଉଁ ଘରେ କାହାର ମୃତ୍ୟୁ ହେବା,ଏସବୁ ହେଉଛି ଡାହାଣୀର କାରନାମା । ଗାଁରେ ଡାହାଣୀଟିଏ ଥିଲେ ଏସବୁ କାଣ୍ଡ ଘଟେ ଏବଂ ଡାହାଣୀ ଏହା ଘଟାଏ । ସେମାନେ ଏକଥା ବି ବୁଝାଇ ଦିଅନ୍ତି, ଡାହାଣୀ ଏକ ଆଭ୍ୟନ୍ତରୀଣ ମନସ୍ତାତ୍ତ୍ୱିକ ସତ୍ତା । ଏହା ସ୍ତ୍ରୀ ଲୋକର ପେଟ ଭିତରେ ହିଁ ଥାଏ । ରାତି ଅଧରେ ସୁଯୋଗ ଉଣ୍ଡି ସେ ବାହାରକୁ ଯାଇ ସାଧାରଣ ଲୋକଙ୍କ କ୍ଷତି ଘଟାଏ । ଡିକ୍ସନାରୀ ଅଫ୍ ସୋସିଓଲଜିରେ ଗର୍ଡନ ମାର୍ଶାଲ ଏକଥା ଲେଖିଛନ୍ତି ।

ଏଇ ପ୍ରଚାରକୁ ଅନେକ ଅସହାୟ ଅଶିକ୍ଷିତ ଲୋକ ଗ୍ରହଣ କରିଯାଆନ୍ତି । ଦୁଃଖରୁ ମୁକ୍ତି ପାଇଁ ତେଣୁ ସାମୁହିକ ଭାବେ ଡାହାଣୀର ଖୋଜା ଚାଲେ ଏବଂ ଡାହାଣୀର ସନ୍ଧାନ ମିଳିଗଲେ ତା' ଉପରେ ଅତ୍ୟାଚାର ଆରମ୍ଭ ହୁଏ । ଅନେକ ସମୟରେ ତାକୁ ପୋଡି ମାରି ବି ଦିଆଯାଏ ।

ଅନ୍ଧବିଶ୍ୱାସ ଅବଶ୍ୟ ଡାହାଣୀ ସମସ୍ୟାର ଏକମାତ୍ର କାରଣ ନୁହେଁ । ଅନ୍ଧବିଶ୍ୱାସର ଅନ୍ତରାଳରେ ଅନ୍ୟ କିଛି ଉଦ୍ଦେଶ୍ୟ ବି ଥାଏ । ଗବେଷକମାନେ ତାଙ୍କ

ରିପୋର୍ଟରେ ପ୍ରକାଶିତ କିଛି କେଶ୍ ଷ୍ଟଡିରେ ଏପରି କିଛି ଉଦ୍ଦେଶ୍ୟର ଅବତାରଣା କରିଛନ୍ତି । ଗରିବ ସ୍ତ୍ରୀ ଲୋକଟିଏର ସଂପତ୍ତି ହଡପ କରିନେବା ଅନେକ ସମୟରେ ଡାହାଣୀ କାହାଣୀର ପଶ୍ଚାତରେ ହିଁ ରହିଥାଏ ।

ଯଦି ବିଧବା ବା ଏକକ ମହିଳାଙ୍କ ପାଖରେ କିଛି ଜମିଥାଏ, ଏଇ ଜମିକୁ ହାତେଇ ନେବାକୁ ଏ ସମାଜରେ ଲୋକଙ୍କ ଅଭାବ ନାହିଁ । କ୍ଷମତାଧାରୀ ଜମି ଲୋଭୀମାନେ ଏଥିପାଇଁ ଯୋଜନା ବି କରି ଦଅନ୍ତି । ଡାହାଣୀର ଆଳ ଖୋଜି ଏମାନେ ମହିଳାଙ୍କୁ ଗାଁରୁ ବିତାଡିତ କରି ଦିଅନ୍ତି ଏବଂ ଜମି ଦଖଲ କରି ନିଅନ୍ତି । ଅନେକ ଡାହାଣୀର ଏ ଷଡଯନ୍ତ୍ର ପରିବାର ଭିତରୁ ହିଁ ହୁଏ । ପରିବାର ଲୋକମାନେ ଗାଁର ଓଝା ମାନଙ୍କର ସାହାଯ୍ୟ ନେଇ ଥାଆନ୍ତି । ଓଝା ହେଉଛନ୍ତି ଗାଁରେ ରହୁଥିବା ଡାହାଣୀ ଡାକ୍ତର ଯେଉଁଠି ସ୍ୱାସ୍ଥ୍ୟ ସେବା ପ୍ରାୟତଃ ପହଞ୍ଚି ପାରିନାହିଁ । ସେଇ ଗାଁର ଓଝାମାନେ ଡାକ୍ତରିଗିରି କରନ୍ତି । ଏମାନେ ଫୁଙ୍କା ଝଡା କରନ୍ତି ଏବଂ ଡାଆଣୀ ଛଡାଇ ରୋଗ ଭଲ କରିଦେବାର ନାଟକବାଜି ବି କରନ୍ତି । ଏଇ ଓଝାମାନଙ୍କ ପ୍ରତି ଗାଁ ଲୋକଙ୍କର ଥିବା ବିଶ୍ୱାସ  ବଳରେ ଓଝାମାନେ ଜନମତ ସୃଷ୍ଟି କରିପାରନ୍ତି ଏବଂ ଜନମତ ଭାଙ୍ଗି ବି ପାରନ୍ତି ।

ଏଇ କିଛି ଦିନ ତଳେ 'ଖେମି' ନାମକ ଜନୈକ ଅସହାୟ ମହିଳାର କାହାଣୀ ସମ୍ବାଦକୁ ଆସିଥିଲା । ଖେମିର ଭଲ ନା ଥିଲା ଖେମି ବାଲିଆ । ଘର ଭଲଓ୍ୱାରପୁର । ବିହାର । ଗାଁ ରେ ସେ ଏକା ରହୁଥିଲା । ଏକ ଏକର ଜମି ତା'ର ଥିଲା । ଜମିଥିଲା ବେଶ ଉର୍ବର ଏବଂ ଦୋ-ଫସଲି । ଏହାକୁ ଚାଷ କରି ସେ ବର୍ଷ ତମାମ ଚଳୁଥିଲା । ପରିବାର ଲୋକ କିନ୍ତୁ ଏଇ ଜମିକୁ ଦଖଲ କରି ନେବାକୁ ଚାହିଁଲେ । ଗାଁ ଓଝାର ଏମାନେ ସାହାଯ୍ୟ ନେଲେ ଏବଂ ଖେମି ଯେ ଏକ ଡାହାଣୀ ତା'ର ପ୍ରଚାର କରିଦେଲେ । ଖେମିର ମୃତ୍ୟୁ ପାଇଁ ଗାଁରେ ଏକ ନିଆଁକୁଣ୍ଡ ତିଆରି ହେଲା । କୌଣସି ଅଘଟଣା ଘଟିବା ପୂର୍ବରୁ ଖେମି ଦିନେ ରାତିରେ ଗାଁ ଛାଡି ଅନ୍ୟ ଗାଁକୁ ପଳାଇଥିଲା ।

ପୋଲିସ ଅନୁସନ୍ଧାନ କରି କହିଲା, ଖେମିକୁ ମାରିଦେବାକୁ ଏହାଏକ ସୁଚିନ୍ତିତ ଯୋଜନା ଥିଲା । ଗାଁ ଓଝା ବି ଏଥିପାଇଁ ଲାଞ୍ଚ ନେଇଥିଲା ।

ସଂପତ୍ତି ହଡପ ବ୍ୟତୀତ ଅନ୍ୟ କିଛି ଉଦ୍ଦେଶ୍ୟ ବି ଏ ଡାହାଣୀ ପ୍ରସଙ୍ଗରେ ଥାଏ । ପୁରୁଣା ପାରିବାରିକ କଳହର ପ୍ରତିଶୋଧ ପାଇଁ ଅନେକ ସମୟରେ ଡାହାଣୀର

ଗପ ତିଆରି ହୁଏ ଏବଂ ଅନେକ ଖଳ ଲୋକ କୌଣସି ସ୍ତ୍ରୀ ପାଇଁ ପ୍ରେମୀ ବା ଯୌନ ସଂପର୍କ ପାଇଁ ଆବେଦନ କରି ବିଫଳ ହେଲେ ଡାହାଣୀ କଥା ଉଠାନ୍ତି । ସବୁ ସମୟରେ ଯେ ଡାହାଣୀର ଅଭିଯୋଗ ଏକ ଦୁର୍ବଳ ମହିଳା ବିରୁଦ୍ଧରେ ଆସେ, ଏହା ବି ସତ ନୁହେଁ । ଅନ୍ୟାୟ ବିରୁଦ୍ଧରେ କହୁଥିବା ଏବଂ ମଦ ବେପାରୀଙ୍କୁ ବିରୁଦ୍ଧ କରୁଥିବା କିଛି ଶକ୍ତିଶାଳୀ ମହିଳାଙ୍କୁ ବି ଡାହାଣୀ ବଦନାମର ଶିକାର ହେବାକୁ ପଡିଛି ।

ମଧ୍ୟପ୍ରଦେଶର ଏକ ଗାଁର ଝିଅ ହେଉଛି ଲତା ସାହୁ । ଗାଁ ଜମିଦାର ବାରଣ ସତ୍ତ୍ୱେ ସେ ଗତବର୍ଷ ପଞ୍ଚାୟତ ନିର୍ବାଚନ ଲଢିଥିଲା । ଲତା ଏକ ଦଳିତ ପରିବାରର ଝିଅ । ତାକୁ ନିୟନ୍ତ୍ରଣ କରିବାକୁ ଉଚ୍ଚଜାତିର ଲୋକମାନେ ଗାଁ ସଭାରେ ତା' ବିରୁଦ୍ଧରେ ଡାହାଣୀର ଅଭିଯୋଗ ଆଣିଲେ । ପ୍ରମାଣ ବି ହୋଇଗଲା ଯେ ଲତା ଏକ ଡାହାଣୀ । ଲତା ଆଉ ଗାଁରେ ନାହିଁ ।

ସୁତରାଂ ଡାହାଣୀ ଏକ ବୃହତର ସାମାଜିକ ସମସ୍ୟା । ଅନ୍ଧବିଶ୍ୱାସ ପରି ଏକ ଲଘୁ କାରଣଟି ଦେଇ ଏହାକୁ ସହଜ କରିଦେବା ବି ଠିକ୍ ନୁହେଁ । ଲତା ଏବଂ ଖେମିର କାହାଣୀରେ ଯେ ଭାରତର ସାମାଜିକ ଗଠନ ଏବଂ ଉଚ୍ଚ ଜାତିର ପ୍ରାଧାନ୍ୟ ଏବେ ବି ଅତୁଟ ଅଛି, ଏକଥା ଏହା ସୂଚେଇ ଦିଏ । କିଛି ଧାର୍ମିକ ମୌଳବାଦୀ ସଂଗଠନ ଯେ ଡାହାଣୀ ପ୍ରସଙ୍ଗକୁ ନେଇ ନିପଟ ଆଦିବାସୀ ମଫସଲ ଗାଁରେ ଧର୍ମ ଆଉ ରାଜନୀତି କରୁଛନ୍ତି, ଏ ଅଭିଯୋଗ ବି ଏବେ ଆସିଲାଣି ।

ଏ ଶେଷ କଥା - ଡାହାଣୀ ଅଭିଯୋଗ ନେଇ ଗାଁରେ ଗରିବ ମହିଳାଙ୍କ ଅତ୍ୟାଚାର ଏବଂ ହତ୍ୟା ପ୍ରତିଦିନ ଏଠି ବଢିଛି । ଏ ସମସ୍ୟାର ସମାଧାନ ପାଇଁ ସଚେତନତା ସୃଷ୍ଟି ହେବା ଦରକାର । ଗୋଟିଏ ବାସ୍ତବ ତଥା ହେତୁବାଦୀ ସମାଜଟିଏ ନରହିଲେ ଭାରତ ମହାଶକ୍ତି ହେବା କେବଳ ସ୍ୱପ୍ନରେ ହିଁ ରହିଯିବ ।



# ଧନୀଙ୍କ ସାମାଜିକ ଦାୟିତ୍ୱ

ଓ୍ୱିପ୍ରୋର ଅଧ୍ୟକ୍ଷ ଅଜିମ୍ ପ୍ରେମଜୀ ତାଙ୍କ ଅର୍ଜିତ ସଂପତ୍ତିର ତେପନ ହଜାର କୋଟି ଟଙ୍କା ଏବେ ଦାତବ୍ୟ ଅନୁଷ୍ଠାନକୁ ଦାନ କରିବାକୁ ପ୍ରତିଶ୍ରୁତି ଦେଇଛନ୍ତି । ଏହା ତାଙ୍କ ଅଂଶଧନର ପ୍ରାୟ ପଚାଶ ପ୍ରତିଶତ । ପୂର୍ବରୁ ବି ପ୍ରେମଜୀ ସାହେବ ଭାରତ ସରକାରଙ୍କୁ ଆଠ ହଜାର କୋଟି ଟଂକା ଦାନଦେଇ ପ୍ରସ୍ତାବ ରଖିଥିଲେ ଯେ ଏଇ ଅର୍ଥ ଯେପରି ଜନକଲ୍ୟାଣ ପାଇଁ ଖର୍ଚ୍ଚ ହେବ । ଭାରତର ଗ୍ରାମାଞ୍ଚଳରେ ପ୍ରାଥମିକ ବିଦ୍ୟାଳୟମାନଙ୍କ ଉନ୍ନତି ପାଇଁ ଏଇ ଟଙ୍କା ଲଗିବ । ଏଥିରେ ଶହେଟି ସ୍କୁଲ ଚାଲିବ । ଏଇ ସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଉତ୍ତମ ପ୍ରଶିକ୍ଷଣ ଦିଆଯିବ । ଆଧୁନିକ ଟେକ୍ନୋଲୋଜି ପ୍ରୟୋଗରେ ଗୁଣାତ୍ମକ ଶିକ୍ଷାଦାନ ହେବ । ସମାଜରେ ଖୁବ ନୀଚ ସ୍ତରରେ ରହୁଥିବା ଏ ଦେଶର ସବୁଠାରୁ ଗରିବ ନାଗରିକମାନଙ୍କ ପାଇଁ ଏ ଅର୍ଥରେ ନୂଆ ନୂଆ ସୁବିଧା ସୃଷ୍ଟି ହେବ ଏବଂ ଏ କାର୍ଯ୍ୟକ୍ରମ ସଫଳ ହେଲେ ଆଜିମ୍ ସାହେବ ଆହୁରି ଅଧିକ ଅର୍ଥ ଦାନ ସୂତ୍ରରେ ଦେବେ ବୋଲି ପ୍ରତିଶ୍ରୁତି ବି ଦେଇଥିଲେ । ଏବେ ପୁଣି ତେପନ ହଜାର କୋଟି ଟଂକାର ଦାନ ଆଜିମ୍‌ଙ୍କର ଦାତାପଣକୁ ମହିମା ମଣ୍ଡିତ କରିଛି ।

ଆଜିମ୍ ପ୍ରେମଜୀ ଭାରତର ଜଣେ ମୁସଲିମ୍ କର୍ପୋରେଟ । ଭାରତକୁ ସେ ତାଙ୍କ ମିସନ୍‌ର ପବିତ୍ର ଭୂଇଁ ଭାବେ ଧରିନେଇଛନ୍ତି । ଏ ଦେଶର ଉଚ୍ଚ ଧନୀମାନଙ୍କର ଯେ ଏଠି କିଛି ସାମାଜିକ ଦାୟିତ୍ୱ ରହିଛି, ଏଇ ଦାନ ଦ୍ୱାରା ଆଜିମ୍ ପ୍ରମାଣିତ କରିଦେଇଛନ୍ତି ଏବଂ ଏଇ କିଛି ବର୍ଷ ହେଲା, ଏଠି ବଜାର ଅର୍ଥନୀତି ଲାଗୁହେବା ପରେ ଭାରତୀୟ ଧନୀଙ୍କର ସାମାଜିକ ଦାୟିତ୍ୱବୋଧ ବା କର୍ପୋରେଟ୍ ସୋସିଆଲ ରେସ୍‌ପୋନ୍‌ସବିଲିଟି ନେଇ ଆଲୋଚନା ମଧ୍ୟ ହେଉଛି ।

ଭାରତର ଆର୍ଥିକ ସ୍ଥିତିର ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଆସିବା ପରେ ବ୍ୟକ୍ତିଗତ ଭାବେ ଧନ ଠୁଳ କରିବାକୁ ଏଠି ପ୍ରତିଯୋଗିତା ଆରମ୍ଭ ହୋଇଯାଇଛି । ଏଥିପାଇଁ ଯୋଗ୍ୟ ଅଯୋଗ୍ୟର ବିଚାର ହେଉନି । କିନ୍ତୁ ନିଜ ସଂପତ୍ତିରୁ କିଛି ଅଂଶ ଯେତେବେଳେ ଗରିବଙ୍କ କଲ୍ୟାଣ ନିମନ୍ତେ ଦେବାକୁ ପଡୁଛି, ଭାରତର ଶତ କୋଟିପତି ଅର୍ଥାତ୍ ବିଲିୟନରମାନେ କୁଣ୍ଠାବୋଧ କରୁଛନ୍ତି ।

ଏହ ସତ, ଗତ ଦୁଇ ଦଶନ୍ଧି ଭିତରେ ଭାରତରେ ପ୍ରଚୁର ଶିଳ୍ପାୟନ ହୋଇଛି । ଆଠ ପ୍ରତିଶତରୁ ଅଧିକ ଆର୍ଥିକ ଅଭିବୃଦ୍ଧି ଘଟିଛି । ଷ୍ଟକ୍ ମାର୍କେଟରେ ସୂଚକାଙ୍କ ବଢୁଛି ଏବଂ ପ୍ରତିବର୍ଷ ନୂଆ କୋଟିପତି ଏଠି ସୃଷ୍ଟି ହେଉଛନ୍ତି । 'ଫୋର୍ବସ୍' ମାଗାଜିନ୍‌ର ତାଲିକା ଅନୁସାରେ ଭାରତରେ ଏବେ ବିଲିୟନରଙ୍କ ସଂଖ୍ୟା କ୍ରମାଗତଭାବେ ବଢ଼ିବାରେ ଲାଗିଛି । କିନ୍ତୁ ଏବେ ସଦ୍ୟ ପ୍ରକାଶ ପାଇଥିବା ଭାରତର ଆର୍ଥିକ, ସାମାଜିକ ତଥା ଜାତିଭିତ୍ତିକ ଜନଗଣନା ରିପୋର୍ଟ କହେ, ଏ ଦେଶର ଜନସଂଖ୍ୟାର ୮୦ ପ୍ରତିଶତ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଅଛନ୍ତି । ଓଡିଶାରେ ଏହି ହାର ପ୍ରାୟ ୮୮ ପ୍ରତିଶତ ଏବଂ ଏଠି ବି ଚଉବନ ହଜାର ପରିବାର ଭିକ ମାଗନ୍ତି ବୋଲି ଏ ରିପୋର୍ଟରେ ରହିଛି । ଭାରତର ସାମାଜିକ ତଥା ଆର୍ଥିକ କ୍ଷେତ୍ରରେଏହା ବୃହତ୍ ବିରୋଧଭାସ । କୋଟିପତି ଧନ ଉପାର୍ଜନ କରି ଶତ କୋଟିପତି ହେଉଛି  ଏବଂ ସେହି ସମୟରେ ନୂଆ ଗରିବଙ୍କ ଅଭ୍ୟୁଦୟ ହେଉଛି । ଠିକ୍ ଏତିକି ବେଳେ ପ୍ରେମଜୀଙ୍କର ତେପନ ହଜାର କୋଟି ଟଙ୍କାର ଅର୍ଥଦାନ ଏକଥା  ସୂଚାଇ ଦେଇଛି ଯେ, ଗରିବଙ୍କ ପ୍ରତି ଧନୀ ଲୋକଙ୍କର ଅନୁକମ୍ପା ପୁରାପୁରି ଅପସରି ଯାଇନାହିଁ ।

ସାମ୍ପ୍ରତିକ ଭାରତୀୟ ବିଲିୟନରଙ୍କ ଭିତରେ ରହିଛନ୍ତି ମୁକେଶ ଅମ୍ବାନୀ, ଲକ୍ଷ୍ମୀ ମିତାଲ, ଆଜିମ୍ ପ୍ରେମଜୀ, ସାବିତ୍ରୀ ଜିନ୍ଦଲ, ଅନିଲ ଅମ୍ବାନୀ, ସୁନିଲ ମିତଲ, ଅନିଲ ଅଗ୍ରୱାଲ ପ୍ରଭୃତି । କୁହାଯାଏ ଭାରତର ସୁପର ଧନୀମାନେ ଯଦି ସେମାନଙ୍କ ସଂପତ୍ତିର ଏକ ଚତୁର୍ଥାଂଶ ଜନକଲ୍ୟାଣ ପାଇଁ ଦାନ କରିଦିଅନ୍ତି, ଭାରତରେ ଦାରିଦ୍ର୍ୟ ରହନ୍ତା ନାହିଁ । କର୍ପୋରେଟ୍ ସାମାଜିକ ଦାୟିତ୍ୱରେ ଏଇ ଅର୍ଥ ଦାନକୁ ପ୍ରଥମ ଉପାଦାନ ଭାବେ ହିଁ ଗଣାଯାଏ । ଏହାର ଅନ୍ୟ ନାଁ ଫିଲାନଥ୍ରୋପି ।

କୋଟିପତି ଧନୀମାନେ ଗରିବଙ୍କ ହିତରେ ଅର୍ଥ ଦାନ କରିବାକୁ ପୃଥିବୀରେ ଏଇ କିଛି ବର୍ଷ ହେଲା ଏକ ଅଭିଯାନ ଆରମ୍ଭ ହୋଇଛି । ଏଇ ଅଭିଯାନ ଆରମ୍ଭ କରିଥିଲେ ଆମେରିକୀୟ ବିଲିୟନୀୟର ବିଲ୍‌ଗେଟସ୍ ଏବଂ ଓ୍ୟାରେନ୍ ବଫେଟ୍ । ଏ ଅଭିଯାନର ନାଁ ଥିଲା "ଗିଭିଙ୍ଗ୍ ପ୍ଲେଜ୍ କ୍ୟାମ୍ପେନ" ବା ଅନ୍ୟକୁ ଦେବା ପାଇଁ ଅଭିଯାନ । ବିଲିୟନରମାନେ ସେମାନଙ୍କ ଲାଭର ପଚାଶ ପ୍ରତିଶତ ଅର୍ଥଦାନ କରିବାକୁ ଏମାନେ ଅନୁରୋଧ କରିଥିଲେ । ଏ ଅଭିଯାନ ଏବେ ବି ଚାଲିଛି । କିନ୍ତୁ ଦୁଃଖର କଥା ହେଲା, ବଫେଟ ଆଉ ଏ ସଂସାରରେ ନାହାନ୍ତି । ଅଥଚ ଆମେରିକୀୟ ଧନୀମାନେ ଯେ ନିଜ ଧନ ଦେବାକୁ ରାଜି ଅଛନ୍ତି, ଏହା  ଖବରରେ ଆସିଲାଣି ।

ଗେଟସ୍ ଏବଂ ବଫେଟ୍ ଏ ଅଭିଯାନରେ ଏଇ କିଛି ବର୍ଷ ତଳେ ଚୀନ୍ ଯାଇଥିଲେ । ଚୀନର କୋଟିପତିଙ୍କ ପାଇଁ ସେମାନେ ଏକ ନୈଶ୍ୟ ଭୋଜିର ମଧ

ଆୟୋଜନ କରିଥିଲେ । କିନ୍ତୁ ଚମକପ୍ରଦ ଖବର ହେଲା, ଚୀନର ଅଧିକାଂଶ ଧନୀ ବ୍ୟବସାୟୀ ଏ ଭୋଜିକୁ ଆସିନଥିଲେ । ଆସିଲେ କାଳେ ତାଙ୍କ ସଂପତ୍ତିରୁ କିଛି ଅର୍ଥ ଦାନ କରିବାକୁ ପ୍ରତିଶ୍ରୁତି ଦେବାକୁ ହେବ, ଏହି ଭୟ ବୋଧେ ତାଙ୍କର ଥିଲା । ଗେଟସ୍ ଏବଂ ବଫେଟ୍‌ଙ୍କ ଭାରତ ଅଭିଯାନ ସଫଳ ହୋଇ ନଥିବା କଥା ମଧ୍ୟ ଗଣମାଧ୍ୟମରେ ଆସିଥିଲା ।

ଭାରତୀୟ ଧନୀଙ୍କ ସାମାଜିକ ଦାୟିତ୍ୱ ସଂପର୍କରେ କିଛି ରୁଚିକର ଖବର ଏଠି ଆସେ । ଦୈନିକ ଇଂରାଜୀ ଖବର କାଗଜ ହିନ୍ଦୁସ୍ଥାନ ଟାଇମସ୍‌ର ଏକ ଖବରକୁ ଏଠାରେ ଉଲ୍ଲେଖ କରାଯାଇପାରେ । ଏହି ଖବର କାଗଜ ଭାରତର କୋଡ଼ିଏ ଜଣ ଉଚ୍ଚ ଧନୀଙ୍କୁ କିଛି ପ୍ରଶ୍ନ ପଚାରି ଉତ୍ତର ମାଗିଥିଲା । ପ୍ରଶ୍ନ ଥିଲା, କେଉଁ କେଉଁ ଜନକଲ୍ୟାଣ କାମ ଆପଣ କରୁଛନ୍ତି ? ଭବିଷ୍ୟତରେ କେଉଁ ଜନହିତକାରୀ କାମ କରିବାକୁ ଆପଣ ସ୍ଥିର କରିଛନ୍ତି ? ଭାରତୀୟ ଦୃଶ୍ୟପଟରେ ଆପଣ ଗେଟସ୍ ଏବଂ ବଫେଟ୍‌ଙ୍କ ଅଭିଯାନକୁ କିପରି ଗ୍ରହଣ କରନ୍ତି ? ଏବଂ ଆପଣ ଆପଣଙ୍କ ସମ୍ପତ୍ତିର କିଛି ଅଂଶ ଦାନ କରିବାକୁ ପ୍ରତିଶ୍ରୁତି ରଖିବେ କି ? କିନ୍ତୁ ବିଡମ୍ବନା ହେଲା, ଏପରି ପ୍ରଶ୍ନ ପଚାରି ସାରିବା ପରେ ଏବଂ ଏହାର ଉତ୍ତର ପାଇଁ କିଛି ପୁନଃ ଅନୁରୋଧ କଲା ପରେ ବି ଭାରତର ମାତ୍ର ଜଣେ ଉଚ୍ଚ ଧନୀ ତାଙ୍କର ଉତ୍ତର ହିନ୍ଦୁସ୍ଥାନ ଟାଇମ୍ସକୁ ଦେଇଛନ୍ତି । ଏହା ଏକ ପ୍ରଚାରିତ ସମ୍ବାଦ ।

ଯଦିଓ ବର୍ତ୍ତମାନର ନବ୍ୟ ଉଦାରବାଦୀ ଅର୍ଥନୀତିରେ ସଂପତ୍ତି ସଂଗ୍ରହ ପାଇଁ ମାନସିକତା ବଢ଼ିଛି, ଏଇ ସଂପତ୍ତିରୁ କିଛି ଗରିବଙ୍କ ପାଇଁ ଦାନ କରିବା ମାନସିକତା ସେଇ ହାରରେ କିନ୍ତୁ ବଢ଼ିନାହିଁ । ଭାରତର ବଲିଉଡ୍ ତାରକାମାନେ ନିଜ ସଂପତ୍ତି ଅର୍ଥର ଅଧିକ ଭାଗ ଆଇପିଏଲ୍ ଫ୍ରାନ୍‌ଚାଇଜ୍ କିଣିବାରେ ଆଗ୍ରହ ଦେଖାନ୍ତି ଏବଂ ସବୁଠାରୁ ବଡ କଥା ହେଲା, ଭାରତୀୟ ଧନୀମାନେ ବର୍ତ୍ତମାନ ନିଜ ସଂପତ୍ତି ପ୍ରଦର୍ଶନ କରିବାରେ ବ୍ୟସ୍ତ । ନିଜ ବଡିମା ଜାହିର କରିବାରେ ବ୍ୟଗ୍ର । ମୁକେଶ ଆମ୍ବାନୀ ଚାରି ହଜାର କୋଟି ଟଙ୍କାରେ ଅଟ୍ଟାଳିକାଟିଏ କରି ଯେପରି ନିଜ ସ୍ତ୍ରୀ କୁ ଉପହାର ଦେଲେ ଏବଂ ଲକ୍ଷ୍ମୀ ମିତାଲ ନିଜ ଝିଅର ବାହାଘରରେ ଅମାପ ଅର୍ଥ ବ୍ୟୟ କଲେ,ଏହା ଏଇ ବଡିମା ପ୍ରଦର୍ଶନର ଏକ ଅଂଶ ।

ଦାନ ଧର୍ମ କରିବା ଏକ ଭାରତୀୟ ସଂସ୍କୃତି । ଦାନ କଥା ଉଠିଲେ ଏଠି ରାଜା ହରିଶ୍ଚନ୍ଦ୍ର, କର୍ଣ୍ଣ ଏବଂ ଯୁଧିଷ୍ଠିରଙ୍କ ଉଦାହାରଣ ଦିଆଯାଏ । ପରାଧୀନ ଭାରତରେ ବି ଟାଟା, ବିରଳା, ବାଜାଜଙ୍କ ପରି ଧନୀମାନେ ଗରିବଙ୍କ ସାମାଜିକ କଲ୍ୟାଣରେ ଅର୍ଥ ଦାନ କରିଥିଲେ ।

ପ୍ରଶ୍ନ ଆସେ, ଭାରତୀୟ ଧନୀମାନେ ଜନ କଲ୍ୟାଣ ନିମନ୍ତେ ଅର୍ଥଦାନ ପାଇଁ ଏବେ କୁଣ୍ଠା କାହିଁକି କରନ୍ତି? ଏହାର ଉତ୍ତରରେ ଭାରତୀୟ ସାମାଜିକ ପ୍ରସଙ୍ଗକୁ ଏବଂ ଦୁର୍ନୀତିକୁ ଏହାର କାରଣ ଭାବେ ନିଆଯାଏ ।

ସାମାଜିକ କାରଣରେ ଅଛି, ଭାରତୀୟମାନେ ନିଜେ ଉପାର୍ଜନ କରୁଥିବା ସମ୍ପତ୍ତିକୁ ପୁରାପୁରି ନିଜର ସମ୍ପତ୍ତି ବୋଲି ଭାବନ୍ତି ନାହିଁ । ଏ ସମ୍ପତ୍ତି ଯେ ସେ ତାଙ୍କର ପରିବାର ପାଇଁ କରିଛନ୍ତି ସେମାନେ ଯୁକ୍ତି ଦର୍ଶାନ୍ତି । ସୁତରାଂ ନିଜେ ଚାହିଁଲେ ବି ପରିବାରର ଅନୁମତି ବିନା ସେ ତାଙ୍କ ଉପାର୍ଜିତ ଅର୍ଥ ଅନ୍ୟ କାହାକୁ ଦେଇ ପାରିବେନି ବୋଲି ଏ ଯୁକ୍ତିରେ ଥାଏ ।

ଅନ୍ୟ କଥାଟି ହେଲା, ଦୁର୍ନୀତି ଭୟରେ ଅନେକ ଧନୀ ଲୋକ ଏଠି ଦାନ କରିବାକୁ ଚାହାନ୍ତି ନାହିଁ । ସେମାନେ ଖୋଲାଖୋଲି କହନ୍ତି, ଦାନ ନିମନ୍ତେ ସମାଜରେ ବିଶ୍ୱାସ ରହିବା ଦରକାର । ଯେତେବେଳେ ରାଜ୍ୟ ଏବଂ ସରକାରର ଆଚରଣ ବିଶ୍ୱାସଯୋଗ୍ୟ ହୁଏନି, ସେତେବେଳେ ଦାନ କରିବାକୁ ସ୍ପୃହା ଆସେନି । ଭୟଥାଏ କାଳେ ନିଜ କଷ୍ଟୋପାର୍ଜିତ ସଂପତ୍ତି ଠିକ୍ ବାଟରେ ଖର୍ଚ୍ଚ ନହୋଇ ଦୁର୍ନୀତିଖୋରଙ୍କ ଦ୍ୱାରା ଚୋରି ହୋଇପାରେ ।

ଗତ କିଛି ବର୍ଷର ବିଦ୍ୱେଷ ପରେ ପୃଥିବୀର ଧନୀ ଏବଂ ଗରିବଙ୍କ ସଂପର୍କରେ ନୂଆ ସୋପାନଟିଏ ସୃଷ୍ଟି ହେବାକୁ ଗଲାଣି । ଗରିବମାନେ ନିଜ ଅଧିକାର ପ୍ରତି ସଚେତନ ହେଲେଣି । ନିଜ ଜମି, ବାସଭୂମି ଛାଡିଲାବେଳେ ନୂଆ କରି ଗଢା ହେବାକୁ ଯାଉଥିବା ପ୍ରକଳ୍ପର ନିଜର ଲାଭ କ'ଣ ବୋଲି ଗରିବ ଲୋକ ପ୍ରଶ୍ନ କଲାଣି, ଏବଂ ସେଥିପାଇଁ ନୂଆ ପ୍ରକଳ୍ପ ବେଳେ କର୍ପୋରେଟ୍ ସାମାଜିକ ଦାୟିତ୍ୱ ଉପରେ ଜୋର ଦିଆଯାଉଛି ।

ହଁ, ଏ ଆଲୋଚନା ଏଇଠି ଶେଷ କରିବାକୁ ଇଚ୍ଛା । ଭାରତୀୟ ଉଦାରବାଦୀ ଅର୍ଥନୀତିର ଅନ୍ୟତମ ପ୍ରବକ୍ତା ତଥା ପୂର୍ବତନ ଭାରତର ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଥରେ ପରାମର୍ଶ ଦେଇ କହି ଦେଇଥିଲେ, "ଭାରତୀୟ ଧନୀମାନେ ଦାନୀ ହେବା ଦରକାର । ଏମାନେ ସରଳ ଜୀବନ ଯାପନ କରିବା ଉଚିତ । ଏମାନେ ନିଜ ସମ୍ପତ୍ତି ପ୍ରଦର୍ଶନ ଆଳରେ ଏପରି କିଛି ନକରନ୍ତୁ ଯାହା ସାଧାରଣ ଗରିବ ଜନତାଙ୍କ ଭିତରେ ଧନୀଙ୍କ ପ୍ରତି କ୍ରୋଧ ଏବଂ ଘୃଣା ସୃଷ୍ଟି କରିବ । ଇଣ୍ଡିଆରୁ ସୃଷ୍ଟି ହୋଇଥିବା ଧନୀମାନେ ଭାରତର ଉନ୍ନତିରେ ହିଁ ଲାଗନ୍ତୁ ।" ଇଏ ଧନୀଙ୍କ ସାମାଜିକ ଦାୟିତ୍ୱ । ଆଜିମ୍ ପ୍ରେମଜୀ ଏହାର ଆରମ୍ଭ ମାତ୍ର ।



# ଗରିବର ମୂଲ୍ୟ

'କୁତା ରୋଡ୍ ପେ ଶୋଏଗା ତୋ କୁତା କୀ ମୌତ ମରେଗା। ରୋଡ୍ ଗରିବ କେ ବାପ୍‌କୀ ନେହିଁ ହେ...।' ଏପରି ଏକ କୁତ୍ସିତ ମନ୍ତବ୍ୟ ଏଇ କିଛି ଦିନ ତଳେ ଚଳଚିତ୍ର ଅଭିନେତା ସଲମାନ୍ ଖାଁଙ୍କର ଜେଲ୍ ଦଣ୍ଡାଦେଶ ପରେ ମୁମ୍ବାଇର ଜଣେ ତଥାକଥିତ ପ୍ରତିଷ୍ଠିତ ଗାୟକ ଅଭିଜିତ୍ ଦେଇଥିଲେ। କୁକୁର ଯଦି ରାସ୍ତା ଉପରେ ଶୋଇବ କୁକୁର ପରି ମରିବ। ଗରିବ ଲୋକର ରାସ୍ତା ଉପରେ ଶୋଇବାର ଅଧିକାର ନାହିଁ।

ଏହି ମନ୍ତବ୍ୟର ପୃଷ୍ଠଭୂମି କହି ଦେବାକୁ ଏଠି ଇଚ୍ଛା। ୨୦୦୨ ମସିହାରେ ଅଭିନେତା ସଲମାନ୍ ଖାଁ ରାତିରେ କାର୍ ଚଳାଇ ଆସୁଥିବା ବେଳେ ରାସ୍ତା ଉପରେ ଶୋଇଥିବା କିଛି ଗରିବ ଲୋକଙ୍କ ଉପରେ ଗାଡ଼ି ଚଢ଼େଇ ଦେଇଥିଲେ। ସଲମନ୍ ସେତେବେଳେ ମଦ ପିଇ ଚୁର୍ ଅବସ୍ଥାରେ ଥିଲେ। ନିଜର ଦାମିକା 'ସୁଭ୍' କାର୍‌କୁ ନିଜେ ଡ୍ରାଇଭ କରୁଥିଲେ। ଦୁର୍ଘଟଣା ସ୍ଥଳରେ ଜଣଙ୍କର ମୃତ୍ୟୁ ହୋଇଥିଲା। ଅନ୍ୟ ଚାରିଜଣ ଗରିବ ଲୋକ ଗୁରୁତର ଭାବେ ଆହତ ହୋଇ ଡ଼ାକ୍ତରଖାନାରେ ଚିକିତ୍ସିତ ହୋଇଥିଲେ।

ଦୁର୍ଘଟଣା ଘଟାଇ ସଲମାନ୍ ଘଟଣା ସ୍ଥଳ ଛାଡ଼ି ପଳେଇ ଯାଇଥିଲେ। ଏପରିକି ଚିକିତ୍ସାଧୀନ ଲୋକଙ୍କୁ ଦେଖିବାକୁ ସେ ଚିକିତ୍ସାଳୟ ଯାଇନଥିଲେ। ୨୦୦୨ ମସିହା ଏଇ 'ହିଟ୍ ଆଣ୍ଡ ରନ୍' କେଶ୍‌ର ରାୟ ଏବେ ମୁମ୍ବାଇ ଦୌରାଜଜ୍ ଦେଲେ। ରାୟରେ ଥିଲା - ସଲମାନ୍ ମଦ ପିଇ ଗାଡ଼ି ଚଳାଇ ପାଞ୍ଚଜଣଙ୍କୁ ମୃତାହତ କରିବା ଥିଲା ଦୋଷ। ଏଥିପାଇଁ ତାଙ୍କୁ ପାଞ୍ଚବର୍ଷ ଜେଲ୍ ଦଣ୍ଡ ଭୋଗିବାକୁ ହିଁ ହେବ।

ଦଣ୍ଡାଦେଶ ପରେ ସଲମାନ୍‌ଙ୍କର ପ୍ରଶଂସକମାନଙ୍କ ପ୍ରତିକ୍ରିୟା ଥିଲା ଅନନ୍ୟ। ସମୂହ କ୍ୟାଣ୍ଡେଲ ଜାଳି ଏମାନେ ସମବେଦନା ଜଣାଇଲେ। ନିଜ ଦେହରେ କିରୋସିନି

ଢ଼ାଳି କେତେକ ନିଜକୁ ହତ୍ୟା କରିବାର ଉଦ୍ୟମ କଲେ। ଭାରତର ବୈଦ୍ୟୁତିକ ଗଣମାଧ୍ୟମ ଭାରତ ବର୍ଷର ସେତେବେଳର ଅନ୍ୟସବୁ ଖବରକୁ ବ୍ଲାକ୍‌ଆଉଟ୍ କରି କେବଳ 'ଭାଇ' ସଲମାନ୍‌ଙ୍କର 'ଜଜ୍‌ମେଣ୍ଟ ଡ଼େ'ର ସିଧାସଳଖ ଧାରା ବିବରଣୀ ଦେଉଥିଲେ। ମନେ ହେଉଥିଲା, ସଲମାନ୍ ଯେପରି ଏକ ପୀଡ଼ିତ ବ୍ୟକ୍ତି। ତାଙ୍କୁ ଅନ୍ୟାୟ ଭାବେ ଦଣ୍ଡିତ କରାଯାଉଛି। କିଛି ଲୋକ ଏଠି ଆଇନରୁ ଊର୍ଦ୍ଧ୍ୱରେ ହିଁ ରହିଥାଆନ୍ତି ଏବଂ ଠିକ୍ ଏଇ ସମୟରେ ଏଇ ତଥାକଥିତ ପ୍ରତିଷ୍ଠିତ ଗାୟକଙ୍କର ମନ୍ତବ୍ୟ ଆସିଲା - ଗରିବ ଲୋକଙ୍କର ପୁଣି ସମ୍ମାନ କେତେ ? କୁକୁର ପରି ରାସ୍ତା ଉପରେ ଶୋଇଲେ କୁକୁର ପରି ମରିବା ସ୍ୱାଭାବିକ।

ବାସ୍ତବରେ, ଭାରତରେ ଗରିବଙ୍କ ପ୍ରତି ଏପରି ମନ୍ତବ୍ୟ କିପରି ଏକ ବିଚଳିତ ତଥା ଭିନ୍ନ ଧାରାର ସୂଚନା ଦେଉଛି। ଗରିବଙ୍କୁ ଘୃଣା କରିବା ଏ ଦେଶର ଅନେକ ଧନୀଙ୍କର ଏବେ ଏକ ମାନସିକତା ହୋଇଗଲାଣି। ଗରିବଙ୍କ ମୂଲ ତାଙ୍କ ପାଇଁ ଶୂନ୍।

ଗରିବଙ୍କୁ ନେଇ ବଲିଉଡ୍ ମନୋରନ ଦୁନିଆର ଜଣେ ଗାୟକ ଏବଂ ତାଙ୍କ ସହଯୋଗୀ ସାଥୀମାନଙ୍କ ମନ୍ତବ୍ୟରୁ ଦୁଇଟି ନିର୍ଯ୍ୟାସ ଅଣାଯାଇପାରେ। ପ୍ରଥମଟି ହେଲା, ରାସ୍ତା ଉପରେ କୁକୁର ଶୋଇଲେ ଯେ ସେ ହତ୍ୟାର ପାତ୍ର ଏପରି ଭାବିବା ଠିକ୍ ନୁହେଁ। ଏବଂ ଦ୍ୱିତୀୟ କଥା ହେଲା, ଗରିବ ଲୋକମାନେ ରାତିରେ ରାସ୍ତାରେ ଶୁଅନ୍ତି, କାରଣ ଶୋଇବା ପାଇଁ ଏମାନଙ୍କର ଅନ୍ୟ କିଛି ବିକଳ୍ପ ନଥାଏ। ଶୀତ ଏବଂ କାକରରେ ଖୋଲା ଆକାଶ ତଳେ ରାସ୍ତା ଉପରେ ଜଣେ କିଏ ଆନନ୍ଦରେ ଶୋଇବାକୁ ଇଚ୍ଛାରେ କରେନି। ଟଙ୍କା ଦେଇ ଭଲ ଘରେ ରାତ୍ରିଯାପନ ପାଇଁ ଏମାନଙ୍କର ଅର୍ଥ ନଥାଏ। ଅନେକ ପାଠକବନ୍ଧୁ ନିଶ୍ଚୟ ହୁଏତ ଶୀତ ରାତିରେ ରାସ୍ତା ଉପରେ ଚିରା ଚଦର ଘୋଡ଼ି ହୋଇ କିଛି ଗରିବଙ୍କର ଶୋଇଥିବା ଦୃଶ୍ୟ ଦେଖିଥିବେ। ଏପରି ଏକ ଅବସ୍ଥାରେ ଗରିବଙ୍କ ପ୍ରତି ଅନୁକମ୍ପା ବଦଳରେ କିଛି ପ୍ରାଚୁର୍ଯ୍ୟରେ ଥିବା ଲୋକଙ୍କର ଘୃଣା ଆସୁଛି, ଏହା ହିଁ ଆଶ୍ଚର୍ଯ୍ୟ। ଅଣସମ୍ବେଦନଶୀଳତାର ସମସ୍ତ ସୀମା ଆମର ଧନୀମାନେ ଯେପରି ଅତିକ୍ରମ କରିସାରିଲେଣି।

ଫରାସୀ ବିପ୍ଳବ ବେଳେ ଫ୍ରାନ୍ସର ରାଜରାଣୀ ମାରି ଆଂଟୋନେଟ୍ ନିଜ ବାଲ୍‌କୋନି ଉପରୁ ରାସ୍ତାରେ ଛିଡ଼ା ହୋଇ ଚିତ୍କାର କରୁଥିବା କିଛି ଗରିବ ଲୋକଙ୍କ କୋଳାହଳ ଶୁଣୁଥିଲେ। ପାଖରେ ଥିବା ସହାୟିକାଙ୍କୁ ରାଣୀ ପ୍ରଶ୍ନ କଲେ- 'ଏମାନେ

ଏପରି ଚିତ୍କାର କରୁଛନ୍ତି କାହିଁକି ?' ସହାୟିକା ଉତ୍ତର ଦେଲେ, 'ଏସବୁ ଗରିବ ଲୋକ, ଏମାନେ ରୁଟି ଖାଇବାକୁ ପାଉନାହାନ୍ତି ମହାରାଣୀ। ସେଥିପାଇଁ ସେମାନେ ଆନ୍ଦୋଳନ କରୁଛନ୍ତି।' ରାଣୀ ତତ୍‌କ୍ଷଣାତ୍ ପ୍ରଶ୍ନ କଲେ, ଯଦି ରୁଟି ନପାଉଛନ୍ତି, ଏମାନେ କେକ୍ ଖାଉନାହାନ୍ତି କାହିଁକି ? ରାଣୀଙ୍କର ଏତାଦୃଶ ଉକ୍ତି ବିବଦମାନ ଥିଲା । ସପକ୍ଷ ଏବଂ ବିପକ୍ଷରେ ଏହାର ତର୍ଜମା ଆସେ ।

ଐତିହାସିକମାନେ ତର୍ଜମାରେ କୁହନ୍ତି - ସତକଥା ହେଲା, ଫରାସୀ ରାଣୀ ମେରି ଆଣ୍ଟୋନେଟ୍ ରୁଟି ଏବଂ କେକ୍ ଭିତରେ ପାର୍ଥକ୍ୟ କ'ଣ ବୋଲି ଜାଣିନଥିଲେ। ତାଙ୍କର ମନେ ହେଉଥିଲା, ରୁଟି ବୋଧେ କେକ୍ ଠାରୁ ଦାମିକା। ମିଳିବା କଷ୍ଟ। ରାଣୀଙ୍କର ଏହା ଅଜ୍ଞତା ହିଁ ଥିଲା। ବାସ୍ତବରେ ଗରିବଙ୍କ ପ୍ରତି ଅସମ୍ମାନ କରିବାର କେବେ ଇଚ୍ଛା ନଥିଲା ରାଣୀ ଆଣ୍ଟୋନେଟ୍‌ଙ୍କର। ମେରି ଆଣ୍ଟୋନେଟ୍ ଥିଲେ ସମ୍ରାଟ ଷୋଡ଼ଶ ଲୁଇଙ୍କର ଧର୍ମପତ୍ନୀ । ବେଶ୍ ଉଦ୍ଧତ ଏବଂ ଗର୍ବୀ ମହିଳା । ରାଜ ପରିବାରରେ ତାଙ୍କର ଜନ୍ମ । ଗରିବଙ୍କୁ ଘୃଣା କରିବା ଥିଲା ତାଙ୍କର ସ୍ୱଭାବିକ ଚରିତ୍ର ବୋଲି ଅନ୍ୟ ଏକ ତର୍ଜମାରେ ଆସେ । ସେଥିପାଇଁ ଆଣ୍ଟୋନେଟଙ୍କୁ ଫରାସୀ ବିପ୍ଳବ ଶେଷରେ ଗିଲୋଟିନ୍‌ରେ ଚଢ଼ାଇ ହତ୍ୟା କରାଯାଇଥିଲା।

ବଲିଉଡ୍ ଜଗତର ଧନୀ ଚିତ୍ର ତାରକା ତଥା ଗାୟକ ଗାୟିକାମାନଙ୍କୁ ଆମେ ସାଧାରଣତଃ ବିଶ୍ୱାସ କରୁ। ଏମାନଙ୍କୁ ଭଗବାନଙ୍କର ରୂପ ଦେଇ ସମ୍ମାନ କରୁ। ବିଜ୍ଞାପନରେ ତାଙ୍କୁ ଦେଖିଲେ ଖାଉଟି ଜିନିଷ କିଣିବାକୁ ଆଗ୍ରହ ପ୍ରକାଶ ବି କରୁ। ଏମାନଙ୍କ ଭିତରୁ ଅନେକ ମଧ ଦାରିଦ୍ର୍ୟ ଭିତରୁ ଆସିଛନ୍ତି। କିନ୍ତୁ ଦରିଦ୍ର ତଥା ଗରିବଙ୍କ ପ୍ରତି ଘୃଣା ଭାବ ଘୋଷଣା କରିବା ଏମାନଙ୍କର ଏକ ବୌଦ୍ଧିକ ଶଠତାର କଥା କହେ।

ଗତ କିଛି ବର୍ଷ ଭିତରେ ସାମାଜିକ, ଆର୍ଥିକ ତଥା ରାଜନୈତିକ କ୍ଷେତ୍ରରେ ଭାରତ ବର୍ଷରେ ପରିବର୍ତ୍ତନ ଆସିଛି। ବ୍ୟକ୍ତିର ସମ୍ମାନ ତଥା ପ୍ରତିଷ୍ଠା ମାପିବାର ମାପକାଠି ସ୍ୱରୂପ ତଥା ଆକୃତି ବଦଳିଛି। ଜଗତିକରଣ ଏବଂ ପୁଞ୍ଜିବାଦ ଆମର ପ୍ରାଚୀନ ଚିନ୍ତାଧାରାରେ ଆଲୋଡ଼ନ ସୃଷ୍ଟି କରିଛି। ଭାରତୀୟ ମୂଲ୍ୟବୋଧ ଏବେ ଏକ ନୂଆ ରୂପ ନେଇଛି। ଗରିବଙ୍କୁ ହତ୍ୟା କରିବାର ମାନସିକତା ଜନ୍ମ ନେଇଛି। ଏବଂ ଦରିଦ୍ର ଲୋକଟି ତା'ର ପୂର୍ବଜନ୍ମର ଭାଗ୍ୟ ଫଳ ଭୋଗୁଛି ବୋଲି ମନ୍ତବ୍ୟ

ଆସୁଛି ଯଦିଓ ଦାରିଦ୍ର୍ୟ ଭାଗ୍ୟଫଳ ନୁହେଁ, ଏକ ମନ୍ଦ ସାମାଜିକ ଅବସ୍ଥାର ପରିଣତି ।

ପ୍ରାଚୀନ ଭାରତରେ ଜ୍ଞାନୀ ମୁନି ଋଷିମାନେ ବଣ ଜଙ୍ଗଲରେ ରହୁଥିଲେ। ସାଧାରଣ ପୋଷାକ ପିନ୍ଧୁଥିଲେ। ଅଳ୍ପ ଆହାର କରୁଥିଲେ। ଖୁବ୍ ସରଳ ଜୀବନ ଯାପନ ଏମାନେ କରୁଥିଲେ। ତତ୍କାଳୀନ ରାଜାମାନେ ଏଇ ପଣ୍ଡିତ ମୁନି ଋଷିମାନଙ୍କୁ ସମ୍ମାନ ଜଣାଉଥିଲେ ଏବଂ ଋଷିମାନେ ଗରିବଙ୍କୁ ସମ୍ମାନ ଦେବାକୁ ରାଜାମାନଙ୍କୁ ଉପଦେଶ ମଧ୍ୟ ଦେଉଥିଲେ।

ଆନ୍ତର୍ଜାତିକ ପୁଞ୍ଜିବାଦ ଆମକୁ ବଦଳେଇ ଦେଇଛି। ପୁଞ୍ଜିବାଦକୁ ଘୃଣା କରି ଶାସନକୁ ଆସିଥିବା ତଥାକଥିତ ସାମ୍ୟବାଦୀ ଚୀନ୍ ବି ପୁଞ୍ଜିବାଦର ମହିମାଗାନ କଲାଣି। ଏଇଟା ହିଁ ଏବେ ଆଶ୍ଚର୍ଯ୍ୟ।

ହଁ, ଏ ଆଲୋଚନାର ଏ ଶେଷକଥା। ପ୍ରତ୍ୟେକ ସମାଜରେ ଧନୀ ଏବଂ ଗରିବ ଏପରି ଦୁଇଟି ଶ୍ରେଣୀ ନିଶ୍ଚୟ ରହିବେ। କିନ୍ତୁ ଭାରତର ଦୁର୍ଭାଗ୍ୟ ଯେ, ଗତ କିଛି ଦଶନ୍ଧିର ଗଣତାନ୍ତ୍ରିକ ଭାରତରେ ଧନୀମାନେ ଅଧିକ ଧନୀ ହୋଇଛନ୍ତି ଏବଂ ଗରିବଙ୍କ ସଂଖ୍ୟା ବଢ଼ିଛି। ଚିକିତ୍ସା ଅଭାବରୁ ପିଲା ଜନ୍ମ କଲାବେଳେ ଅନେକ ମା'ଙ୍କର ଏଠି ମୃତ୍ୟୁ ହୁଏ। ପୁଷ୍ଟିହୀନତାରେ ପୀଡିତଥିବା ପିଲାଙ୍କର ସଂଖ୍ୟା ଏଠି ଅମାପ। ଏହା ଏକ ରାଷ୍ଟ୍ରୀୟ ନିର୍ଯାତନା। ହିଂସା କହିଲେ ଅତ୍ୟୁକ୍ତି ହେବ ନାହିଁ। ଜାତିସଂଘର ଏକ ସଦ୍ୟ ପ୍ରକାଶିତ ରିପୋର୍ଟ ଅନୁସାରେ, ଭାରତରେ ଗରିବ ଭୋକିଲାଙ୍କ ସଂଖ୍ୟା ହେଉଚି ପ୍ରାୟ ଚଉଦ କୋଟି। ପୃଥିବୀର ଭୋକିଲାଙ୍କ ସଂଖ୍ୟାର ପ୍ରାୟ ଚଉଦ ପ୍ରତିଶତ। ବିଡମ୍ବନା ହେଲା, ଗରିବୀ ନହଟାଇ ଗରିବଙ୍କୁ ହଟାଇବାର ଏକ କୁତ୍ସିତ ମାନସିକତା ସଂପ୍ରତି ଧନୀଙ୍କ ଭିତରେ ଦେଖାଦେଇଛି। ଏହାର ଶେଷ ହେବା ଦରକାର। ନଚେତ୍ ସତକଥା ହେଲା, ଯେତେବେଳେ ଗରିବ ଲୋକମାନେ ଧନୀଙ୍କୁ ଘୃଣା କରନ୍ତି ସେତେବେଳେ ବିପ୍ଳବ ଆସେ। ଅନ୍ତତଃ ଭାରତରେ ଏ ଅବସ୍ଥା ନଆସୁ।



# ଇନ୍ଦିରା ଓ 'ବୁଢୀ ଡାହାଣୀ' ପ୍ରସଙ୍ଗ

**ଇ**ନ୍ଦିରା ଗାନ୍ଧୀ ଜଣେ ବୁଢୀ ଡାହାଣୀ ଏବଂ ଭାରତୀୟମାନେ ବାଷ୍ଟାର୍ଡ, ଏକଥା ୧୯୭୧ ବଙ୍ଗଳାଦେଶ ଯୁଦ୍ଧବେଳେ ତତ୍କାଳୀନ ଆମେରିକୀୟ ରାଷ୍ଟ୍ରପତି ନିକ୍ସନ୍ କହିଥିଲେ । ନିକ୍ସନ୍-କିସିଞ୍ଜରଙ୍କର କଥାବାର୍ତ୍ତା ଟେପ୍‌ରେ ଏସବୁ ଅଛି ।

ନିକ୍ସନ୍-କିସିଞ୍ଜର କଥୋପକଥନ ଏ ପର୍ଯ୍ୟନ୍ତ ଏକ ଗୁପ୍ତ ଦଲିଲ୍ ହୋଇ ରହିଥିଲା । ସରକାରୀ ଭାଷାରେ ଏହା ଥିଲା କ୍ଲାସିଫାଏଡ୍ ଡକୁମେଣ୍ଟ ।

ଟେପ୍ କାହିଁକି ସାଧାରଣରେ ପ୍ରକାଶ ପାଇଲା, ଏହା ଆଜି ପ୍ରଶ୍ନ ନୁହେଁ । ପ୍ରଶ୍ନ ହେଉଛି, ଇନ୍ଦିରାଙ୍କୁ ନେଇ ଆମେରିକାର ରାଷ୍ଟ୍ରପତି ନିକସନ୍ ଏପରି ଅଶାଳୀନ ମନ୍ତବ୍ୟ ଦେଲେ କାହିଁକି ? ନିକ୍ସନ୍‌ଙ୍କ ବିରକ୍ତିର କାରଣ କ'ଣ ଥିଲା ? ଏହାର ଉତ୍ତର ଭାରତ ପାକିସ୍ତାନ ଊଣେଇଶ ଏକସ୍ତରୀ ମସିହା ଯୁଦ୍ଧ ଇତିହାସରେ ଅଛି । ଆଜି ଏ ଚର୍ଚ୍ଚାରେ ସେଇ ଇତିହାସରୁ କିଛି ।

୧୯୬୦ ଏବଂ ୭୦ ଦଶକ ଥିଲା ପୃଥିବୀର ଶୀତଳ ଯୁଦ୍ଧର ସମୟ । ସାରା ପୃଥିବୀ ସେତେବେଳେ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା । ଦଳେ ରୁଷ୍‌କୁ ସମର୍ଥନ କରୁଥିଲେ ଏବଂ ଅନ୍ୟ ଦଳେ ଆମେରିକାକୁ । ଭାରତ ଏବଂ ସୋଭିଏତ୍ ରୁଷ୍‌ର ସମ୍ପର୍କ ଭଲ ଥିଲା । ଆମେରିକା କିନ୍ତୁ ପାକିସ୍ତାନକୁ ସମର୍ଥନ କରୁଥିଲା ।

୧୯୭୦ ରେ ସାଧାରଣ ନିର୍ବାଚନ ହେଲା ଭାରତରେ । ଇନ୍ଦିରା ଗାନ୍ଧୀ ଗରିବୀ ହଟାଓ ସ୍ଲୋଗାନ ଦେଇ ନିର୍ବାଚନ ଜିତିଲେ । ଲୋକସଭାରେ କଂଗ୍ରେସ ଦୁଇ ତୃତୀୟାଂଶ ଭୋଟ ପାଇଲା ।

ଭାରତର ଆଭ୍ୟନ୍ତରୀଣ ସମସ୍ୟା କିନ୍ତୁ ଇନ୍ଦିରାଙ୍କ ପାଇଁ ସେତେବେଳେ କୌଣସି ଚିନ୍ତାର କାରଣ ନଥିଲା । ବରଂ ପୂର୍ବ ପାକିସ୍ତାନ (ବର୍ତ୍ତମାନର ବଙ୍ଗଳାଦେଶ)ର ଘଟଣା ଇନ୍ଦିରାଙ୍କୁ ବ୍ୟସ୍ତ କରୁଥିଲା । ଭାରତର ଅର୍ଥନୀତି ଏହି ଘଟଣାରେ ପ୍ରଭାବିତ

ହେଉଥିଲା । ଲୋମହର୍ଷଣକାରୀ ଗୃହ ଯୁଦ୍ଧ ସେତେବେଳେ ଚାଲିଥିଲା ପୂର୍ବ ପାକିସ୍ତାନରେ ।

୧୯୪୭ର ଭାରତ ବିଭାଜନ ବେଳେ ପାକିସ୍ତାନ ବି ଭୌଗୋଳିକ ଭାବେ ଦୁଇ ଭାଗରେ ବିଭାଜିତ ହୋଇ ଭାରତର ଦୁଇ ପଟେ ରହିଯାଇଥିଲା । ଏହା ଥିଲା ପଶ୍ଚିମ ପାକିସ୍ତାନ ଏବଂ ପୂର୍ବ ପାକିସ୍ତାନ । ପାକିସ୍ତାନର ଏଇ ଅବସ୍ଥିତି ସେବେ ବି କାହିଁକି ଠିକ୍ ଲାଗୁନଥିଲା । ତେବେ ସ୍ୱାଧୀନତାର ଚବିଶ ବର୍ଷ ପରେ ଜିହ୍ନାଙ୍କ ତିଆରି ମୁସଲିମ୍ ରାଷ୍ଟ୍ର ଯେ ଆତ୍ମଧ୍ୱଂସ ପାଇଁ ପ୍ରସ୍ତୁତି କରିଚାଲିବ, କେବେ କାହାର କଳ୍ପନାରେ ଏହା ନଥିଲା ।

ପଶ୍ଚିମ ପାକିସ୍ତାନୀମାନେ ପୂର୍ବ ପାକିସ୍ତାନୀମାନଙ୍କୁ ମୋଟେ ପସନ୍ଦ କରୁନଥିଲେ । ରାଜନୈତିକଏବଂ ଅର୍ଥନୈତିକ ସ୍ତରରେ ପଶ୍ଚିମ ପାକିସ୍ତାନର ପୂର୍ବ ପାକିସ୍ତାନ ଉପରେ ଆଧିପତ୍ୟ ଥିଲା । ପୂର୍ବ ପାକିସ୍ତାନରୁ ଯେଉଁ ଟିକସ ଆଦାୟ ହେଉଥିଲା, ସେଇ ଅର୍ଥରେ ପଶ୍ଚିମରେ ରାସ୍ତାଘାଟ, ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ଆଦି ହେଉଥିଲା । ପୂର୍ବ ପାକିସ୍ତାନ ସେମିତି ଅବହେଳିତ ଥିଲା । ପାକିସ୍ତାନର ସମୁଦାୟ ସୈନିକଙ୍କ ଭିତରୁ ୯୦ ଭାଗ ସୈନିକ ପଶ୍ଚିମ ପାକିସ୍ତାନରୁ ନିଯୁକ୍ତି ପାଉଥିଲେ ଏବଂ ସମୁଦାୟ ସରକାରୀ କର୍ମଚାରୀଙ୍କ ଭିତରୁ ୮୦ ଭାଗ ଥିଲେ ବି ପଶ୍ଚିମରୁ । ପୂର୍ବ ପାକିସ୍ତାନର ଜନସଂଖ୍ୟା ପଶ୍ଚିମ ପାକିସ୍ତାନଠାରୁ ଅଧିକ ଥିଲେ ବି ଶାସକମାନେ ପଶ୍ଚିମ ପାକିସ୍ତାନରୁ ଆସୁଥିଲେ ।

ଏଥିନେଇ ଅସନ୍ତୋଷ ଥିଲା ପୂର୍ବ ପାକିସ୍ତାନରେ । ୧୯୬୦ ଦଶକରେ ଶେଷ ଭାଗରେ ଏଠି ନିଜର ଆତ୍ମସମ୍ମାନ ପାଇଁ ଏକ ଗଣତାନ୍ତ୍ରିକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏହାର ନେତୃତ୍ୱ ସେତେବେଳେ ନେଇଥିଲେ ମୁଜିବୁର ରହମାନ । ମୁଜିବୁରଙ୍କ ସହ ଇନ୍ଦିରାଙ୍କ ବ୍ୟକ୍ତିଗତ ଏବଂ ରାଜନୈତିକ ସମ୍ପର୍କ ଭଲ ଥିଲା ।

ପ୍ରାୟ ୧୩ ବର୍ଷର ମିଲିଟାରୀ ଶାସନ ପରେ ୧୯୭୦ ଡିସେମ୍ବରରେ ପାକିସ୍ତାନରେ ସାଧାରଣ ନିର୍ବାଚନ ହେଲା । ମୁଜିବୁରଙ୍କ ଆୱାମୀ ଲିଗ୍ ଦଳ ପୂର୍ବ ପାକିସ୍ତାନରେ ମାତ୍ର ଦୁଇଟି ଆସନକୁ ଛାଡିଦେଲେ ସବୁଥିରେ ବିଜୟ ହାସଲ କଲେ ଏବଂ ପାକିସ୍ତାନର ଜାତୀୟ ଆସେମ୍ବ୍ଲିରେ ସଂଖ୍ୟାଗରିଷ୍ଠତା ପାଇଲେ । ନିର୍ବାଚନ ପରିଣତି ଅନୁସାରେ ମୁଜିବୁର ରହମନ ପାକିସ୍ତାନର ରାଷ୍ଟ୍ରପତି ହେବା କଥା । କିନ୍ତୁ ତତ୍କାଳୀନ ମିଲିଟାରୀ ଶାସକ ୟାହିୟା ଖାଁ ଏବଂ ପାକିସ୍ତାନ ପିପୁଲସ୍ ପାର୍ଟିର ମୁଖ୍ୟ

ଜୁଲଫିକର ଅଲ୍ଲୀ ଭୁଟ୍ଟୋଙ୍କ ଷଡଯନ୍ତ୍ରରେ ମୁଜିବୁରଙ୍କୁ ରାଷ୍ଟ୍ରପତି କରି ଦିଆଗଲା ନାହିଁ ।

ଏହାର ପ୍ରତିବାଦରେ ଆୱାମୀ ଲିଗ୍ ପୂର୍ବ ପାକିସ୍ତାନରେ ଅସହଯୋଗ ଆନ୍ଦୋଳନ କଲା । ୧୯୭୧ ମାର୍ଚ୍ଚ ମାସରେ ୟାହିୟା ପୂର୍ବ ପାକିସ୍ତାନୀମାନଙ୍କୁ ଦମନ କରିବାକୁ ଏକ ସ୍ୱତନ୍ତ୍ର ମିଲିଟାରୀ ଘୋଷଣାନାମା ଜାରି କଲେ ।

ମୁଜିବୁରଙ୍କୁ ଗିରଫ କରାଯାଇ ପଶ୍ଚିମ ପାକିସ୍ତାନର ଏକ ଜେଲ୍‌ରେ ରଖାଗଲା । ପାକିସ୍ତାନୀ ସୈନ୍ୟମାନେ ପୂର୍ବ ପାକିସ୍ତାନୀଙ୍କ ଘର, ବ୍ୟବସାୟ କେନ୍ଦ୍ର ଲୁଟ କଲେ । ଅସହଯୋଗ ଆନ୍ଦୋଳନକୁ ସହଯୋଗ କରୁଥିବା ଛାତ୍ର, ଅଧ୍ୟାପକ, ବୁଦ୍ଧିଜୀବୀ ଓ ପ୍ରଫେସନାଲ୍‌ମାନଙ୍କୁ ନିର୍ଦ୍ଦୟ ଭାବେ ହତ୍ୟା କରାଗଲା । ଏଇ ଗଣହତ୍ୟାରେ ପୂର୍ବ ପାକିସ୍ତାନର ପ୍ରାୟ ୩୦ ଲକ୍ଷ ଲୋକଙ୍କ ଜୀବନ ଯାଇଥିଲା ।

ଆୱାମୀ ଲିଗ୍‌ର ନେତାମାନେ ଲୁଚି କରି ଭାରତ ଚାଲି ଆସିଲେ । ଏକ ସ୍ୱାଧୀନ ବଙ୍ଗଳାଦେଶ ଗଠନ ହେଲା ବୋଲି ସେମାନେ ଭାରତରେ ରହି ଘୋଷଣା କରିଦେଲେ ।

ବଙ୍ଗଳାଦେଶରେ ପାକିସ୍ତାନୀ ସୈନିକଙ୍କ ଦମନ ଲୀଳା ଏତେ ଭୟଙ୍କର ଥିଲା ଯେ ଲକ୍ଷ ଲକ୍ଷ ସଂଖ୍ୟାରେ ବଙ୍ଗଳାଦେଶୀ ଶରଣାର୍ଥୀ ଭାରତ ଚାଲିଆସିଲେ । ଏମାନଙ୍କ ସଂଖ୍ୟା ଥିଲା ପ୍ରାୟ ଏକ କୋଟି । କଲିକତାର ରିଲିଫ୍ କ୍ୟାମ୍ପମାନଙ୍କରେ ଏମାନଙ୍କୁ ରଖାଗଲା । ଏମାନଙ୍କର ଖାଦ୍ୟ, ବସ୍ତ୍ର, ଡାକ୍ତରୀ ଚିକିତ୍ସା କଥା ଭାରତ ସରକାର ବୁଝିଲେ । ସେତେବେଳେ ଏଇ ଖର୍ଚ୍ଚ ପାଇଁ ପ୍ରାୟ ୩୬୦ କୋଟି ଟଙ୍କା ଦରକାର ହୋଇଥିଲା । ଭାରତୀୟ ଅର୍ଥନୀତି ପାଇଁ ଏହା ଏକ ବଡ ବୋଝ ଥିଲା । ୧୯୭୧ ଅଗଷ୍ଟ ମାସରେ ମୁଜିବୁର ରହମନଙ୍କ ଗୁପ୍ତ ବିଚାର ପାକିସ୍ତାନରେ ଆରମ୍ଭ ହେଲା । ଏବଂ ବିଚାର ଶେଷରେ ମୁଜିବୁରଙ୍କୁ ଫାସି ଦିଆଯିବା ପାଇଁ ସମସ୍ତ ପ୍ରସ୍ତୁତି ଶେଷ ହୋଇଯାଇଥିଲା ।

ଇନ୍ଦିରା ଏ ଘଟଣାକୁ ଗୁରୁତର ଭାବେ ନେଲେ । ପୃଥିବୀର ଅଧିକାଂଶ ରାଷ୍ଟ୍ରମୁଖ୍ୟଙ୍କୁ ଏଥିରେ ହସ୍ତକ୍ଷେପ କରିବାକୁ ଅନୁରୋଧ କରି ସେ ଚିଠି ଲେଖିଲେ । ଚିଠିରୁ କିଛି ସୁଫଳ ମିଳିଲାନି । ଇନ୍ଦିରା ବ୍ୟକ୍ତିଗତ ଭାବେ କିଛି ଦେଶକୁ ଯାଇ ପୂର୍ବ ପାକିସ୍ତାନର ଘଟଣା ଏବଂ ଭାରତର ଶରଣାର୍ଥୀ ସମସ୍ୟା କହିବାକୁ ଠିକ୍ କଲେ ।

୧୯୭୧ ମସିହା ଅକ୍ଟୋବର ମାସରେ ସେ ଏକ ୨୧ ଦିନିଆ ଯାତ୍ରାରେ ବେଲଜିୟମ୍, ଫ୍ରାନ୍ସ, ଅଷ୍ଟ୍ରିଆ, ପଶ୍ଚିମ ଜର୍ମାନୀ, ସୋଭିଏତ୍ ରୁଷ ଏବଂ ଯୁକ୍ତରାଷ୍ଟ୍ର ଆମେରିକାକୁ ଗଲେ ।

ଋଷର ଶାସନ ମୁଖ୍ୟ ବ୍ରେଜ୍‌ନେଭ୍ ଏବଂ ପ୍ରଧାନମନ୍ତ୍ରୀ କୋସିଜିନ୍ ବଙ୍ଗଳାଦେଶ ପ୍ରସଙ୍ଗରେ ଇନ୍ଦିରାଙ୍କୁ ସମର୍ଥନ କଲେ ଏବଂ ପ୍ରତିଶ୍ରୁତି ଦେଲେ ଯେ ଭାରତ ଯଦି ଏହି ପ୍ରସଙ୍ଗ ନେଇ ପାକିସ୍ତାନ ସହ ଯୁଦ୍ଧ କରେ ସେମାନେ ଇନ୍ଦିରାଙ୍କୁ ସାହାଯ୍ୟ କରିବେ । ୟୁରୋପ ଯାତ୍ରା ଶେଷ କରି ଇନ୍ଦିରା ଆମେରିକାରେ ପହଞ୍ଚିଲେ ନଭେମ୍ବର ପ୍ରଥମ ସପ୍ତାହରେ । ଇନ୍ଦିରାଙ୍କ ସହ ଆମେରିକା ରାଷ୍ଟ୍ରପତି ନିକ୍‌ସନଙ୍କ ସେତେବେଳେ ଉତ୍ତମ ସମ୍ପର୍କ ନଥିଲା । ଆମେରିକାରେ ଭଲ ସ୍ୱାଗତ ମିଳିଲାନି ଇନ୍ଦିରାଙ୍କୁ । କୁହାଯାଏ, ନିକ୍‌ସନ କୁଆଡେ ୧୯୬୯ ମସିହାର ପ୍ରତିଶୋଧ ନେବାକୁ ଚେଷ୍ଟା କରିଥିଲେ । ୧୯୬୯ରେ ନିକ୍‌ସନ ଭାରତ ଭ୍ରମଣରେ ଆସିଥିବା ବେଳେ ତାଙ୍କୁ ଏଠି ସେମିତି କିଛି ଭଲ ଅଭ୍ୟର୍ଥନା ଦିଆ ଯାଇନଥିଲା, ଠିକ୍ ଯେଉଁ ଅଭ୍ୟର୍ଥନା ୧୯୫୬ରେ ଆମେରିକାର ରାଷ୍ଟ୍ରପତି ଆଇଜନ ଆୱାର ଭାରତ ଆସିଲା ବେଳେ ହୋଇଥିଲା । ଇନ୍ଦିରାଙ୍କ ପ୍ରତି ନିକସନ୍‌ଙ୍କର ତେଣୁ ରାଗ ଥିଲା । ସେ ରାଗ ନିକ୍‌ସନ ଶୁଝେଇ ଦେବାକୁ ଚାହିଁଲେ ।

ଇନ୍ଦିରା ନିକ୍‌ସନଙ୍କ ସାକ୍ଷାତ ଠିକ୍ ହୋଇଥିଲା ନଭେମ୍ବର ୪ ଏବଂ ୫ ତାରିଖରେ । ଏଇ ସାକ୍ଷତ ହ୍ୱାଇଟ୍ ହାଉସର ଓଭାଲ୍ ଅଫିସରେ ହେବ ବୋଲି ସ୍ଥିର ହୋଇଥିଲା ।

ପ୍ରଥମ ଦିନ କଥାବାର୍ତ୍ତାରେ ଇନ୍ଦିରା ଏବଂ ନିକ୍‌ସନ ହାତ ଥିବା ଦୁଇଟି ଚୌକିରେ ମୁହାମୁହିଁ ବସିଲେ । ପାଖରେ ପଡିଥିବା ସୋଫା ସେଟରେ ବସିଥିଲେ ଭାରତର ପି. ଏନ୍. ହକ୍ସର ଏବଂ ଆମେରିକାର ହେନେରୀ କିସିଞ୍ଜର୍ ।

ଫଟୋ ସେସନ୍ ସରିବା ପରେ ପ୍ରଥମେ ଆଲୋଚନା ଆରମ୍ଭ କରି ନିକ୍‌ସନଙ୍କ ଭିଏତ୍‌ନାମ ଏବଂ ଚୀନ ନୀତିକୁ ଇନ୍ଦିରା ପ୍ରଶଂସା କଲେ, ଠିକ୍ ଯେମିତି ଜଣେ ଶିକ୍ଷକ ଦୁର୍ବଳ ଛାତ୍ରକୁ ପ୍ରଥମେ ତାରିଫ କରନ୍ତି ଏବଂ ପରେ ବଙ୍ଗଳାଦେଶର ଘଟଣା ବର୍ଣ୍ଣନା କରି ସେ ସ୍ପଷ୍ଟ କରିଦେଲେ ଯେ ଯଦି ଦରକାର ହୁଏ ଭାରତ ପାକିସ୍ତାନ ଉପରେ ଆକ୍ରମଣ କରିପାରେ ।

ନିକ୍‌ସନ ନିଜ କ୍ରୋଧକୁ ସେ ଦିନ କାବୁରେ ରଖିଥିଲେ ଏବଂ ଇନ୍ଦିରାଙ୍କୁ ସିଧାସିଧା କହିଦେଲେ, ସେ ପାକିସ୍ତାନର ମିଲିଟାରୀ ଶାସକଙ୍କୁ ଛାଡିପାରିବେନି । ଶରଣାର୍ଥୀ ସମସ୍ୟା ଭାରତର ଆଭ୍ୟନ୍ତରୀଣ ସମସ୍ୟା ଏବଂ ଯଦି ଭାରତ ପାକିସ୍ତାନ ଯୁଦ୍ଧ ହୁଏ, ଆମେରିକା ପାକିସ୍ତାନକୁ ସାହାଯ୍ୟ କରିବ ଏବଂ ଭାରତ ପ୍ରତି ଅର୍ଥନୈତିକ ବାସନ୍ଦ ଆଣିବ । ଏକଥା କହିଲା ବେଳେ ନିକ୍‌ସନଙ୍କ ଦେହରୁ ଗମ୍‌ଗମ୍ ଝାଳ ବୋହୁଥିଲା ।

ଦ୍ୱିତୀୟ ଦିନ ଆଲୋଚନା ପାଇଁ ଆଉ କିଛି କଥା ନଥିଲା । ତଥାପି ଇନ୍ଦିରା ଓଭାଲ୍ ଅଫିସ ଗଲେ ଏବଂ ସେଠାରେ ନିକସନ୍‌ଙ୍କୁ ସାକ୍ଷତା କରିବାକୁ ତାଙ୍କୁ ୪୫ ମିନିଟ୍ ଅପେକ୍ଷା କରିବାକୁ ପଡିଥିଲା । ଜଣେ ରାଷ୍ଟ୍ର ମୁଖ୍ୟକୁ ସାକ୍ଷାତ ଦେବାରେ ଯେଉଁ ପ୍ରୋଟୋକଲ୍ ମାନିବା କଥା, ନିକ୍‌ସନ ସେଦିନ ତାହା ମାନିନଥିଲେ ।

କଥାବାର୍ତ୍ତା ପରେ କିସିର ଏକ ସାମ୍ବାଦିକ ସମ୍ମିଳନୀ କଲେ । କହିଲେ, ଦୁଇନେତାଙ୍କ ଏ ସାକ୍ଷାତର ସେମିତି କିଛି ନିର୍ଯ୍ୟାସ ନାହିଁ । ଏମାନେ କେବଳ ନିଜେ କହୁଥିଲେ, କିଏ କାହା କଥା ଶୁଣୁନଥିଲେ । କିସିର କହୁ କହୁ ବି ଏକଥା କହିଦେଲେ, ଇନ୍ଦିରାଙ୍କ କଠୋର ମନୋଭାବ ନେଇ ନିକ୍‌ସନ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଛପାଯୋଗ୍ୟ ନୁହେଁ - ନଟ୍ ପ୍ରିଣ୍ଟେବଲ୍ ।

ସେଇ ଅଛାପାଯୋଗ୍ୟ ମନ୍ତବ୍ୟ ଏବେ ପ୍ରକାଶିତ ହୋଇଛି - 'ଇନ୍ଦିରା ଏକ ବୁଢୀ ଡାହାଣୀ, ଆନ୍ ଓଲ୍ଡ ଓିଚ୍ ଏବଂ ଭାରତୀୟମାନେ ବାଷ୍ଟାର୍ଡ ।'

ହଁ, ପାଠକ ବନ୍ଧୁ, ୧୯୭୧ର ଇତିହାସକୁ ନେଇ ଏ ଲେଖକ ଆଲୋଚନାକୁ ଏଠି ଆଉ ଦୀର୍ଘ କରିବାକୁ ଚାହେଁନି ।

ତେବେ ଇନ୍ଦିରା ଗାନ୍ଧୀ ଗୋଟିଏ କଥା ସ୍ପଷ୍ଟ କରି ଦେଇଥିଲେ - ନିଜ ଦେଶର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଅନ୍ୟ କାହାର ବୋଲକରା ହେବା ଅପେକ୍ଷା ଭାରତର ସ୍ୱାର୍ଥ ରକ୍ଷା ପାଇଁ 'ବୁଢୀ ଡାହାଣୀ' ହେବା ଭଲ; ଅନ୍ୟର ସ୍ୱାର୍ଥ ପାଇଁ କଣ୍ଢେଇଟିଏ ହେବା ଅପେକ୍ଷା ନିଜ ଦେଶର ସୁବିଧା ପାଇଁ ବାଷ୍ଟାର୍ଡ ହେବା ଭଲ ।

ଏ ପୁଣି ଭାରତୀୟ ବାଷ୍ଟାର୍ଡ - ମନ୍ଦ କ'ଣ ?



# ଇତିହାସର ରାଜନୀତିକରଣ

**ବି**ଡ଼ମ୍ବନା ଯେ ଏଠି ସରକାର ବଦଳିଲେ, ଦେଶର ଇତିହାସ ବଦଳେଇବାକୁ ପ୍ରଚେଷ୍ଟା ଚଲେ। ଇତିହାସର ନୂଆ ଅର୍ଥ ହୁଏ। ଐତିହାସିକ ବ୍ୟକ୍ତିତ୍ୱଙ୍କର ନୂତନ ମୂଲ୍ୟାୟନ କରାଯାଏ। ଇତିହାସକୁ ଖୋଳି ନୂଆ ବିବାଦ ସୃଷ୍ଟି କରିବା ପାଇଁ ବର୍ତ୍ତମାନର ରାଜନେତାମାନେ ବ୍ୟଗ୍ର ହୋଇ ଉଠନ୍ତି ଏବଂ ଐତିହାସିକ ପୁରୁଷଙ୍କର ଏ ପୁନଃମୂଲ୍ୟାୟନ କାହିଁକି ବୋଲି ପ୍ରଶ୍ନ କଲେ ଉତ୍ତର ଆସେ, ନେପୋଲିୟନ, ଚର୍ଚ୍ଚିଲ୍, ମାୟୋସେତୁଙ୍ଗ୍‌ଙ୍କ ପରି ଐତିହାସିକ ପୁରୁଷଙ୍କ ଯେତେବେଳେ ପୁନଃମୂଲ୍ୟାୟନ ହେଉଛି ସେତେବେଳେ ଏଠି ଗାନ୍ଧୀ, ପଟେଲ, ନେହୁରୁ ଏବଂ ସୁବାସ ବୋଷଙ୍କ ଆଭ୍ୟନ୍ତରୀଣ ଜୀବନୀର ପୁଂଖାନୁପୁଂଖ ତର୍ଜମା ହେଲେ କ୍ଷତି କଣ ?

ଏଇ ଯେମିତି ଟିପୁ ସୁଲତାନଙ୍କୁ ନେଇ କର୍ଣ୍ଣାଟକରେ ହୋ-ହଲ୍ଲା ଚାଲିଲା। ଧର୍ମକୁ ଆଧାର କରି ସେଠି ଧୃବୀକରଣ ହେଲା। ଏ ସାଂପ୍ରଦାୟିକ ଧୃବୀକରଣ କେବଳ କର୍ଣ୍ଣାଟକରେ ଅଟକି ନାହିଁ, ଏହା ସମଗ୍ର ଦେଶକୁ ଛୁଇଁଲାଣି ଏବଂ ଅଷ୍ଟାଦଶ ଶତାବ୍ଦୀର ଦକ୍ଷିଣ ଭାରତୀୟ ଶାସକ ଟିପୁ ସୁଲତାନ ଜଣେ ଉଦାରବାଦୀ ତଥା ଜାତୀୟତାବାଦୀ ଶାସକ ଥିଲେ ନା ଜଣେ ଅତ୍ୟାଚାରୀ ଶାସକ ଥିଲେ ଏଥିନେଇ ବିତର୍କ ଆରମ୍ଭ ହୋଇଯାଇଛି।

ବିବାଦର ପୃଷ୍ଠଭୂମି ହେଉଛି ଠିକ୍ ଏମିତି- କର୍ଣ୍ଣାଟକର କଂଗ୍ରେସ ସରକାର ସରକାରୀ ଭାବେ ଟିପୁ ସୁଲତାନଙ୍କର ଜନ୍ମବାର୍ଷିକୀ ପାଳନ ପାଇଁ ଉତ୍ସବର ଆୟୋଜନ କଲେ। ଏହା ଥିଲା ପ୍ରଥମ ସରକାରୀ ଟିପୁ ଜୟନ୍ତୀ। ଏଥିରେ ଟିପୁ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବେ ତାଙ୍କର ମହିମାଗାନ କରାଗଲା। ୧୭୮୨ ମସିହାରୁ ୧୭୯୯ ମସିହା ପର୍ଯ୍ୟନ୍ତ ତାଙ୍କର ୧୭ ବର୍ଷର ଶାସନକୁ ଏକ ଯୁଗାନ୍ତକାରୀ ଶାସନ ଭାବେ ଚିତ୍ରିତ ହେଲା। ମହୀଶୁରର ଶାସକ ହୋଇ କର୍ଣ୍ଣାଟକର ଏକତ୍ରୀକରଣରେ ଟିପୁଙ୍କର ଅବଦାନ ଅତୁଳନୀୟ ବୋଲି ପ୍ରଚାର ଚାଲିଲା।

ବିଜେପିର ସଂଘ ପରିବାର କିନ୍ତୁ ଟିପୁଙ୍କୁ ନେଇ ଏପରି ଦାବିକୁ ମାନିବାକୁ ନାରାଜ। ଏ ସଂପର୍କରେ ସେମାନଙ୍କ ଆଭିମୁଖ୍ୟ ନିଆରା। ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସମେତ ବିଶ୍ୱ ହିନ୍ଦୁ ପରିଷଦ ଏବଂ ଅନ୍ୟ ସଂଘୀ ଅନୁଷ୍ଠାନ ଟିପୁଙ୍କ ଉତ୍ସବକୁ

କର୍ଣ୍ଣାଟକରେ ବିରୁଦ୍ଧ କଲେ ଏବଂ ଏଇ ଉତ୍ସବ କଂଗ୍ରେସର ଭୋଟ ବ୍ୟାଙ୍କ ଏବଂ ସିକୁଲାର ଚରିତ୍ର ସୃଷ୍ଟି ପାଇଁ ଉଦ୍ଦିଷ୍ଟ ବୋଲି ଯୁକ୍ତି କଲେ। ସେମାନଙ୍କ ଦାବୀ ଥିଲା, ଟିପୁ ସୁଲତାନ ଜଣେ ଅତ୍ୟାଚାରୀ ମୁସଲିମ୍ ଶାସକ ଥିଲେ। ସେ ବଳ ପୂର୍ବକ ଧର୍ମାନ୍ତରୀକରଣ କରୁଥିଲେ। ହିନ୍ଦୁ ମନ୍ଦିର ସେ ଭାଙ୍ଗୁ ଥିଲେ। ଫରାସୀ ସମ୍ରାଟ ଷୋଡ଼ଶ ଲୁଇ ଏବଂ ନେପୋଲିୟନଙ୍କର ସେ ଭାରତରେ ଏକ ଦଲାଲ ଥିଲେ ଏବଂ ରଙ୍ଗନାଥ ସ୍ୱାମୀ ହିନ୍ଦୁ ମନ୍ଦିର ପରି ଯେଉଁ ଅଳ୍ପ କେତୋଟି ହିନ୍ଦୁ ମନ୍ଦିର ସେ ପ୍ରତିଷ୍ଠା କରିଥିଲେ ସେସବୁ ମନ୍ଦିର ଟିପୁ ତାଙ୍କର ପୂଜାପାଠ ପାଇଁ କରିଥିଲେ। ସେଥିରେ ହିନ୍ଦୁ ଜ୍ୟୋତିଷ ରଖି ତାଙ୍କର ଭବିଷ୍ୟତ ଗଣନା କରୁଥିଲେ।

ଟିପୁ ସୁଲତାନଙ୍କୁ ନେଇ କର୍ଣ୍ଣାଟକରେ ବିବାଦ ଏତେ ଜଟିଳ ହୋଇଗଲା ଯେ, ଏଥିପାଇଁ ବିଜେପି ଏବଂ ତାଙ୍କର ସହଯୋଗୀ ସଂଗଠନ କର୍ଣ୍ଣାଟକ ବନ୍ଦ ଡାକରା ଦେଇଦେଲେ । ଆନ୍ଦୋଳନରେ କେତେଜଣ ଆନ୍ଦୋଳନକାରୀ ମୃତ୍ୟୁ ବରଣ କଲେ। ଟିପୁଙ୍କୁ ନେଇ ବିବାଦ ବାସ୍ତବରେ ଏକ ଅଦରକାରୀ ବିବାଦ। ସତକଥା ହେଲା, ହାଇଦର ଅଲ୍ଲୀଙ୍କର ପୁତ୍ର ଟିପୁ ସୁଲତାନ ଜଣେ ଅତ୍ୟାଚାରୀ ଶାସକ ନଥିଲେ କିମ୍ବା ଜଣେ ସ୍ୱାଧୀନତା ସଂଗ୍ରାମୀ ନଥିଲେ। ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଦକ୍ଷିଣ ଭାରତର ସେ ଜଣେ ନିରଙ୍କୁଶ ଶାସକ ଥିଲେ। ପୃଥିବୀର ମଧ୍ୟଯୁଗୀୟ ଶାସକମାନେ ଯେପରି ବ୍ୟବହାର କରୁଥିଲେ ସେପରି ବ୍ୟବହାର ସେ ପ୍ରଜାଙ୍କ ପ୍ରତି କରୁଥିଲେ। ନିଜ ଶାସନ ପ୍ରତି ସେ ନିଷ୍ଠା ରଖିଥିଲେ। ରାଜ୍ୟ ବୃଦ୍ଧି ପାଇଁ ଚେଷ୍ଟାରେ ଥିଲେ। ନିଜର ସାର୍ବଭୌମତ୍ୱ ରକ୍ଷା ପାଇଁ ସେ ଇଷ୍ଟ୍ ଇଣ୍ଡିଆ କଂପାନୀ ସହ ଯୁଦ୍ଧ କରିଥିଲେ। ଯଦିଓ ନିଜ ରାଜ୍ୟର ସୀମା ବୃଦ୍ଧି ପାଇଁ ଟିପୁ ମହାରାଷ୍ଟ୍ର, କୁର୍ଗ, ତ୍ରାନ୍‌ଭୋକରର ହିନ୍ଦୁ ରାଜାଙ୍କ ସହ ସଂଗ୍ରାମ କରିଥିଲେ, ତାଙ୍କ ପାଇଁ ବେଶି ବିପଦ କିନ୍ତୁ ଥିଲେ ଇଂରେଜମାନେ। ଇଂରେଜମାନଙ୍କ ସହ ସେ ଖୁବ୍ ଦୃଢ଼ତାର ସହ ଲଢୁଥିଲେ। ଅନେକ ଯୁଦ୍ଧ ସେ ଜିତିଥିଲେ। କିଛି ଯୁଦ୍ଧରେ ସେ ହାରିଥିଲେ। ଏହା ନିଶ୍ଚିତ ଯେ, ଇଷ୍ଟ୍ ଇଣ୍ଡିଆ କମ୍ପାନୀର ସୈନିକ ସହ ଯୁଦ୍ଧ କରିବାରେ ତତ୍‌କାଳୀନ ଦକ୍ଷିଣ ଭାରତରେ ଟିପୁ ସୁଲତାନ ଥିଲେ ଏକମାତ୍ର ଯୋଦ୍ଧା ସମ୍ରାଟ। ସେ ସ୍ୱାଧୀନତା ସଂଗ୍ରାମୀ ନଥିଲେ କିମ୍ବା ହିନ୍ଦୁ ବିରୋଧୀ ଶାସକ ନଥିଲେ। କାରଣ ଟିପୁଙ୍କ ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମର କୌଣସି ଆଭାସ ନଥିଲା ।

ଟିପୁଙ୍କୁ ନେଇ ଇତିହାସରେ ବିବାଦ ଭାରତରେ ଏବେ ଏକ ନୂଆ ଘଟଣା ନୁହେଁ। ଇତିହାସକୁ ରାଜନୀତିକରଣ କରିବାର ପ୍ରକ୍ରିୟା ଏଠାରେ ଅନେକ ଦିନ ଠାରୁ

ଆରମ୍ଭ ହୋଇଯାଇଛି। ୧୯୪୭ ମସିହାରୁ ଉଭୟ ପାକିସ୍ଥାନ ଏଇ ଭାରତରେ ଇତିହାସର ମଧ୍ୟ ରାଜନୀତିକରଣ ଚାଲିଛି। ଇସଲାମୀୟ ରାଷ୍ଟ୍ର ପାକିସ୍ଥାନ ତା'ର ଇତିହାସ ଏବଂ ସଂସ୍କୃତିକୁ ଭାରତ ଇତିହାସ ଏବଂ ସଂସ୍କୃତି ସହ ଯୋଡ଼ିବାକୁ ଚାହେଁନା। ଆରବୀୟ ସଂସ୍କୃତି ସହ ତାଙ୍କ ସଂସ୍କୃତି ସଂଶ୍ଲିଷ୍ଟ ବୋଲି ତାଙ୍କ ଇତିହାସକାରମାନେ ଇତିହାସ ଲେଖିବାରେ ବ୍ୟସ୍ତ। ଭାରତରେ ବି ଦକ୍ଷିଣ ପନ୍ଥୀ ଆଦର୍ଶରେ ପ୍ରଭାବିତ ଥିବା କିଛି ଐତିହାସିକମାନେ ଭାରତର ମୁସଲିମ୍ ସଂସ୍କୃତିକୁ ଭାରତୀୟ ସଂସ୍କୃତିର କୌଣସି ଆଧାର ନୁହେଁ ବୋଲି କହିବାରେ ତତ୍ପର ଯଦିଓ ଏ ଦୁଇ ଦେଶ ୧୯୪୭ ମସିହା ପର୍ଯ୍ୟନ୍ତ ଭାରତୀୟ ଭୂଖଣ୍ଡର ସଂସ୍କୃତିକୁ ନେଇ ଗର୍ବ କରୁଥିଲେ।

ଯାହା ଜଣାଯାଏ, ଭାରତୀୟ ଇତିହାସକାରମାନେ ଏବେ ଦୁଇ ଦଳରେ ବିଭକ୍ତ ହୋଇଯାଇଛନ୍ତି। ଏଇ ଦୁଇ ଗୋଷ୍ଠୀ ପରସ୍ପରକୁ ସମାଲୋଚନା ବି କରନ୍ତି। ଏଥିରୁ ଗୋଟିଏ ଗୋଷ୍ଠୀ ନିଜକୁ ଉଦାରବାଦୀ ତଥା ମାର୍କ୍ସବାଦୀ କହୁଥିବା ବେଳେ ଅନ୍ୟଟି ଗୈରିକ ଐତିହାସିକ ଭାବେ ପରିଚିତ। ଗୈରିକରଣ ହୋଇଥିବା ଏଇ ଇତିହାସକାରମାନେ ବିଜେପି ସହ ସଂପୃକ୍ତ ସଂଘ ପରିବାର ଆଦର୍ଶରେ ଅନୁପ୍ରାଣିତ।

କହିବା ବାହୁଲ୍ୟ ଯେ, ଇତିହାସ କୌଣସି କାଳ୍ପନିକ କଥାବସ୍ତୁ ନୁହେଁ। ଏହା ଏକ ତଥ୍ୟ ଭିତ୍ତିକ ଦସ୍ତାବିଜ୍। କିନ୍ତୁ କେବଳ କିଛି ସଂଘୀ ଐତିହାସିକମାନେ ଇତିହାସରେ ତଥ୍ୟ ଅପେକ୍ଷା ବିଶ୍ୱାସ ଉପରେ ଗୁରୁତ୍ୱ ଦିଅନ୍ତି। ସ୍ଥାନୀୟ ଲୋକକଥାକୁ ନେଇ ଇତିହାସର ସୃଷ୍ଟି କରନ୍ତି ଏବଂ ଏହାର ବିରୁଦ୍ଧ ହେଲେ ଏଇ ବିରୁଦ୍ଧ ପରମ୍ପରା ତଥା ବିଶ୍ୱାସର ବିରୁଦ୍ଧ ବୋଲି ଅସହିଷ୍ଣୁ ହୋଇ ଯାଆନ୍ତି ଏବଂ ଏପରି ବି ହୁଏ, ବିରୁଦ୍ଧକାରୀଙ୍କୁ ହତ୍ୟା କରିବାର ଧମକ ବି ଆସିଥାଏ। ଟିପୁ ସୁଲତାନଙ୍କୁ ଏକ ଉଦାରବାଦୀ ତଥା ଜାତୀୟତାବାଦୀ ସମ୍ରାଟ ବୋଲି କହୁଥିବା କର୍ଣ୍ଣାଟକର ବିଶିଷ୍ଟ ଲେଖକ ତଥା ଅଭିନେତା ଗିରିଶ କର୍ନାଡ଼ଙ୍କୁ ହତ୍ୟାର ଧମକ ମିଳିଥିଲା।

ଭାରତୀୟ ଇତିହାସକୁ ଗୈରୀକରଣ କରିବାରେ ଏ ଦେଶରେ ଯେତେ ଇତିହାସକାର ଅଛନ୍ତି ତାଙ୍କ ମଧ୍ୟରେ ମରାଠି ଲେଖକ ପି.ଏନ୍. ଓକ୍ ଅନ୍ୟତମ। ଓକ୍‌ଙ୍କର ଭାରତ ଇତିହାସକୁ ସଂଘ ପରିବାର ଗ୍ରହଣ ବି କରେ। ପି.ଏନ୍. ଓକ୍ କହନ୍ତି – ଭାରତ ଇତିହାସର ମୂଳସୂତ୍ର ହେଉଛି ବେଦ। ସୁତରାଂ ଭାରତର ସମସ୍ତ ଇତିହାସରେ ବୈଦିକ ତଥ୍ୟ ରହିବା ଉଚିତ୍। ଏପରିକି ପୃଥିବୀର ସମସ୍ତ ଧର୍ମୀୟ ସଂସ୍କୃତି ଭାରତର ବୈଦିକ ସଂସ୍କୃତିର ଏକ ଅଂଶ ବୋଲି ଓକ୍ ଯୁକ୍ତି ଦର୍ଶାନ୍ତି। ଖ୍ରୀଷ୍ଟିଆନ୍‌ଟିକୁ ଓକ୍ କହନ୍ତି ଏହା କୃଷ୍ଣନୀତିର ଅପଭ୍ରଂଶ। ଆବ୍ରାହମ୍ ହେଉଛନ୍ତି ବ୍ରହ୍ମାଙ୍କର ପରବର୍ତ୍ତୀ ନାଁ। ତାଜମହଲ

ପୂର୍ବର ଏକ ଶିବ ମନ୍ଦିର ଏବଂ ରାମାୟଣ ଓ ମହାଭାରତ କୌଣସି ମନଗଢ଼ା ପୌରାଣିକ କାହାଣୀ ନୁହେଁ। ଏହା ଏକ ଐତିହାସିକ ସତ ଘଟଣାର ଦଲିଲ। ଓକ୍‌ଙ୍କ ଇତିହାସକୁ ଗବେଷଣା କରୁଥିବା କିଛି ଐତିହାସିକ ବି ରାମାୟଣ ଓ ମହାଭାରତ ଯୁଦ୍ଧର ତାରିଖ ଦେଇଦେଲେଣି। ଏମାନେ ତଥ୍ୟ ଦେଇ କହନ୍ତି - ପ୍ରଭୁ ଶ୍ରୀରାମଙ୍କର ଜନ୍ମ ତାରିଖ ଥିଲା ଖ୍ରୀ. ପୂ.୫୧୧୪ ଜାନୁୟାରୀ ଦଶ ତାରିଖ ଏବଂ ମହାଭାରତ ଯୁଦ୍ଧ ହୋଇଥିଲା ଖ୍ରୀ. ପୂ.୩୧୩୯ ସେପ୍ଟେମ୍ବର ବାର ତାରିଖରେ। ଏଇ ଐତିହାସିକଙ୍କ ମତରେ ଆଜକୁ ପ୍ରାୟ ପାଂଚ ହଜାରରୁ ଉର୍ଦ୍ଧ୍ୱ ସମୟ ପୂର୍ବେ ମହାଭାରତ ଯୁଦ୍ଧ ହୋଇଥିଲା ଏବଂ ଶ୍ରୀରାମଚନ୍ଦ୍ରଙ୍କର ଜନ୍ମର ସମୟ ପ୍ରାୟ ସାତ ହଜାର ବର୍ଷ ହୋଇଗଲାଣି। ଐତିହାସିକ ଓକ୍ ଏକଥା ବି କହନ୍ତି, ଭାରତର କିଛି ତଥାକଥିତ ସିକୁଲାରବାଦୀ ଏବଂ ମାର୍କସବାଦୀ ଐତିହାସିକମାନେ ଖୁବ୍ ମିଛ ଏବଂ କାଳ୍ପନିକ ଇତିହାସ ଏଠି ଲେଖିଛନ୍ତି।

ହଁ ପାଠକ ବନ୍ଧୁ! ଇତିହାସ ଏକ ଗବେଷଣାର କଥା। ବୌଦ୍ଧିକତାର ବିଷୟ। ତଥ୍ୟ ତଥା ହେତୁବାଦ ଉପରେ ଏହା ପର୍ଯ୍ୟବେଶିତ । କିନ୍ତୁ ଯେତେବେଳେ କିଛି ସାମାନ୍ୟ ଲେଖକ ନିଜ କଥାକୁ ପାଣ୍ଡିତ୍ୟର ନାଁ ଦିଏ, ଏହା ଇତିହାସ ପାଇଁ କ୍ଷତିକାରକ ହୋଇଥାଏ। ମେଡ଼ିଓକ୍ରାସି ଯେ ସ୍କଲାରସିପ୍ ନୁହେଁ, ଏଥିନେଇ ଭ୍ରମ ସୃଷ୍ଟି ହୁଏ। ସ୍ୱିସ୍ ଲେଖକ ତଥା ଐତିହାସିକ ଏରିକ୍ ଭନ୍ ଡେନିକନ୍ ତାଙ୍କର ଅନେକ ପୁସ୍ତକରେ ଲେଖନ୍ତି, ପୃଥିବୀର ସମସ୍ତ ଐତିହାସିକ ଭାସ୍କର୍ଯ୍ୟ ଏବଂ ମନୁମେଣ୍ଟ ଏଠି ବାହାର ଗ୍ରହରୁ ଆସିଥିବା ଦେବତା ଏଲିଅନମାନଙ୍କ ଦ୍ୱାରା କରାଯାଇଛି । ପୃଥିବୀ ପୃଷ୍ଠକୁ ଏ ବର୍ହିଗ୍ରହୀମାନେ ଅନେକ ସମୟରେ ଆସନ୍ତି ବୋଲି ଏରିକ୍ ଯୁକ୍ତି ଦର୍ଶାନ୍ତି । ଗତ ଦୁଇ ହଜାର ମସିହାରେ ବାଜପେୟୀଙ୍କ ବେଳେ ପି.ଏନ୍. ଓକ୍ ଯେବେ ମାନ୍ୟବର ସୁପ୍ରିମ୍‌କୋର୍ଟରେ ତାଜମହଲ ଏକ ହିନ୍ଦୁ ମନ୍ଦିର କହି ମକଦ୍ଦମା କଲେ, ମାନ୍ୟବର ସୁପ୍ରିମ୍‌କୋର୍ଟର ଦୁଇଜଣିଆ ଖଣ୍ଡପୀଠ ଏହାକୁ ନାକଚ କରି କହିଦେଲେ, ଏହା ଗ୍ରହଣୀୟ ନୁହେଁ। କିଛି ଲୋକଙ୍କ ମୁଣ୍ଡ ପଗଡ଼ି ତଳେ ଯେପରି ମହୁମାଛିଟିଏ ବସି ରହିଛି।

ସୁତରାଂ ପକ୍ଷପାତ ଇତିହାସକାରମାନେ ଭାରତ ଇତିହାସ ନ ଲେଖିଲେ ଭଲ। ପୁରାଣକୁ ଇତିହାସ କହୁଥିବା ଲେଖକଙ୍କୁ ଇତିହାସ ଲେଖିବା ମନାହେବା ଉଚିତ । କାରଣ ଇତିହାସକୁ ପିଲାଙ୍କ ପାଠ୍ୟକ୍ରମରେ ରଖାଯାଏ; ଜାତି ଗଠନରେ ଏହାକୁ ଉପାଦାନ କରାଯାଏ ଏବଂ ସବୁଠାରୁ ଭଲ ହେବ, ଇତିହାସର ରାଜନୀତିକରଣ ନହେଲେ।

❑❑❑

# ଜାତି ରାଜନୀତି

ଉତ୍ତର ପ୍ରଦେଶରେ ଗତ ୨୦୦୭ ମସିହା ବିଧାନସଭା ନିର୍ବାଚନରେ ସୁଶ୍ରୀ ମାୟାବତୀ ନିର୍ବାଚନ ଜିତିଲା ପରେ ସବୁଠି ନୂଆ ଆଲୋଚନାଟିଏ ହେଲା । ସେ ଆଲୋଚନା ଥିଲା, ସୁଶ୍ରୀ ମାୟାବତୀ ଯେଉଁ ନିର୍ବାଚନ ଜିତିଲେ ସେ ଏକ ନୂଆ ଜାତି ଫର୍ମୁଲା ନେଇ ଜିତିଲେ । ବ୍ରାହ୍ମଣ ଏବଂ ଦଳିତ ଭିତରେ ନୂଆ ସମୀକରଣ କରିଦେଲେ । ମାୟାବତୀଙ୍କର ଏହା ଥିଲା ଏକ ଅନନ୍ୟ ସୋସିଆଲ୍ ଇଞ୍ଜିନିୟରିଂ, ଭଲ ଏକ ସାମାଜିକ କାରିଗରି ।

ପ୍ରଶ୍ନ ହୁଏ, ସୋସିଆଲ୍ ଇଞ୍ଜିନିୟରିଂ ମାନେ କଣ ? ଭାରତୀୟ ସମାଜରେ ଥିବା ବିଭିନ୍ନ ଜାତିକୁ ନେଇ ନିର୍ବାଚନ ପାଇଁ ଗୋଷ୍ଠୀ ତିଆରି କରିବା ଏବଂ ଜାତିକୁ ରାଜନୀତିକରଣ କରି ଭୋଟରେ ତାକୁ ରୂପାନ୍ତରିତ କରିବା, ଜାତି ସମ୍ପର୍କିତ ଗୋଷ୍ଠୀ ଗଠନର ଏହି ପ୍ରକ୍ରିୟାର ନୂଆ ନାଁ ହେଉଛି ସୋସିଆଲ୍ ଇଞ୍ଜିନିୟରିଂ ଉତ୍ତରପ୍ରଦେଶରେ ବ୍ରାହ୍ମଣମାନେ ଗତ ପ୍ରାୟ ସବୁ ନିର୍ବାଚନରେ ଭାରତୀୟ ଜନତା ପାର୍ଟି ସାଥୀରେ ରହିଥିଲେ । ବର୍ତ୍ତମାନେ ଏମାନେ ବହୁଜନ ସମାଜ ସହ ଅଛନ୍ତି । ୧୯୫୨ - ୧୯୮୯ମସିହା ପର୍ଯ୍ୟନ୍ତ ଉତ୍ତର ପ୍ରଦେଶର ବ୍ରାହ୍ମଣ ସମାଜ କଂଗ୍ରେସ ସାଙ୍ଗରେ ଥିଲେ । କଂଗ୍ରେସକୁ ଏମାନେ ଭୋଟ ଦେଉଥିଲେ ଏବଂ ନିର୍ବାଚନରେ ଜିତେଇ ଲଗାତାର ୪୦ ବର୍ଷ ଧରି ଏହାକୁ ସେଠି ଶାସନ କରିବାର ସୁଯୋଗ ଦେଇଥିଲେ ।

ସତକଥା ହେଲା, ରାଜନୀତି ପାଇଁ ସମ୍ପ୍ରତି ଜାତି ସଚେତନତା ବଢ଼ିଛି । କିଛି ରାଜନୈତିକ ଦଳ ସହ ଅନେକ ଜାତି ତାର ପରିଚୟକୁ ଯୋଡି ଦେଇଛନ୍ତି । କିନ୍ତୁ ଏହି ଜାତି ଭିତ୍ତିକ ସମର୍ଥନ ଏ ପର୍ଯ୍ୟନ୍ତ ସ୍ଥାୟୀ ଚୁକ୍ତିଟିଏ ହୋଇ ରହିନି । ପ୍ରତି ନିର୍ବାଚନରେ ଏହି ସମର୍ଥନ ବଦଳୁଛି ।

ସ୍ୱାଧୀନତା ପରଠାରୁ ପ୍ରାୟ ଅନେକ ବର୍ଷ ଧରି ଦଳିତ ଓ ଆଦିବାସୀ କଂଗ୍ରେସ ସହିତ ଥିଲେ । ଗାନ୍ଧୀ ମହାତ୍ମାର ଦଳ କହି ଏହାକୁ ଭୋଟ ଦେଉଥିଲେ ।

ଏବେ ସେମାନେ ଉତ୍ତରପ୍ରଦେଶରେ ମାୟାବତୀଙ୍କ ନିଜ ଲୋକ । ପ୍ରତି ରାଜ୍ୟରେ ରାଜନୈତିକ ଦଳ ପ୍ରତି ଦଳିତଙ୍କ ସମର୍ଥନ ବ୍ୟତୀତ ଯାଦବ, କୁର୍ମି, ଲୋଧା, ରାଜପୁତମାନେ ନିଜକୁ ବର୍ତ୍ତମାନର ଓବିସି ନାଁ ଦେଇ ଲାଲୁ ନିତିଶ, ମୁଲାୟମଙ୍କ ଗୋଷ୍ଠୀରେ ଅଛନ୍ତି । ଏହା କିନ୍ତୁ ସ୍ଥିର ନୁହେଁ । ସୁବିଧା ଏବଂ ସୁଯୋଗର ପରିମାଣର ଘୋଷଣା ଦେଖି ସେମାନଙ୍କର ସମର୍ଥନ ଜାରି ରହୁଛି କିମ୍ବା ବଦଳୁଛି । ସ୍ପଷ୍ଟ କହିଲେ ଭାରତରେ ଭୋଟ ରାଜନୀତି ନେଇ ଜାତି ପ୍ରଭାବିତ ହେଉଛି ଏବଂ ଗଣତାନ୍ତ୍ରିକ ରାଜନୀତିକୁ ଜାତି ମଧ୍ୟ ପ୍ରଭାବିତ କରୁଛି ।

ସୁତରାଂ ଜାତିହୀନ ସମାଜ ସମ୍ପ୍ରତି ଏକ ମିଥ୍ । ଜାତିକୁ ସଂଘବଦ୍ଧ କରି ଯେ ଏହାକୁ ଭୋଟ ପାଇଁ ପ୍ରୟୋଗ କରିହେବ, ଇଏ ଏବେ ନୂଆ ରାଜନୈତିକ ଆଦର୍ଶ ।

ସ୍ୱାଧୀନତାର ପ୍ରାଥମିକ ବର୍ଷ ମାନଙ୍କରେ ଜାତିବାଦ ଏବଂ ଜାତି ସଚେତନତା ହ୍ରାସ ପାଉଛି ବୋଲି ପ୍ରତୀୟମାନ ହୋଇଥିଲା । ସୂଚନା ପାଇଥିଲା ଯେ ଜାତିଗତ ପ୍ରଧାନ୍ୟ ଆଉ ଶିକ୍ଷିତ ତଥା ପ୍ରଫେସନାଲ୍ ବ୍ୟକ୍ତିଙ୍କ ମଧ୍ୟରେ ନାହିଁ । ସହରୀ ଜୀବନରେ ଜାତିର ସେତେ କିଛି ଗୁରୁତ୍ୱ ନାହିଁ । ଏହି ଧାରା ଯେ ଅନ୍ୟ ଗୋଷ୍ଠୀକୁ ପ୍ରଭାବିତ କରି ଏକ ଜାତି ଶୂନ୍ୟ ସମାଜଟିଏ ଗଠନ ପାଇଁ ବାଟ ଖୋଲିଦେବ, ଏପରି ଧାରଣାଟିଏ ସୃଷ୍ଟି ହୋଇଥିଲା ।

ଯଦିଓ ଭାରତୀୟ ମଧ୍ୟବର୍ଗ ସେତେବେଳେ ଖୁବ୍ ଛୋଟ ଗୋଷ୍ଠୀଟିଏ ଥିଲା ତଥାପି ସେମାନଙ୍କର ରାଜନୈତିକ ତଥା ସାମାଜିକ ପ୍ରଭାବ ଥିଲା ବେଶି । ସାଧାରଣ ଲୋକଙ୍କ ଏହା ବି ଇଛା ଥିଲା ଯେ ପ୍ରତି ଜାତି ଭିତରେ ଥିବା ପ୍ରଗତିଶୀଳ ବ୍ୟକ୍ତି ନିଜକୁ ଜାତିଆଣ ସ୍ୱେଚ୍ଛାଚାରିତାରୁ ମୁକ୍ତ କରିବ ଏବଂ ଜାତିହୀନ ସମାଜ ପାଇଁ ଉଦ୍ୟମ କରିବ ।

ଅବଶ୍ୟ ଷାଠିଏ ବର୍ଷର ଏହି ସ୍ୱାଧୀନୋତ୍ତର ଅବଧି ଭିତରେ ଭାରତର ସାମାଜିକ ସ୍ୱରରେ ପରିବର୍ତ୍ତନ ଆସିଛି । ଚୀନ୍‌ରେ ପରିବର୍ତ୍ତନ ପରି ଏହା ହଠାତ୍ ଏବଂ ନାଟକୀୟ ହୋଇନି । ଅନେକ ତେଣୁ ଅଭିଯୋଗ କରନ୍ତି, ସ୍ୱାଧୀନତା ପାଇବାବେଳେ ଆମେ ଏଠି ଯାହାଥିଲୁ, ଠିକ୍ ସେଇଆ ବି ଅଛୁ ।

ଜାତିର ପ୍ରଭାବକୁ ଦୁଇଟି ଦୃଷ୍ଟିକୋଣରୁ ବିଚାର ପରିସରକୁ ଅଣାଯାଇପାରେ । ପ୍ରଥମଟି ହେଉଛି ସାମାଜିକ ଦୃଷ୍ଟିକୋଣ ଏବଂ ଦ୍ୱିତୀୟଟି ହେଉଛି ରାଜନୈତିକ

ଦୃଷ୍ଟିକୋଣ । ଏ ଦୁଇଟି ବିଚାରର ବିଶ୍ଳେଷଣ କିନ୍ତୁ ପରସ୍ପର ବିରୋଧାଭାଷ କରେ ।

ସାମାଜିକ ଦୃଷ୍ଟିରୁ ଦେଖିଲେ ଅନେକ ପୁରୁଣା ପରମ୍ପରା, ରୀତିନୀତି ଆଉ ଏବେ ଅନେକ ଜାତିରେ ନାହିଁ । ପୂଜା ପଦ୍ଧତି, ପବିତ୍ରତା ଏବଂ ଅପବିତ୍ରତା ନେଇ ମାନସିକତା ବର୍ତ୍ତମାନ ପ୍ରାୟ ଅନେକ ଜାତିରେ ବଦଳି ଯାଇଛି । ଅନ୍ୟ ଜାତିରେ ବିବାହ ନେଇ ଯେଉଁ ପ୍ରତିବନ୍ଧକ ଥିଲା, ଏବେ ତାହା ଆଉ ନାହିଁ । ଏକାଠି ଖାଇବା ପାଠପଢ଼ିବା, ବ୍ୟବସାୟ କରିବାରେ ଯେଉଁ ବାସନ୍ଦ ଥିଲା ବର୍ତ୍ତମାନ ତାହା ସମ୍ପୂର୍ଣ୍ଣ ହ୍ରାସ ପାଇଯାଇଛି । ଏକାଠି ବସି ଚା ପିଇବା ବେଳେ ଏବଂ ବନ୍ଧୁତ୍ୱ ଜମାଇବା ବେଳେ କିଏ କାହାର ଜାତି କ'ଣ ପ୍ରଶ୍ନ କରୁନି ।

ସାମାଜିକ ସ୍ତରରେ ବାସ୍ତବରେ ଏବେ ଜାତିର ପ୍ରଭାବ କମ୍ । ଭାରତୀୟ ମଧ୍ୟବର୍ଗ ହିଁ ଏଥିପାଇଁ ଧନ୍ୟବାଦାର୍ହ ।

କିନ୍ତୁ ରାଜନୈତିକ ଦୃଷ୍ଟିରୁ ଦେଖିଲେ ଜାତିର ପ୍ରଭାବ ନେଇ ନିଆରା ସୂଚନା ଆସେ । ପ୍ରକୃତରେ ରାଜନୀତି ନିମନ୍ତେ ଜାତି ସଚେତନତା ଏଠି ଜୀବନ ଅଛି । ଭାରତର ଅନେକ ଅଞ୍ଚଳ ଖୁବ୍ ଗଭୀର ଭାବେ ଜାତି ରାଜନୀତି ସହ ଯୋଡ଼ି ହୋଇଯାଉଛି । ଜାତିକୁ ବାଦ୍ ଦେଇ ଏଠାରେ ରାଜନୀତି ଚାଲୁନି ।

ଭାରତୀୟ ଗଣତନ୍ତ୍ର ଏବଂ ଏଠାର ନିର୍ବାଚନୀୟ ପଦ୍ଧତି ଯେ କେବେ ଜାତି ପ୍ରଭାବରୁ ମୁକ୍ତ ହୋଇଯିବ, ଏପରି କଳ୍ପନା କରିବା ଏକ ମିଲିୟନ ଡଲାରର ପ୍ରଶ୍ନ । ଏକଥା ବି କୁହାଯାଇପାରେ ବର୍ତ୍ତମାନର ଜାତିରେ ରାଜନୀତି ଏବଂ ରାଜନୀତିରେ ଜାତିର ପ୍ରଭାବ ପ୍ରବେଶ ଭାରତରେ ହଠାତ୍ ଆସିଯାଇ ନାହିଁ । ଏହାର ଉତ୍ପତି ଜରୁରୀକାଳୀନ ପରିସ୍ଥିତି ସମୟରୁ ହେଲାଣି । ଏଠି ପ୍ରାୟ ସବୁ ରାଜ୍ୟରେ ରାଜନୀତିରେ ଜାତି ଏକ ବୃହତର ଘଟଣା । ସବୁ ରାଜନୈତିକ ଦଳ ଜାତିର ରାଜନୀତିକରଣ କରିବାରେ ଏବେ ବ୍ୟସ୍ତ । ଭାରତୀୟ କମ୍ୟୁନିଷ୍ଟମାନେ ବି ରାଜନୀତିରେ ଜାତିର ଅଂଶିଦାରୀକୁ ଅଗ୍ରାହ୍ୟ କରିପାରୁନାହାନ୍ତି ।

ସ୍ୱାଧୀନତା ଆରମ୍ଭରେ ଭାରତୀୟ ବାମପନ୍ଥୀମାନେ ଜାତିକୁ ନେଇ ରାଜନୀତି କରିବାକୁ ସଂକୋଚ କରୁଥିଲେ । ଜାତିଭିତ୍ତିକ କୋଟା, ସଂରକ୍ଷଣ ଏବଂ ଭୋଟ ବ୍ୟାଙ୍କ ଗଠନକୁ ସେମାନେ ନାପସନ୍ଦ କରୁଥିଲେ । ଗୋଟିଏ ଭଦ୍ର ତଥା ସଭ୍ୟ ସମାଜ ପାଇଁ ଏସବୁ ଯେ ପ୍ରତିବନ୍ଧକ ସୃଷ୍ଟି କରେ  ସେମାନେ ଏହି ଯୁକ୍ତି ମଧ୍ୟ କରୁଥିଲେ ।

ବର୍ତ୍ତମାନ କିନ୍ତୁ ମାର୍କସବାଦୀମାନେ ଜାତିଭିତ୍ତିକ ସଂରକ୍ଷଣକୁ ସମର୍ଥନ କରନ୍ତି ଏବଂ ଏହାର କାର୍ଯ୍ୟକାରିତା ପାଇଁ ଏକ ଆକ୍ରମଣାତ୍ମକ ଭଙ୍ଗୀରେ ପ୍ରଚାର କରନ୍ତି । ପଚାରିଲେ ଏମାନେ ଉତ୍ତର ଦିଅନ୍ତି, ଜାତି ସଂରକ୍ଷଣ ନେଇ ରାଜନୀତି ଏକ ଶ୍ରେଣୀଗତ ଦ୍ୱନ୍ଦ୍ୱର କଥାବସ୍ତୁ । ଏଠି ସମାଜରେ ଯେଉଁ ବିରୋଧାଭାସ ଏବଂ ଅସମତା ଅଛି ଏହି ସଂରକ୍ଷଣ ତାର ସମାଧାନର ବାଟ ।
ମାର୍କସବାଦୀମାନେ ଯୁକ୍ତି କଲାବେଳେ ଶ୍ରେଣୀର ସଞ୍ଜ୍ଞା ବି ବଦଳେଇ ଦେଲେଣି । କହନ୍ତି, ଜାତିର ରୂପ ବଦଳି ଯାଇ ଏବେ ଶ୍ରେଣୀ ହୋଇଯାଇଛି । ସଂରକ୍ଷଣ ରାଜନୀତି ହେଉଛି ଶ୍ରେଣୀ ସଂଗ୍ରାମ ରାଜନୀତିରେ ଏବେ ଏକ ଚରମ ବାସ୍ତବତା ।

ସତକଥା କିନ୍ତୁ ହେଲା, ମାର୍କସବାଦୀଙ୍କର ଶ୍ରେଣୀ ସଂଗ୍ରାମ ତତ୍ତ୍ୱ ଜାତିଭିତ୍ତିକ ସଂରକ୍ଷଣ ତତ୍ତ୍ୱ ଠାରୁ ନିଆରା । କିନ୍ତୁ ଜାତି ସଂରକ୍ଷଣ ନେଇ ରାଜନୀତିରେ ଯେତେବେଳେ ଭୋଟ ବ୍ୟାଙ୍କ କରି ନିର୍ବାଚନ ଜିତି ହେଉଛି, ପୁରୁଣା ସିଦ୍ଧାନ୍ତିକ ଆଦର୍ଶର ଅର୍ଥ ବା କ'ଣ ? ଭାରତୀୟ ରାଜନୀତିରେ ଏହାହିଁ ଏବେ ସମ୍ଭବ । ଏଇଟା ହିଁ ବିଡମ୍ବନା ।

ଭାରତର ସମ୍ବିଧାନ ପ୍ରଣୟନ ବେଳେ ଏଠାରେ ମାର୍କସବାଦୀମାନେ ନେହେରୁଙ୍କ ଗଣତାନ୍ତ୍ରିକ ସମାଜବାଦକୁ ବିରୋଧ କରୁଥିଲେ । ଏହି ଶାସନ ପଦ୍ଧତି ଯେ ଏକ ଦୃଢ, ସାମାଜିକ ତଥା ଆର୍ଥିକ ପରିବର୍ତ୍ତନ ନିମନ୍ତେ ମୋଟେ ଉପଯୁକ୍ତ ନୁହେଁ, ଏମାନେ ଯୁକ୍ତି ବି କରୁଥିଲେ । ଏକ ବିକଳ୍ପ ପଦ୍ଧତି ଭାବେ ଷ୍ଟାଲିନ୍ ଏବଂ ମାଓସେତୁଙ୍ଗ୍‌ଙ୍କ ତତ୍ତ୍ୱକୁ ଆପଣାଇ ନେଇଥିଲେ । କୃଷକ, ଶ୍ରମିକ ଏବଂ ବଞ୍ଚିତ ଶ୍ରେଣୀକୁ ନେଇ ରାଜନୀତି କରିବା ଏମାନଙ୍କର ଆଦର୍ଶ ଥିଲା । ପ୍ରକୃତରେ ଏଥିରେ ଜାତି ପ୍ରଶ୍ନ ନଥିଲା ।

କିନ୍ତୁ ସୋଭିଏତ୍ ଋଷର ପତନ ପରେ ଏବଂ ଚୀନର ଉଦାରବାଦର ଅଭ୍ୟୁଦୟ ହେବା ପରେ ଭାରତୀୟ କମ୍ୟୁନିଷ୍ଟମାନେ ଗଣତନ୍ତ୍ର ପ୍ରତି ପ୍ରତିଶ୍ରୁତିବଦ୍ଧ ହୋଇପଡିଛନ୍ତି ଏବଂ ନିର୍ବାଚନୀୟ ରାଜନୀତି ପାଇଁ ନୀତି ଗ୍ରହଣ କରୁଛନ୍ତି । ଅନ୍ୟଦଳ ସହ ମିଶି ସରକାର କିପରି ସଫଳତାର ସହ ଚଳାଇ ହେବ ଏ ଶିକ୍ଷା ବି ସେମାନେ ପାଇସାରିଲେଣି ।

ଭାରତର ମାର୍କସବାଦୀମାନେ ଅନ୍ୟ ରାଜନୈତିକ ଦଳଠାରୁ ଆଉ ଅଲଗା ନୁହନ୍ତି । କାମ ଆଉ କଥାରେ ଏମାନେ ଏକା । ସୁତରାଂ ଅନ୍ୟ ଭାରତୀୟ ରାଜନୈତିକ

ଦଳ କଂଗ୍ରେସ, ବିଜେପି, ବିଏସ୍‌ପି, ଡିଏମ୍‌କେ, ଏଡିଏମ୍‌କେ ଏବଂ ଆର୍‌ଜେଡି ପରି ଭାରତୀୟ ବାମପନ୍ଥୀମାନେ ଜାତିକୁ ନେଇ ରାଜନୀତି କଲେ ଏବେ ଆଉ ସେତେ ଅସ୍ୱାଭାବିକ ଲାଗୁନି ।

ଅସଲ କଥା ହେଲା, ଜାତି ରାଜନୀତି ସମ୍ପ୍ରତି ଯେଉଁ ନୂଆ ଏଜେଣ୍ଡାଟିଏ ସୃଷ୍ଟି କରିଛି, ସେ ହେଉଛି ଏବର ମେଣ୍ଟ ରାଜନୀତି । ଭାରତରେ ମେଣ୍ଟ ରାଜନୀତିର ଆଦର ବଢୁଛି । ଜାତିକୁ ନେଇ ନିର୍ବାଚନୀୟ ସଫଳତା ମିଳିବା ପରେ ଜାତି ସଚେତନତା ବି ବୃଦ୍ଧି ପାଉଛି । ପ୍ରଶ୍ନ କଲେ ଉତ୍ତର ଆସୁଛି, କ୍ଷମତା ମଧ୍ୟ ଏକ ସମ୍ପତ୍ତି । ଜାତି, ଉପଜାତି ସଚେତନତା ସୃଷ୍ଟି କରି ଯଦି କ୍ଷମତାକୁ ବାଣ୍ଟି ଉପଭୋଗ କରିହେବ କ୍ଷତି କଣ ? ଏଥିରୁ ଯଦି ସୁବିଧା ଏବଂ ପ୍ରଶାସନିକ ପୃଷ୍ଠପୋଷକତା ହାସଲ କରିହେବ ଏଥିରେ ଦୋଷ ବା କ'ଣ ? ଭାରତରେ ରାଜନୈତିକ ସଚେତନତା ବର୍ତ୍ତମାନ ବି କୌଣସି ସବର୍ଣ୍ଣ ବା ବଡ ଜାତିର ଆଉ ଏକଚାଟିଆ କାରବାର ନୁହେଁ । ଦେଶର ରାଜନୈତିକ ପରିବର୍ତ୍ତନ ଏବଂ ବୃହତ ରାଜନୈତିକ ସମସ୍ୟା ନେଇ ଏ ଦେଶର ଦଳିତ ଏବଂ ସଂଖ୍ୟାଲଘୁମାନେ ବି ସଚେତନ ହୋଇଗଲେଣି ।

ହଁ, ପାଠକ ବନ୍ଧୁ ! ଏ ଆଲୋଚନା ଏଇଠି ଶେଷ କରିବାକୁ ଇଚ୍ଛା । ଭାରତରେ ଗଣତାନ୍ତ୍ରିକ ରାଜନୀତି ଥିବା ପର୍ଯ୍ୟନ୍ତ ଏ ଜାତି ରାଜନୀତି ନିଶ୍ଚୟ ଚାଲିବ । ଜାତିକୁ ରାଜନୀତି ଠାରୁ ଅଲଗା କରିବା କେବେ ସମ୍ଭବ ହେବ ନାହିଁ । କାରଣ ହେଉଛି, ଭାରତୀୟ ସମାଜରେ ଜାତି ବ୍ୟବସ୍ଥା ଅଛି । ଏହା ବି ବେଶ୍ ଦୃଢ଼ ଏବଂ କ୍ଷମତାରୂପକ ସମ୍ପତ୍ତିକୁ ବାଣ୍ଟିବାକୁ ସବୁ ରାଜନୈତିକ ଦଳ ମଧ୍ୟ ତତ୍ପର । ଶିକ୍ଷା ଏବଂ ପ୍ରଗତି ହେଲେ ଯେ ଜାତି ରାଜନୀତି ଦୁର୍ବଳ ହୋଇଯିବ ଏହା ସମ୍ପ୍ରତି ସଂପୂର୍ଣ୍ଣ ଠିକ୍ ବି ଲାଗୁନି ।

ଅବଶ୍ୟ ଜାତିର ରାଜନୀତିକରଣ ଯେପର୍ଯ୍ୟନ୍ତ ଜାତିବାଦରେ ପରିଣତ ନହୋଇଛି, ଏହାକୁ କିଛି ମାତ୍ରାରେ ଅନିଚ୍ଛାସତ୍ତ୍ୱେ ସହ୍ୟ କରାଯାଇପାରେ ।



# ଯୌତୁକ ଦାବି

**ବି**ଡମ୍ବନା ଯେ, ଯୌତୁକ ହିଁ ଏକମାତ୍ର ଅପରାଧ ଯାହାକୁ ଏଠି ସାମାଜିକ ସ୍ୱୀକୃତି ମିଳିଛି । ସତ କହିଲେ.  ଯୌତୁକ ଦାବି କରିବାରେ ଏବେ ଆଉ ଲଜ୍ଜା ନାହିଁ; ଅନୁଶୋଚନା ନାହିଁ ଏବଂ ଯୌତୁକ ଦେଇପାରୁନଥିବା ବ୍ୟକ୍ତିର ଦୁଃଖ ପ୍ରତି ସେମିତି କିଛି ସମବେଦନା ବି ନାହିଁ । ଯୌତୁକ ଗ୍ରହଣ କରିବା ଯେମିତି ଏକ ସାମାଜିକ ପ୍ରତିଷ୍ଠାର ପ୍ରତୀକ ।

୧୯୬୧ ମସିହାରୁ ଯୌତୁକ ନିରୋଧ ପାଇଁ ଭାରତରେ ଆଇନ ଅଛି । ଯୌତୁକ କିନ୍ତୁ ଚାଲିଛି । ଶ୍ରେଣୀ, ଜାତି, ଲିଙ୍ଗଭିତ୍ତିକ ସମୀକରଣରେ ଯେଉଁ ଅସମତା ଅଛି, ଏହା ତାହାର ପ୍ରତିନିଧିତ୍ୱ କରୁଛି ।

ଏଇ ନିକଟ ଅତୀତରେ ଭାରତର ମାନ୍ୟବର ସୁପ୍ରିମ୍‌କୋର୍ଟ ତାଙ୍କର ଏକ ରାୟରେ ଯୌତୁକ ନେଇ କ୍ଷୋଭ ପ୍ରକାଶ କରିଥିଲେ । କହିଲେ, ସ୍ୱାଧୀନତାର ଷାଠିଏ ଦଶନ୍ଧିରୁ ଉର୍ଦ୍ଧ୍ୱ ବର୍ଷ ପରେ ବି ଏଇ କଳଙ୍କିତ ପ୍ରଥା ବଞ୍ଚି ରହିଛି । ଯୌତୁକ ନିର୍ଯାତନାରେ ହ୍ରାସ ପାଇନାହିଁ । ଏହାକୁ ହ୍ରାସ କରିବାର ଦାୟିତ୍ୱ ତୁରନ୍ତ ନେବା ଜରୁରୀ ।

ହଁ, ପାଠକ ବନ୍ଧୁ ! ଏହା ସତ ଯେ , ଯୌତୁକ ଉତ୍ପୀଡନର ବୃଦ୍ଧି ଘଟିଛି । ଏଇ ବୃଦ୍ଧିର ହାର କେତେ ଏବଂ ଏହାର ଶେଷ ସୀମା କେଉଁଠି, ସମାଜ ବିଜ୍ଞାନୀଙ୍କର କଳନା ଭିତରେ ଏହା ନାହିଁ । ସେଇଥିପାଇଁ ତ ଆଶଙ୍କା ଆସେ, ମାନ୍ୟବର ଉଚ୍ଚତମ ନ୍ୟାୟାଳୟଙ୍କର କ୍ଷୋଭ ବୋଧେ ଯୌତୁକ ନିରୋଧ କରିବାରେ ସେମିତି କିଛି ପ୍ରଭାବ ଆଣିବନି ।

ଏଠି ଓଡିଶା ରାଜ୍ୟ ସରକାରଙ୍କର ଶ୍ୱେତପତ୍ରରେ ଏଇଟା ହିଁ ଥିଲା - ଓଡିଶାର ଆର୍ଥିକ ପ୍ରଗତି ଘଟିଥିବା ଜିଲ୍ଲାମାନଙ୍କରେ ଯୌତୁକ କାରବାର ବେଶି । ସୁତରାଂ ଏ ସଂପର୍କିତ ନିର୍ଯାତନା ହାର ମଧ୍ୟ ଅଧିକ । ଏହାର କାରଣ କ'ଣ ? ଏଇ ଦୁଇଟି କଥାରେ ଶ୍ୱେତପତ୍ର କିନ୍ତୁ ସେତେ ସ୍ପଷ୍ଟ ନଥିଲେ ବି ଏହା ଜାଣିବା କିନ୍ତୁ ସାଧାରଣରେ କଷ୍ଟ ହେଉନାହିଁ ।

ଯୌତୁକ ଖାଲି ଏକ ସାମାଜିକ କଳଙ୍କ ନୁହେଁ । ଏହା ଏବେ ଏକ ଶ୍ରେଣୀ ପ୍ରସଙ୍ଗ । ଆର୍ଥିକ ଉଦାରୀକରଣ ଆରମ୍ଭ ହେବା ପରେ ଏଇ ପ୍ରସଙ୍ଗ ସୃଷ୍ଟି ହୋଇଯାଇଛି ।

ଏଇ ଶ୍ରେଣୀ ପ୍ରସଙ୍ଗର ଆଭ୍ୟନ୍ତରୀଣ କିଛି କଥା ଏବଂ ଭାରତୀୟ ଅର୍ଥନୀତି ସହ ସଂଶ୍ଳିଷ୍ଟ ଥିବା ଯୌତୁକ ପ୍ରଥା କିପରି ଯୋଡି ହୋଇଯାଇଛି ଏହାର କିଛି ଅଂଶ ଅବତାରଣା ଏଇଠି କରିବା ପାଇଁ ଆଗ୍ରହ ।

ଯୌତୁକ ନେବା ସଂପ୍ରତି ଏକ ଇଜ୍ଜତର ପ୍ରଶ୍ନ । ବାହାଘର ଭୋଜି, ସାଜବାଜ, ଆଡମ୍ବର ଓ ଅଭ୍ୟର୍ଥନା ଯେ ସାମାଜିକ ପ୍ରତିଷ୍ଠାର ସୂଚନା ଦିଏ, ଏହା ଏବେ ଏକ ଦୃଢ଼ ଧାରଣା ।

ପୁଅ ପକ୍ଷର ଏହି ପ୍ରତିଷ୍ଠାକୁ ଅତୁଟ ରଖିବାରେ ଝିଅ ପକ୍ଷର ସହଯୋଗ ଯେ ଆବଶ୍ୟକ ଏପରି ଏକ ମାନସିକତା ଶକ୍ତ ହୋଇସାରିଲାଣି । ଏହା ବି କୁହାଯାଏ ଯୌତୁକ ପ୍ରକରଣ ଭିତରେ ଝିଅ ଘରୁ ପୁଅ ଘରକୁ କେବଳ ସଂପତ୍ତି ହସ୍ତାନ୍ତର ହୁଏ ନାହିଁ ବରଂ ଉଭୟ ପରିବାର ଭିତରେ ଶ୍ରେଣୀ ସ୍ଥିତିରେ ସମତା ରଖିବା ପାଇଁ ଯୌତୁକ ଦାବି ଯଥାର୍ଥ । ସେଇଥିପାଇଁ ତ କନ୍ୟାପିତା ଋଣ କରେ; ଜନ୍ମ ଜନ୍ମ ଧରି ବସା ବାନ୍ଧି ରହିଥିବା ଘର ଡିହକୁ ବିକ୍ରି କରେ, ବନ୍ଧା ପକାଏ ଏବଂ ଆଜୀବନ ଉପାର୍ଜ୍ଜନରୁ ସଂଚିତ ଅର୍ଥକୁ ବରପିତା ହାତକୁ ଟେକି ଦେଇ ଝିଅ ଶ୍ୱଶୁରର ପ୍ରତିଷ୍ଠାକୁ ଅତୁଟ ରଖେ ।

ଯୌତୁକ ସମ୍ପର୍କିତ ଏଇ ଶ୍ରେଣୀ ସମ୍ପର୍କ ଭାରତ ବର୍ଷର ସଂଖ୍ୟାଲଘୁ ଶ୍ରେଣୀ, ମୁସଲିମ୍, ଆଦିବାସୀ ଏବଂ ଦଳିତମାନଙ୍କୁ ପ୍ରଭାବିତ କରିଛି । ନୂଆ ଅର୍ଥନୀତି ଏବଂ ଉପଭୋକ୍ତାବାଦୀ ସଂସ୍କୃତି ଏଠି ପ୍ରବେଶ କରିସାରିବା ପରେ ଏଇ ସାମାଜିକ ଗୋଷ୍ଠୀରେ ଥିବା ପରମ୍ପରାରେ ପରିବର୍ତ୍ତନ ଆସିଛି ।

ଯୌତୁକ ନେଇ ଆଦିବାସୀଙ୍କ ପରମ୍ପରା ଥିଲା ନିଆରା । ପୁଅ ପକ୍ଷରୁ ଝିଅ ପକ୍ଷକୁ ଏଠି ଯୌତୁକ ଦିଆଯାଉଥିଲା । ଯୌତୁକ ତ ନୁହେଁ, ଏହା ଥିଲା କନ୍ୟା ମୂଲ୍ୟ । ବର ପିତା ଯୌତୁକ ମାଗିଲେ ଏହା ଅପରାଧ ଥିଲା, ଏ ଧାରା ସଂପ୍ରତି ଆକ୍ରାନ୍ତ ହୋଇଛି । ଝିଅର ମୂଲ୍ୟ ଆଉ ନାହିଁ । ସବୁ ମୂଲ୍ୟ ଏବେ ପୁଅର ।

ଇଏ ଆଦିବାସୀ, ମୁସଲିମ୍‌ଙ୍କ କଥା ନୁହେଁ । ନାରୀ ମୂଲ୍ୟର ଅବକ୍ଷୟ ସବୁଠି । ଏହା ସତ ଯେ ସମାଜ ଏବଂ ପରିବାରରେ ମହିଳାଙ୍କ କାମକୁ ନେଇ ସମ୍ମାନ ଏବଂ ସ୍ୱୀକୃତି ଦେବା ଉଚିତ ତାହା ଏ ପର୍ଯ୍ୟନ୍ତ ହୋଇନାହିଁ । ଝିଅଙ୍କୁ ପୂର୍ବରୁ ଯେପରି ପରିବାର ପାଇଁ ବୋଝ ବୋଲି ଧରାଯାଉଥିଲା ଏଇ ଧାରଣାରେ ସେମିତି କିଛି ସକାରତ୍ମକ ନୂଆ ଚିନ୍ତା ଆସିନାହିଁ ଏବଂ ଉପଭୋକ୍ତାବାଦୀ ସଂସ୍କୃତି ଭାରତୀୟ ମୂଲ୍ୟବୋଧ ତଥା ମାନବୀୟ ଗୁଣକୁ ଭୁଲିଯାଇ କେବଳ ସାଇତି ରଖିଥିବା ସମ୍ପତ୍ତି ଉପରେ ଗୁରୁତ୍ୱ ଦେଉଛି ।

ସ୍ପଷ୍ଟ କହିଲେ, ବର୍ତ୍ତମାନର ଯୌତୁକ ପ୍ରଥା ଶ୍ରେଣୀ ସଚେତନତାର ଆଧାର ହୋଇଯାଇଛି । ଆର୍ଥିକ ଶ୍ରେଣୀ ପରିଚୟ ଦେବାରେ ଏହା ଏକ ମାନସିକତାକୁ ଜନ୍ମ ଦେଇଦେଇଛି । ସେଇଥିପାଇଁ ବୋଧେ ଦଳିତ, ଆଦିବାସୀ ଏବଂ ମୁସଲିମ୍‌ଙ୍କ ଭିତରେ ଯୌତୁକର ପସରା ଖୋଲି ଯାଇଛି । ଇଏ, ତଥାକଥିତ ଆଧୁନିକୋତ୍ତର ସମାଜର ପ୍ରଭାବ । ସଂସ୍କାରକୁ ପଛକୁ ଠେଲି ଦେଇ କୁସଂସ୍କାରକୁ ଏହା ହିଁ ଆଗକୁ ଆଣିଛି । ନବ୍ୟ ଆଧୁନିକତାର ପ୍ରବକ୍ତାମାନେ ମାନନ୍ତୁ ବା ନମାନନ୍ତୁ, ଏହା ସତ । ଅସଲ କଥା ହେଲା ସେ କାରଣ ଆର୍ଥିକ ଶ୍ରେଣୀ ସଂଘାତ ହେଉ ବା ହଜାର ବର୍ଷର ପରମ୍ପରା ହେଉ, ଯୌତୁକ ପ୍ରଥା ଯେ ସମସ୍ତ ସାମାଜିକ ପରିବର୍ତ୍ତନ ମଧ୍ୟରେ ତିଷ୍ଠି ରହିଛି, ଏହା ହିଁ ଆଶ୍ଚର୍ଯ୍ୟ ।

ଯୌତୁକ ଦାବିକୁ ବଞ୍ଚେଇ ରଖିବାରେ କିଛି ନିର୍ଦ୍ଦିଷ୍ଟ ଲୋକ ଦାୟୀ । ସିଧାସଳଖ ଭାବେ ଏମାନେ ଦୋଷୀ । ଏ ଲେଖକ ଏଇଠି ସେ ଦୋଷୀଙ୍କର ତାଲିକାଟିଏ ଦେଉଛି ।

ଏ ତାଲିକାରେ ଅଛନ୍ତି କନ୍ୟା ପକ୍ଷ, ବରପକ୍ଷ ଏବଂ ବର ନିଜେ ।

କନ୍ୟା ପକ୍ଷରେ ଯେଉଁମାନେ ଅଛନ୍ତି ସେମାନେ ହେଲେ କନ୍ୟାର ପିତା ଓ ମାତା । ଯୌତୁକର ଏ ମହତ୍ତ୍ୱପୂର୍ଣ୍ଣ ଅଭିଯାନରେ ଏମାନେ ସେତେ ବେଶି ସକ୍ରିୟ ନଥିଲେ ମଧ୍ୟ ଏମାନଙ୍କର ଆଶିଂକ ଅବଦାନ ଅଛି । ଏପରି ପ୍ରଶ୍ନ ଆସେ, କନ୍ୟା ପିତାମାନେ ଯଦି ଯୌତୁକ ଦେବାକୁ ମନା କରିଦିଅନ୍ତେ ତେବେ ହୁଏତ ବରପିତାମାନେ ଯୌତୁକ ଦାବିରୁ ବିରତ ହୋଇପାରନ୍ତେ । ଦେବା ନେବାର ଏ ଘୃଣ୍ୟ ପ୍ରକ୍ରିୟା ଅନ୍ତତଃ ଜଣକର ଅନୁପସ୍ଥିତିରେ ବନ୍ଦ ହୋଇଯାଆନ୍ତା ।

ଅବଶ୍ୟ ଏହା ଏକ ଅତି କାଳ୍ପନିକ ଚିନ୍ତା ହୋଇପାରେ । ବାସ୍ତବବାଦୀମାନେ ଏହାକୁ ଏକ ୟୁଟୋପିଆନ୍ ଇଚ୍ଛା କହି ପ୍ରତ୍ୟାଖ୍ୟାନ କରିପାରନ୍ତି । କାରଣ, ଯେହେତୁ ବର ବଜାରରେ କନ୍ୟାପିତାମାନେ ନିଜ ଝିଅ ପାଇଁ ବାଞ୍ଛିତ ବରଟିଏ ପାଇବା କଷ୍ଟ, ଯୌତୁକକୁ ବିରୋଧ କରି ଏମାନେ ବିପଦ ବରଣ କରିବାକୁ ନ ଚାହିଁବା ସ୍ୱାଭାବିକ । ନିଜ ପାଇଁ ଏହା ଆତ୍ମଘାତୀ ହୋଇପାରେ । ସୁତରାଂ ଇଚ୍ଛା ନଥିଲେ ବି କନ୍ୟାପିତା ଯୌତୁକ ଦିଅନ୍ତି । କେତେକ ସ୍ଥଳରେ ତ ଯୌତୁକ ଦେବାରେ କନ୍ୟାପିତାଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୋଇଯାଏ । ଯୌତୁକ ଅପରାଧରେ ତେଣୁ କନ୍ୟାପିତାଙ୍କ ଦୋଷ ଅଛି । ଏ ଲେଖକର ଆକଳନରେ ଏ ଦୋଷ ପାଞ୍ଚ ପ୍ରତିଶତ ।

ଯୌତୁକ ଦେଣନେଣର ଦ୍ୱିତୀୟ ଖେଳାଳି ହେଉଛନ୍ତି ବରପକ୍ଷ । ସ୍ପଷ୍ଟ

କହିଲେ, ବରର ବାପା ବୋଉ । ସବୁ ସମୟରେ ଏମାନଙ୍କୁ ଦୋଷୀ ବୋଲି ହିଁ ବିବେଚନା କରାଯାଏ । ଦୁଃଖ ଯେ ଯେଉଁ ବର ପିତାଙ୍କ ଝିଅଟିଏ ବି ଅଛି ବୋହୂ ଘରୁ ଯୌତୁକ ପାଇଁ ଏମାନେ ଦାବି କଲା ବେଳେ ନିଜ ଝିଅ କଥା ଭୁଲିଯାଆନ୍ତି ।

ଯୌତୁକରେ ବି ବରପିତାମାନେ ନିଜର ଷ୍ଟାଟସ୍ କଥା କହନ୍ତି । ନିଜ ଆତ୍ମୀୟଙ୍କ ପାଖରେ ଆତ୍ମବଡିମା ପ୍ରଦର୍ଶନ କରବାକୁ ଚାହାନ୍ତି ଏବଂ ଉଚ୍ଚ ଯୌତୁକ ନେଲେ ଯେ ଉଚ୍ଚ ପ୍ରତିଷ୍ଠାର ସୂଚନା ମିଳିଯାଏ ଏଇ ଧାରଣାକୁ ଯୌତୁକ ଦାବିର ଭିତ୍ତିଭୂମିଟିଏ କରି ଦିଅନ୍ତି । ଗୋଟିଏ ମାନବିକ ମିଟରରେ ଯେ ଏମାନଙ୍କ ତଥାକଥିତ ପ୍ରତିଷ୍ଠାର ନିଶା ବିପଦପୂର୍ଣ୍ଣ ହୋଇଯାଏ ଏମାନେ ବୁଝିବାରେ ଅସମର୍ଥ ଥାଆନ୍ତି ।

ବାସ୍ତବରେ ଯୌତୁକ ନିଶା ବଡ ଅଦ୍ଭୁତ । ସମ୍ପର୍କର ସମସ୍ତ ନିବିଡତା ବରପିତାଙ୍କ ପାଇଁ ଏଥିରେ ତୁଚ୍ଛ ହୋଇଯାଏ । ଫଳ ଏତିକି ହୁଏ, ଘର ଭିତରେ ହିଁ ବୋହୂ ଏକାକୀ ଥିବା ବେଳେ କିରୋସିନୀ ଷ୍ଟୋଭ ଫାଟେ । କୁନି କୁନି ପାଦରୁ ବାହା ଉତ୍ସବର ଅଳତା ନ ଲିଭୁଣୁ ବୋହୂର ମୃତ୍ୟୁ ହୁଏ । ଟେକ୍‌ନୋଲୋଜିରେ ଏତେ ପ୍ରଗତି ସତ୍ତ୍ୱେ ଯେ ଧନୀ ଘରମାନଙ୍କରେ ଏତେ କିରୋସିନୀ ଷ୍ଟୋଭ୍ କୁଆଡୁ ଆସେ, ସତରେ ବୁଝିହୁଏନି ।

ଯୌତୁକ ଅପରାଧରୁ ବର ପିତା ମାତା ତେଣୁ ମୁକ୍ତ ନୁହଁନ୍ତି । ଏମାନଙ୍କର ଦୋଷ କିଛି ଅଛି । ଏହା ପଚିଶ ପ୍ରତିଶତ ।

ଯୌତୁକ ଉତ୍ପୀଡନର ତୃତୀୟ କର୍ତ୍ତା ହେଉଛି ବର ନିଜେ । ଏମାନଙ୍କୁ କିନ୍ତୁ ଦୋଷୀଭାବେ ଚିହ୍ନଟ କରିବା ସହଜ ନୁହେଁ । ନିଜ ମମିର ଶାଢୀର ପଣତ ତଳେ ଏମାନେ ଅକ୍ଲେଶରେ ଲୁଚି ଯାଆନ୍ତି । ବିବାହ ପ୍ରକରଣର ଅନେକ ଅଂଶକୁ ଏମାନେ ଚାଲାକ୍ ଭାବେ ନିଜକୁ ଦୂରେଇ ରଖିଥାଆନ୍ତି ।

ଯେତେବେଳେ ପ୍ରଶ୍ନ ଆସେ, ଆପଣ ଯୌତୁକ ପ୍ରଥାକୁ ସମର୍ଥନ କରନ୍ତି କି ସେତେବେଳ ଏଇ ବର ରୂପକ ମହାନାୟକମାନେ ଜୋର୍‌ରେ ଉତ୍ତର ଦିଅନ୍ତି – ନା । ଏଇ ନାରେ କିନ୍ତୁ ଏକ ଅସମାପ୍ତ ବାକ୍ୟ ଖଣ୍ଡ ଥାଏ । ସେ ବାକ୍ୟ ଖଣ୍ଡ ହେଉଛି, 'ମୁଁ ଯୌତୁକ ବିରୋଧୀ ; ତଥାପି ଏ ସମ୍ପର୍କରେ ବାପା ବୋଉଙ୍କ ନିଷ୍ପତ୍ତି ମୁଁ ମାନିବି' । ଏହା ଆଜ୍ଞାଧୀନ ପୁତ୍ରର ଏକ ସୁନ୍ଦର ସ୍ୱୀକାରୋକ୍ତି ।
ପ୍ରକୃତରେ ଏହା ଏକ ଆତ୍ମପ୍ରବଞ୍ଚନା । ନୈତିକତା ତଥା ସଂସ୍କାରର ଏମାନେ ଦ୍ୱାହି ଦିଅନ୍ତି । ଅଥଚ ପିତାମାତାଙ୍କ ଯୌତୁକ ଦାବିକୁ ନିରବରେ ସମର୍ଥନ କରନ୍ତି । ଏମାନେ ତେଣୁ ସତୁରି ପ୍ରତିଶତ ଦୋଷୀ ।

ହଁ, ପାଠକ ବନ୍ଧୁ ! କନ୍ୟାପିତା ବରପିତା ଏବଂ ବର ନିଜେ ଏଇ ତିନୋଟି ଗୋଷ୍ଠୀ ଯୌତୁକ ପ୍ରଥା ପାଇଁ ଦାୟୀ । ଏମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏଇ ପ୍ରଥା ବଞ୍ଚିଛି ଏବଂ ଚାଲୁଛି । ଏଇମାନେ ହିଁ ଏପରି ପ୍ରଥାକୁ ଧ୍ୱଂସ କରିପାରିବେ ।

ଉପସଂହାରରେ ଏଇଠି ବହୁଚର୍ଚ୍ଚିତ ନିଶା ଶର୍ମା କଥା । ଯୌତୁକ ବିରୁଦ୍ଧରେ ଲଢେଇ କରି ସଫଳ ହୋଇଥିବା ଏକ ବାସ୍ତବ ନାୟିକାର କାହାଣୀ ।

ନିଶାର ବାହାଘର ଠିକ୍ ହୋଇଥିଲା ଏକ କମ୍ପ୍ୟୁଟର ଇଞ୍ଜିନିୟର ସାଥୀରେ । ନାଁ ମନୀଶ ଦଲାଲ । ନିଶା ସେତେବେଳେ ବିଏ ଶ୍ରେଣୀରେ ପଢୁଥିଲା । ଯୌତୁକ ପାଇଁ ଟିଭି, ଓ୍ୱାସିଂ ମେସିନ୍ ଏବଂ ହୋମ୍ ଥିଏଟର ତା ବାପା କିଣିଥିଲେ । ଶେଷ ମୁହୂର୍ତ୍ତରେ ବି ବରପକ୍ଷ ଆଉ ବାରଲକ୍ଷ ଟଙ୍କା ଏବଂ ମାରୁତି କାର୍ ମାଗିଲେ । ଏ ସବୁକୁ ଦେବାକୁ କନ୍ୟାପକ୍ଷ ଅସମର୍ଥତା ପ୍ରକାଶ କଲା ବେଳେ ବରପିତା କନ୍ୟାପିତାକୁ ମାଡ ମାରିଲେ । ମୁହଁକୁ ଛେପ ଫିଙ୍ଗିଲେ ।

ନିଶା ନିଜେ ଏହାକୁ ବିରୋଧ କଲା । ଦଲାଲ ପରିବାରରେ ବିବାହ କରିବାକୁ ମନା କଲା । ବର ଏବଂ ବରପିତାଙ୍କ ବିପକ୍ଷରେ ଥାନାରେ ଏତଲା ଦେଲା । ଅଭିଯୁକ୍ତମାନେ ଜେଲ୍ ଗଲେ ।

ଯୌତୁକ ବିରୁଦ୍ଧରେ ନିଶା ଶର୍ମାର କାର୍ଯ୍ୟ ଶେଷ କାର୍ଯ୍ୟ ନୁହେଁ । ନିଶା ଶର୍ମାମାନେ ଏବେ ବି ଅଛନ୍ତି । ସାହସ ଏବଂ ସଚେତନତା ଯାହା ଦରକାର । ଅଥଚ ମମିମାନଙ୍କର ପଣତକାନି ତଳେ ଏ ପର୍ଯ୍ୟନ୍ତ ଲୁଚି ବସିଥିବା ମନିଶ୍ ଦଲାଲମାନେ ଯୌତୁକ ବିପକ୍ଷରେ ବାହାରକୁ ବାହାରି ଆସିବା ଉଚିତ ।

ହଁ, ଯୁବପିଢି ! ତୁମେ ପାରିବ । ଆସ । କମ୍ ଅନ୍ ....



# କଏଦୀଙ୍କ ଭୋଟଦାନ ଅଧିକାର

**ଇ**ଏ ଉତ୍ତମ ପାଲ୍ । ବୟସ ବୟାଳିଶି । ଗୋଟିଏ ହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇ ସେ ଏବେ ଆଜୀବନ କାରଦଣ୍ଡ ଭୋଗୁଛି । ଜେଲ୍‌ରେ ରହିବା ତାର ୧୦ ବର୍ଷ ହୋଇଗଲାଣି । ଜଣେ ରାଜନୈତିକ ପ୍ରତିଦ୍ୱନ୍ଦୀକୁ ସେ ହତ୍ୟା କରିଥିଲା ।

ଉତ୍ତମ କହେ, ଜେଲ୍‌ରେ ରହିବାରେ ତାର ଯେତିକି ଦୁଃଖ ତା ଠାରୁ ବେଶି ଦୁଃଖ ହେଉଛି ତାକୁ ନିର୍ବାଚନରେ ଭୋଟଦାନ କରିବାକୁ ମନା କରିବା । ସେ ଜଣେ ରାଜନୈତିକ କର୍ମୀ । ରାଜନୀତି ପ୍ରତି ତାର ଅମାପ ଶ୍ରଦ୍ଧା ଅଛି । ଗଣତନ୍ତ୍ର ପ୍ରତି ଅନୁରକ୍ତି ଅଛି । ତାର ଦୁଃଖ ଯେ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ହୋଇ ଏବଂ ଏଠାରେ ସାବାଳକ ଭୋଟ ପ୍ରଥାର ପ୍ରଚଳନ ଥାଇ ବି ବନ୍ଦୀମାନଙ୍କୁ ଭୋଟ ଦେବାର ଅଧିକାର ଦିଆଯାଇନାହିଁ । ଯଦି ଜେଲ୍ ଭିତରେ ଥାଇ ନିର୍ବାଚିତ ରାଜନେତାଟି ଦେଶ ଶାସନ କରିବାକୁ ହକଦାର, ସେହି ଶାସକଙ୍କୁ ନିର୍ବାଚିତ କରିବାକୁ ଜଣେ ଭାରତୀୟ ଭାବେ ତାକୁ ସୁଯୋଗ ନଦେବାର କାରଣ କ'ଣ ବୋଲି କଏଦୀ ଉତ୍ତମ ପ୍ରଶ୍ନ କରେ ।

ହଁ, ଏହା ଖାଲି ଜେଲ୍ ଭିତରେ ଥିବା ଉତ୍ତମ ପାଲ୍‌ର ପ୍ରଶ୍ନ ଆଉ ଅଭିବ୍ୟକ୍ତି ନୁହେଁ ବରଂ କଏଦୀର ଜୀବନଯାପନ କରୁଥିବା ହଜାର ହଜାର ଉତ୍ତମମାନେ ଭୋଟ ଦେବାକୁ ଚାହାନ୍ତି । ସେମାନେ ଭୋଟଦାନ କରି ଏକ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବାକୁ ଚାହାନ୍ତି । କିନ୍ତୁ ବିଡମ୍ବନା ଯେ, ବନ୍ଦୀମାନଙ୍କୁ ଏକ ନନ୍ ପର୍ସନ୍‌ର ସଂଜ୍ଞାଟିଏ ଦେଇ ଭାରତବର୍ଷରେ ଏକ ଦୃଢ ଆଇନ ସ୍ୱାଧୀନତାର ଷାଠିଏ ବର୍ଷ ପରେ ମଧ୍ୟ ବଳବତ୍ତର ଅଛି ।

ସାବାଳକ ଭୋଟ ପଦ୍ଧତି ନେଇ ଏଇଠି ଦୁଇଟି ଆନୁଷ୍ଠାନିକ ନିୟମ ଅଛି । ପ୍ରଥମଟି ହେଉଛି ଭାରତ ସମ୍ବିଧାନର ୩୨୬ ଧାରା ଏବଂ ଦ୍ୱିତୀୟଟି ହେଉଛି ଭାରତର ୧୯୫୦ ଏବଂ ୧୯୫୧ ଲୋକ ପ୍ରତିନିଧି ଆଇନ ।

ଲୋକ ପ୍ରତିନିଧି ଆଇନ ସ୍ପଷ୍ଟ ଭାବେ କୁହେ ଯେଉଁମାନେ ଦୋଷୀ ସାବ୍ୟସ୍ତ ହୋଇ ଜେଲ୍ ଭୋଗୁଛନ୍ତି, ଯେଉଁମାନେ ବିଚାରଧୀନ କଏଦୀ ଅଛନ୍ତି ଏବଂ ଯେଉଁମାନେ ଆଇନତଃ ପୋଲିସ ହାଜତରେ ରହିଛନ୍ତି ସେମାନଙ୍କୁ ଭୋଟର ତାଲିକାରେ ରେଜିଷ୍ଟ୍ରିଭୁକ୍ତ କରାଯିବ ନାହିଁ ଏବଂ ସେମାନେ ସାଧାରଣ ନିର୍ବାଚନରେ ଭୋଟ ଦେଇ ପାରିବେନି ।

ସାବାଳକ ଭୋଟଦାନ ପଦ୍ଧତି ଭାରତୀୟ ଗଣତନ୍ତ୍ରର ଏକ ଅନନ୍ୟ ପ୍ରଥା । ପୃଥିବୀର କୌଣସି ଦେଶରେ ଏହାର ପଟାନ୍ତର ନାହିଁ । ଭୋଟଦାତା ଭାବେ ରେଜିଷ୍ଟ୍ରିଭୁକ୍ତ ହେବାକୁ ଏଠାରେ ଜାତି, ଧର୍ମ, ବର୍ଣ୍ଣ, ଶିକ୍ଷା କିମ୍ବା ଧନକୁ ଆଧାର କରାଯାଏନି । ଜଣେ ଭାରତୀୟ ହୋଇଥିଲେ ଭାରତର ଯେ କୌଣସି ନିର୍ବାଚନରେ ଅଂଶ ଗ୍ରହଣ କରିବାକୁ ଏଠାରେ ବାରଣ ନାହିଁ । ଅଠର ବର୍ଷ ବୟସରେ ଯେକୌଣସି ଭାରତୀୟ ପୁରୁଷ ଏବଂ ସ୍ତ୍ରୀର ଭୋଟ ଦାନ ଅଧିକାର ଆଇନତଃ ସିଦ୍ଧ । ଅଥଚ ଏକ ପ୍ରଭାବଶାଳୀ ଗଣତନ୍ତ୍ର କହୁଥିବା ଯୁକ୍ତରାଷ୍ଟ୍ର ଆମେରିକାରେ ସାବାଳକ ଭୋଟଦାନ ବ୍ୟବସ୍ଥା ସାମଗ୍ରିକ ଭାବେ ଲାଗୁ ହୁଏ ନାହିଁ । ଅନେକ ବର୍ଷ ପର୍ଯ୍ୟନ୍ତ ସେଠି ମହିଳା ଏବଂ ନିଗ୍ରୋମାନଙ୍କୁ ଭୋଟଦାନରୁ ବଞ୍ଚିତ ରଖାଯାଇଥିଲା । ଭାରତରେ କିନ୍ତୁ ସାବାଳକ ଭୋଟ ଅଧିକାର ଭାରତ ସମ୍ବିଧାନ ପ୍ରଣୟନ ହେବାଠାରୁ ହିଁ ଅଛି । ଆମ ସମ୍ବିଧାନ ପ୍ରଣେତାଙ୍କର ଏହା ଉଚ୍ଚ ଚିନ୍ତାର ପରିଚୟ ଦିଏ ।

କୁହାଯାଏ, ଭାରତର ସାବାଳକ ଭୋଟ ପ୍ରଥା ବା ଆଡଲ୍ଟ ସର୍ଫେଜ୍ ଅତୁଳନୀୟ ଏବଂ ଅନନ୍ୟ ହୋଇଥିଲେ ବି ଏହା ଏବେ ମଧ୍ୟ ସମ୍ପୂର୍ଣ୍ଣ ନୁହେଁ । କିଛି ଲୋକଙ୍କୁ ଏବେ ବି ଭୋଟ ଦେବାର ଅଧିକାର ଦିଆଯାଇନି ଯାହା ଏହି ଭୋଟ ପଦ୍ଧତିର ପରିପନ୍ଥୀ ।

ଜେଲ୍‌ରେ ଥିବା ବନ୍ଦୀଙ୍କ ଭୋଟ ଦେବା ଅଧିକାର ନେଇ ଭାରତବର୍ଷରେ ଏହାର ସପକ୍ଷ ଏବଂ ବିପକ୍ଷରେ ଅନେକ ମତ ଆସେ । ସପକ୍ଷବାଦୀମାନେ ଯୁକ୍ତି ଦିଅନ୍ତି - ଜେଲ୍‌ରେ ଥାଇ ବି ଜଣେ ରାଜନେତା ଯଦି ନିର୍ବାଚନ ଲଢି ପାରୁଛି ଏବଂ ନିର୍ବାଚନ ଜିତି ସେଇ ଆସନକୁ ସେ ପ୍ରତିନିଧିତ୍ୱ କରିପାରୁଛି ତେବେ ଜଣେ କଏଦୀକୁ ଭୋଟଦାନରୁ ବଞ୍ଚିତ କରିବାର କାରଣ ବାସ୍ତବରେ ସେତେ ବଳିଷ୍ଠ ନୁହେଁ ।

ଜର୍ଜ ଫର୍ଣ୍ଣାଣ୍ଡିଜ୍ ଜେଲ୍ ଭିତରେ ବନ୍ଦୀ ଥାଇ ନିର୍ବାଚନ ଜିତିଥିଲେ । ଲାଲୁ ଯାଦବ, ଶିବୁ ସୋରେନ, ସାହାବୁଦ୍ଦିନ ଏପରି ଅନେକ ନେତା ଜେଲରେ ଥାଇ

ନିର୍ବାଚନ ଲଢି ପର୍ଣ୍ଣାଣ୍ଡିଜ୍‌ଙ୍କ ତାଲିକାରେ ତାଲିକାଭୁକ୍ତ ହୋଇଛନ୍ତି । ସତକଥା ହେଲା, ଜେଲ ଭିତରେ ରହି ବି ନିର୍ବାଚନ ଲଢ଼ି ହେଉଛି ଏବଂ ଜିତିଥିବା ଆସନକୁ ସୁରକ୍ଷିତ ରଖିହେଉଛି । ଅଥଚ ଏହା ଏକ ବିରାଟ ବିରୋଧଭାଷ ଯେ ଯଦିଓ ଜେଲ୍ ବନ୍ଦୀଟିଏ ନିର୍ବାଚନରେ ପ୍ରତିଯୋଗିତା କରିବାରେ ବାଧା ନାହିଁ, ତଥାପି ନିଜକୁ ଭୋଟ ଦେବାର ତାର ଅଧିକାର ନାହିଁ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଜେଲରେ ସଂସ୍କାର କଏଦୀଙ୍କ ଜୀବନରେ ପରିବର୍ତ୍ତନ ଆଣିଲାଣି । ସମାଜର ମୁଖ୍ୟ ସ୍ରୋତରୁ ସେମାନେ ଯେ ପୃଥକ୍ ନୁହନ୍ତି, ଏ ଧାରଣା ସୃଷ୍ଟି କଲାଣି । ଏକ ସୁସ୍ଥ ସାମାଜିକ ଜୀବନ ପାଇଁ ଯେ ସେମାନେ ଅନୁପଯୁକ୍ତ ନୁହନ୍ତି ଏହାର ପ୍ରତ୍ୟୟ ଆସିଲାଣି । କଏଦୀଙ୍କ ପାଇଁ ବଣଭୋଜି ହେଉଛି । ଦେବଦେବୀ ପୀଠ ଦର୍ଶନ ପାଇଁ ଆୟୋଜନ କରାଯାଉଛି । ପାଠପଢିବା, ପରୀକ୍ଷା ଦେବା ଏବଂ ଏପରିକି ବିବାହ ନିମନ୍ତେ ବନ୍ଦୋବସ୍ତ ହେଉଛି । ଏସବୁ ପ୍ରଗତିଶୀଳ ଚିନ୍ତା । ବନ୍ଦୀ ଯେ ଏକ ସାମାଜିକ ବ୍ୟକ୍ତି, ଏହା ତାର ଏକ ପ୍ରତିଫଳନ ।

ଅପରାଧ ଶାସ୍ତ୍ର କହେ ଅପରାଧୀଟିଏକୁ ଜେଲ୍ ଦଣ୍ଡ ଦେବାର କେବଳ ଦୁଇଟି ଲକ୍ଷ୍ୟ ରହିଛି । ପ୍ରଥମଟି ହେଉଛି ଅପରାଧୀକୁ ସଂଶୋଧନ କରିବା ଏବଂ ଦ୍ୱିତୀୟଟି ହେଉଛି ଭୁଲ୍ ସଂଶୋଧନ କରି ତାକୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବା । ଏହାର କାରଣରେ କୁହାଯାଏ, ସମାଜକୁ ଆପଣାଇବାର ଭାବନା ବାସ୍ତବରେ ଅପରାଧୀର ନଥାଏ । ଆବେଗିକ ଭାବେ ସେ ସେତେ ସନ୍ତୁଳିତ ନୁହେଁ । ଆବେଗ ଏବଂ ସମ୍ବେଦନଶୀଳତା ଅଭାବରୁ ବ୍ୟକ୍ତି ଅପରାଧୀ ହୁଏ । ଅନ୍ୟ ବ୍ୟକ୍ତି ପ୍ରତି ଆଞ୍ଚ ଆଣେ ଏବଂ ପ୍ରଥା ବା ସିଷ୍ଟମକୁ ଆଘାତ ଦିଏ । ଜେଲ୍ ସଂସ୍କାରରେ ତେଣୁ ସାମାଜିକୀକରଣର ଆବଶ୍ୟକତା ଅଛି ।

ଅପରାଧ ବିଜ୍ଞାନର ଏହି ତତ୍ତ୍ୱକୁ ଉଦ୍ଧୃତ କରି କଏଦୀଙ୍କ ଭୋଟ ଦାନ ପାଇଁ ଲବି କରୁଥିବା ପଣ୍ଡିତମାନେ ଦାବି ତେଣୁ ଉଠାନ୍ତି, ବନ୍ଦୀଙ୍କୁ ସମ୍ପୂର୍ଣ୍ଣ ରାଜନୈତିକ ଅଧିକାର ଦେଇ ତାକୁ ସାମାଜିକ ମଣିଷଟିଏ କରିବା ଦରକାର । ଅବଶ୍ୟ ସପକ୍ଷବାଦୀମାନେ ତାଙ୍କ ଯୁକ୍ତିରେ ଏକଥା ମଧ୍ୟ କହନ୍ତି ଭାରତରେ ଜେଲ୍ ମାନଙ୍କରେ ବନ୍ଦୀ ଥିବା ପ୍ରାୟ ୭୫ ପ୍ରତିଶତ କଏଦୀ ହେଉଛନ୍ତି ବିଚାରଧୀନ କଏଦୀ ବା ଅଣ୍ଡର ଟ୍ରାଏଲ୍ ପ୍ରିଜିନ୍‌ର । ଆଇନର ସିଦ୍ଧାନ୍ତ ହେଲା ଯେ, ଯେ ପର୍ଯ୍ୟନ୍ତ ଜଣେ ନ୍ୟାୟାଳୟରେ

ଦୋଷୀ ସାବ୍ୟସ୍ତ ନହୋଇଛି ତାକୁ ଦୋଷୀ କହିବା ଅନୁଚିତ । ସାମାଜିକ ବାସଚ୍ୟୁତ ଭାବେ ରଖିବା ଅଗ୍ରହଣୀୟ । ବିଚାରଧୀନ ବନ୍ଦୀକୁ କାହିଁକି ଯେ ଭୋଟ ଦାନରୁ ବିରତ ରଖାଯାଇଛି, ଏ ପ୍ରଶ୍ନ ବାସ୍ତବରେ ଅଯଥାର୍ଥ ନୁହେଁ ।

ହଁ, ଇଏ ଗଲା ସପକ୍ଷବାଦୀଙ୍କ କଥା । ବନ୍ଦୀକୁ ଭୋଟ ଦେବା ଅଧିକାର ପ୍ରସଙ୍ଗ ଆସିଲେ ଅନେକ ବି ଏଠି ନାସିକା ସଂକୁଚିତ କରିଦିଅନ୍ତି । ବିରୁଦ୍ଧର ସ୍ୱର ଉଠାନ୍ତି । କହନ୍ତି, ସାବାଳକ ଭୋଟ ଅଧିକାର ଏକ ସମ୍ମାନଜନକ ଗୁରୁତ୍ୱପୂର୍ଣ୍ଣ ଅଧିକାର । ଭୋଟ ପରି ଏକ ଶକ୍ତିଶାଳୀ ବସ୍ତୁକୁ ଯେ କୌଣସି ଲୋକର ହାତକୁ ଟେକି ଦେବା ଉଚିତ ନୁହେଁ । ବ୍ୟାଲଟ୍‌କୁ ସେମାନେ ବୁଲେଟ୍ ଭାବେ ବ୍ୟବହାର କରିପାରନ୍ତି । ବିରୋଧରେ ଏହା ମଧ୍ୟ ଆସେ, ଏହି ଭୋଟଦାନ ଅଧିକାରରେ ବିପଦ ବେଶି । କଏଦୀଙ୍କୁ ଭୋଟ ଦେବା କ୍ଷମତା ମିଳିଗଲେ ରାଜନୀତିରେ ଅପରାଧିକରଣ ବଢିଯିବ । ରାଜନେତାମାନେ କଏଦୀଙ୍କୁ ଏକ ଭୋଟ ବ୍ୟାଙ୍କ ଭାବେ ବିବେଚନା କରିବେ । ନିର୍ବାଚନ ବେଳେ ଜେଲ୍ ଭିତରେ ଭୋଟ ପ୍ରଚାର ହେବ । ଭୋଟ ପାଇଁ ବାହୁବଳ ଏବଂ ଧନବଳର ପ୍ରୟୋଗ ଚାଲିବ ।

ଭାରତରେ ଥରେ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହୋଇଗଲେ ଯେପରି ଦଲାଲମାନେ ସକ୍ରିୟ ହୋଇଯାଆନ୍ତି ଏବଂ ଅନୁଚିତ ଉତ୍ସବର ପରିବେଶଟିଏ ସୃଷ୍ଟି କରିଦିଅନ୍ତି, ଜେଲ୍ ପରିସରଟି ସେଇ ହାଓ୍ୱାରେ ପୁରିଯିବ । ଜେଲ୍‌ରେ ଆଉ ଶୃଙ୍ଖଳା ରହିବନି । ବନ୍ଦୀଙ୍କ ଗତିବିଧିକୁ ନିୟନ୍ତ୍ରଣ କରିବା ଆଉ ସହଜ ବି ହେବନି । ବିପଦର ଆଶଙ୍କା ଯେ ଏତିକିରେ ଶେଷ ହେବନି ବିପକ୍ଷବାଦୀମାନେ ଦର୍ଶାନ୍ତି । ଏ ବିପଦରେ ଥାଏ, ଜେଲରେ ଭୋଟ ପ୍ରଚାର ପରିବେଶ ସୃଷ୍ଟି ହେଲେ କଏଦୀମାନେ ନିଜେ ଜେଲ୍‌ରୁ ମୁକ୍ତି ପାଇଁ ରାଜନେତାଙ୍କ ଠାରୁ ପ୍ରତିଶ୍ରୁତି ମାଗିବେ । ଯେକୌଣସି ମତେ ଖସେଇ ନେବାକୁ ଅନୁରୋଧ କରିବେ । ଯେଉଁ ନେତା ମୁକ୍ତି କରିଦେବାରେ ପ୍ରତିଶ୍ରୁତି ଦେବେ ତାଙ୍କୁ ସେମାନେ ଭୋଟ ଦେବେ । ଜେଲ୍‌ରୁ ମୁକ୍ତି ପାଇଁ ଭୋଟର କିଣାବିକା ହେବ । ଏପରି ଏକ ଭୟଙ୍କର ଅବସ୍ଥାକୁ ସମାଜ ସହ୍ୟ କରିପାରିବ କି ନା ଏହା ବି ଏକ ବଡ ପ୍ରଶ୍ନ ।

ଏ ଦୁଇ ଯୁକ୍ତି ପରସ୍ପର ବିରୋଧାତ୍ମକ ହେଲେ ବି ଏଥିରେ ନିଜସ୍ୱ ଓଜନ ଅଛି । ଭୋଟଦାନରୁ ବଞ୍ଚିତ କରି ଜଣକୁ ସାମାଜିକ ବାସନ୍ଦ କରିବା ଯେପରି ଅଗଣତାନ୍ତ୍ରିକ

କଏଦୀକୁ ଭୋଟ ଦାନ କ୍ଷମତା ଦେଇ ଜେଲ୍ ପରିସରକୁ କଳୁଷିତ କରିବା ସେପରି ଏକ ଭୟଙ୍କର ପଦକ୍ଷେପ । କିନ୍ତୁ ଗୋଟିଏ କଥା ସତ ଯେ ସମୟ ଏଠି ଦ୍ରୁତ ବଦଳୁଛି । ମାନବୀୟ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ସମାଜ ଏଠି ଗତିଶୀଳ ହେଉଛି । କଏଦୀଙ୍କ ଭୋଟ ଦାନ ନେଇ ବିଦ୍ୱାନ୍‌ମାନଙ୍କ ଏହି ଦୁଇଟି ପରସ୍ପର ବିରୋଧାତ୍ମକ ଯୁକ୍ତି କୌଣସି ଏକ ବିନ୍ଦୁରେ ତେଣୁ ମିଶିବା ଦରକାର ।

ଏ ଆଲୋଚନାର ଏ ଶେଷ କଥା । ପୃଥିବୀର ଅନେକ ରାଷ୍ଟ୍ରରେ ବନ୍ଦୀମାନଙ୍କୁ ଭୋଟଦାନ ଅଧିକାର ମିଳିଲାଣି । ଜେଲ୍ ସଂସ୍କାରର ଏହା ଏକ ପ୍ରକ୍ରିୟା ବୋଲି ଏହା ଗଣାଗଲାଣି । ଅଷ୍ଟ୍ରେଲିଆ ଏବଂ ଆମେରିକାର ଅନେକ ରାଜ୍ୟରେ କଏଦୀମାନେ ଭୋଟ ଦେଲେଣି ।

ଭାରତରେ ଅନ୍ତତଃ ବିଚାରଧୀନ କଏଦୀଙ୍କୁ ଏ ଅଧିକାର ମିଳିବା ଉଚିତ । କାରଣ ହେଲା ଦୋଷୀ ସାବ୍ୟସ୍ତ ନହୋଇଥିବା ବ୍ୟକ୍ତିର ନିଜର ଆତ୍ମମର୍ଯ୍ୟାଦା ଥାଏ, ଆତ୍ମ ସମ୍ମାନ ଥାଏ । ସମାଜର ମୁଖ୍ୟ ସ୍ରୋତ ପ୍ରତି ଏକ ଆପଣାପଣ ବି ରହିଥାଏ । ଭୋଟଦାନ ପରି ଏକ ଉତ୍ତମ ରାଜନୈତିକ ପ୍ରକ୍ରିୟାରୁ ବଞ୍ଚିତ ରଖି ତାକୁ ଅସାମାଜିକ ବୋଲି ଚିତ୍ରଣ କରିବାଟା ମାନବୀୟ ହେଉନି । ଭାରତୀୟ ଲୋକ ପ୍ରତିନିଧି ଆଇନ ଏବଂ ଭାରତ ସମ୍ବିଧାନ ସଂଶୋଧନ ହେବାରୁ ତେଣୁ ଆବଶ୍ୟକତା ଆସିଛି । କଏଦୀଙ୍କୁ ଭୋଟ ଦେବା କ୍ଷମତା ଦେଇ ଦେଲେ ଯେ ରାଜନୀତିର ଅପରାଧିକରଣ ବଢ଼ିଯିବ, ଏହା ବାସ୍ତବରେ ଏକ ସ୍ଥାନାନ୍ତରିତ ପ୍ରଶ୍ନ । ଏବେ ଯଦି ବନ୍ଦୀଙ୍କୁ ଭୋଟ ଦେବା ଅଧିକାର ମନା, ରାଜନୀତିର କ'ଣ ଅପରାଧିକରଣ ନାହିଁ ?

ଉତ୍ତମ ପାଲ୍‌ମାନେ ଜେଲ୍ ଭିତରେ ଥାଇ ସେମିତି ଏକ ରାଜନୈତିକ ଅଧିକାରକୁ ଅବଶ୍ୟ ଅପେକ୍ଷା କରିଛନ୍ତି । ସେମାନେ ଜେଲ୍‌ରେ ଥାଇ ବି ତାଙ୍କ ପ୍ରିୟ ନେତାଙ୍କୁ ଭୋଟ ଦେବାକୁ ଚାହାନ୍ତି । କେବେ ?



# କିଶୋର ହିଂସା

**ସେ** ଦିନ ଥିଲା ଅପରାହ୍ନ ଦୁଇଟା । ସ୍କୁଲ ସାଂଗେ ସାଂଗେ ବନ୍ଦ ହେଉଥାଏ । ପିଲାମାନେ ଘରକୁ ଯିବାକୁ ପ୍ରସ୍ତୁତ ହେଉଥାଆନ୍ତି । ଏତିକି ବେଳେ ବାହାରେ ଗୁଳି ଫୁଟିବା ଶବ୍ଦ ଶୁଭିଲା । ଶିକ୍ଷକ ଏବଂ ଛାତ୍ରଛାତ୍ରୀମାନେ ବାହାରକୁ ଆସି ଦେଖିଲେ, ଅଷ୍ଟମ ଶ୍ରେଣୀ ଛାତ୍ର ଅଭିଷେକ ରକ୍ତ ଜୁଡୁବୁଡୁ ହୋଇ ତଳେ ପଡିଛି । ସମ୍ଭବତଃ ତାର ମୃତ୍ୟୁ ହୋଇଯାଉଛି ଏବଂ ଅଭିଷେକକୁ ଗୁଳି କରି ତାର ଦୁଇଜଣ ଶ୍ରେଣୀ ସାଙ୍ଗ ତରତରରେ ସିଡି ଦେଇ ତଳକୁ ପଳାଇ ଯାଉଛନ୍ତି ।

ଏପରି ଏକ ଘଟଣା ଘଟିଥିଲା ଗୁରୁଗାଓଁର ଇରୋ ଇଣ୍ଟରନାସନାଲ ସ୍କୁଲରେ । ଅବଶ୍ୟ ଏ ଘଟଣାକୁ ପୃଥକ ଭାବେ ଦେଖି ହେବନି, କାରଣ ସାମ୍ପ୍ରତିକ ସମାଜର ଏକ ବର୍ଦ୍ଧିତ ଅସହିଷ୍ଣୁତାର ଛାପ ହିଁ ଏହା ବହନ କରେ ।

ଯାହା ରିପୋର୍ଟ ଆସେ, ଗୁରୁଗାଓଁର ଏହି ଆନ୍ତର୍ଜାତିକ ସ୍କୁଲଟି ବେଶ ପ୍ରତିଷ୍ଠା ସମ୍ପନ୍ନ ସ୍କୁଲ । ଏଠାରେ ପାଠପଢା ଉଚ୍ଚକୋଟୀର । ପିଲାଙ୍କ ସଫଳତାର ହାର ଅଧିକ । ସ୍କୁଲ ଘର ଭୂମିକମ୍ପ ନିରୋଧକ ଏବଂ ଏଠାରେ ସୁରକ୍ଷା ବ୍ୟବସ୍ଥା ବେଶ୍ ଉନ୍ନତମାନର । ଅଥଚ ଏଠି ଯେଉଁ ଅଭାବଟି ଥିଲା ତାକୁ ବିଦ୍ୟାଳୟ କର୍ତ୍ତୃପକ୍ଷ ଦେଖିପାରୁନଥିଲେ । ଅନେକ ଦିନ ଧରି ଏଇ ସ୍କୁଲର କିଛି ପିଲାଙ୍କ ଭିତରେ ଆବେଗିକ ଫାଟଟିଏ ସୃଷ୍ଟି ହୋଇସାରିଥିଲା ଏବଂ ଏଠାରେ କିଛି ଦୁର୍ବଳମନା ପିଲା ବି ଥିଲେ । ଗୁରୁଗାଓଁର କିଶୋର ହିଂସା ଏକ ସ୍ୱତନ୍ତ୍ର ଘଟଣା ।

ଏଇ କିଛି ବର୍ଷ ତଳେ ଆମେରିକାର ଭର୍ଜିନିଆର ଏକ ସ୍କୁଲର ଜଣେ ଛାତ୍ର ତାର ୩୨ ଜଣ ସହପାଠୀଙ୍କୁ ଗୁଳି କରି ହତ୍ୟା ଘଟଣାକୁ ଆମେ ଏଠି ଗୁରୁତ୍ୱର ସହ ନେଉନଥିଲୁ । ବରଂ ଯୁକ୍ତି କରିଥିଲୁ, କିଶୋର ହିଂସା କେବଳ ପଶ୍ଚିମ ବିଶ୍ୱରେ ହୁଏ । କାରଣ ପାଶ୍ଚତ୍ୟ ସମାଜ ଏକ ମୁକ୍ତ ତଥା ସ୍ୱେଚ୍ଛାଚାରୀ ସମାଜ । ଭାରତରେ କିନ୍ତୁ କିଶୋର ହିଂସା ସମ୍ଭବ ନୁହେଁ । କାରଣ ହେଉଛି, ଭାରତୀୟ ସଂସ୍କୃତି ଏପରି ଯେକୌଣସି ହିଂସାର ପରିପନ୍ଥୀ । ଏଠି ଏକ ଦୃଢ ମୂଲ୍ୟବୋଧ ଅଛି ।

ଗୁରୁଗାଓଁ ଇରୋ ସ୍କୁଲ କିନ୍ତୁ ଏ ଧାରଣାର ସମ୍ପୂର୍ଣ୍ଣ ଓଲଟପାଲଟ କରିଦେଲା । କୈଶୋର ହେଉଛି ଶୈଶବ ଏବଂ ତାରୁଣ୍ୟର ଏକ ମଧ୍ୟବର୍ତ୍ତୀ ଅବସ୍ଥା । ଏହି ଅବସ୍ଥାରେ ଜଣେ ସାମାଜିକ ପରିପକ୍ୱତା ପାଇନଥାଏ । ଯୌନ ପରିପକ୍ୱତା ପାଇଁ ଅପେକ୍ଷାରେ ଥାଏ । ପୂର୍ବ ପାରମ୍ପରିକ ସମାଜର କିଶୋରାବସ୍ଥା ବେଶ୍ କିଛି ଦିନ ଧରି ରହୁଥିଲା । ବର୍ତ୍ତମାନର ଶିକ୍ଷଭିତ୍ତିକ ସମାଜରେ କିଶୋର ଦିନ ଆଉ ବେଶି ଦିନ ରହୁନି । ତାରୁଣ୍ୟ ଖୁବ୍ ଶୀଘ୍ର ଚାଲିଆସୁଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଜୀବନର ସବୁ ପର୍ଯ୍ୟାୟ ଠାରୁ କିଶୋର ବୟସ ଖୁବ ଅସ୍ଥିର ବୟସ । ଏହି ବୟସରେ ଜଣେ ସହଜରେ ହିଂସ୍ର ଏବଂ ବିପ୍ଳବୀ ହୋଇଯାଏ । ସାମ୍ପ୍ରତିକ କିଶୋର ହିଂସା ଘଟଣା ହିଁ ଏହି ଅବସ୍ଥାରେ ସ୍ୱଭାବିକ ଭାବେ ଘଟୁଥିବା ଦୈହିକ ତଥା ଆବେଗିକ ପରିବର୍ତ୍ତନର ଏକ ବାହ୍ୟ ପ୍ରତିଫଳନ ମାତ୍ର ।

ଇଏ ହେଉଛି କିଶୋର ବ୍ୟବହାର ସମ୍ପର୍କରେ ସମାଜଶାସ୍ତ୍ରୀ ଏବଂ ମନୋତତ୍ତ୍ୱବିତ୍‌ଙ୍କ ମତ ଏବଂ ଏମାନେ ଏକଥା ବି କହନ୍ତି, କିଶୋର ଅସ୍ଥିରତା ପାଇଁ ସାମ୍ପ୍ରତିକ ବସ୍ତୁବାଦୀ ସମାଜ ହିଁ ଦାୟୀ । ଏଠି କିଏ କ'ଣ ପାଇଲା ତାକୁ କେବଳ ବିଚାରକୁ ନିଆଯାଏ । କେବଳ ବେପାରି ଅର୍ଥ ବ୍ୟବସ୍ଥାଟିଏ ଉପରେ ଏଠି ଗୁରୁତ୍ୱ ଦିଆଯାଏ । ଉପରୋକ୍ତବାଦର ପ୍ରସାର ପାଇଁ ବ୍ୟବସ୍ଥା ହୁଏ । ଜଗତୀକରଣକୁ ଆବୋରି ବିଦେଶରୁ ସାମଗ୍ରୀମାନ ଅଣାଯାଏ । କିନ୍ତୁ ଜଗତୀକରଣ ଯେ ଏହା ଭିତରେ ପାଶ୍ଚାତ୍ୟ ଅପସଂସ୍କୃତି ଏବଂ ହିଂସାକୁ ଏ ଦେଶକୁ ଆଣି ସାରିଛି, ଗୁରୁଗାଓଁର ସ୍କୁଲ ଗୁଳିକାଣ୍ଡ ଏହା ଜଣେଇ ଦେଇଛି ।

କିଶୋର ବ୍ୟବହାର ଉପରେ ପବ୍ଲିକ୍ ସ୍କୁଲରେ ପ୍ରାୟ ପନ୍ଦରଶହ ପିଲାଙ୍କୁ ନେଇ ଏକ ସର୍ଭେକ୍ଷଣ ଏବେ ହୋଇଥିଲା । ଏସବୁ ପିଲା ଅଷ୍ଟମ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ପିଲା ଥିଲେ । ସର୍ବେକ୍ଷଣ ରିପୋର୍ଟର ସାରକଥା ହେଲା, ସ୍କୁଲରେ ପ୍ରତିଦିନ ପ୍ରାୟ ପିଲାପିଲାଙ୍କ ଭିତରେ ବିଧା ଗୋଇଠା ଚାଲେ ଏବଂ ପ୍ରତି ସପ୍ତାହରେ ଥରେ ଦୁଇଗୋଷ୍ଠୀ ହୋଇ ଏମାନେ ସଂଘର୍ଷ କରନ୍ତି । ଏଥିରେ ହକି ଷ୍ଟିକ୍, ଚେନ୍ ଏପରିକି ଛୁରୀ ବ୍ୟବହୃତ ହୋଇଥାଏ । ଏପରି ମାରପିଟ ତଥା ସଂଘର୍ଷର କାରଣ ବି ରିପୋର୍ଟରେ ଅଛି । ଏହି କାରଣରେ ଅଛି, ଟଙ୍କା ଧାର ନେଇ ନଫେରେଇବା । ଝିଅ ସମ୍ପର୍କ କିମ୍ବା ଗୋଟିଏ ଗୋଷ୍ଠୀରୁ ବାହାରି ଯାଇ ଅନ୍ୟ ଗୋଷ୍ଠୀରେ ମିଶିବା । ଜଣେ

ଅନ୍ୟଜଣକୁ ଅସୁନ୍ଦର ଦିଶୁଛି କହି ତାଚ୍ଛଲ୍ୟ କରିବାରେ ମଧ୍ୟ ବେଳେବେଳେ ସଂଘର୍ଷ ହୁଏ ।

ଗୁରୁଗାଓଁର ଛାତ୍ର ଅଭିଷେକର ହତ୍ୟା ଏପରି ଏକ କାରଣର ବି ସୂଚନା ଦିଏ । ହତ୍ୟାର ଅଭିଯୁକ୍ତମାନେ ଅଭିଯୋଗ କରନ୍ତି, ଅଭିଷେକ ସେମାନଙ୍କୁ ଧମକ ଦେଉଥିଲା ନିର୍ଯାତନା ଦେଉଥିଲା । ସେମାନେ ଅଭିଷେକ ପ୍ରତି ଅତିଷ୍ଠ ହୋଇପଡିଥିଲେ । ଏ ଅତିଷ୍ଠତା ଦିନକର ଘଟଣା ନଥିଲା । ଏହା ଥିଲା ପ୍ରାୟ ବହୁଦିନର । ସ୍କୁଲ କର୍ତ୍ତୃପକ୍ଷ ଜାଣି ବି କିଛି କରିନଥିଲେ ।

ହଁ, କିଶୋର ହିଂସାର କିଛି କାରଣ କଥା ଏ ଆଲୋଚନାର ପରିସରକୁ ଏ ଲେଖକର ଆଣିବାକୁ ଇଚ୍ଛା । ଏ ସମସ୍ତ କିଶୋର ବ୍ୟବହାର ବା ଆଡୋଲେସେଣ୍ଟ ବିହେବିହର ସମ୍ପର୍କରେ ଗବେଷଣା କରି ସୂଚେଇ ଦେଇଥିବା କିଛି ଗବେଷକଙ୍କ ମତ ଉପରେ ପର୍ଯବେଶିତ । ମୁଖ୍ୟତଃ ଦୁଇଟି କାରଣ ଏଥିରେ ଥାଏ । ହିଂସ୍ର କୈଶୋରର ପ୍ରଥମ କାରଣଟି ହେଉଛି. ତାରୁଣ୍ୟର ପୂର୍ବାବସ୍ଥାରେ ଘଟୁଥିବା ଦୈହିକ ତଥା ଆବେଗିକ ପରିବର୍ତ୍ତନ ଏବଂ ଦ୍ୱିତୀୟଟି ହେଉଛି ସାମାଜିକ ପରିବର୍ତ୍ତନ । ଆବେଗିକ ଉଚ୍ଚ ପ୍ରବଣତା ଏବଂ ସାମାଜିକ ଆବଶ୍ୟକତା ଭିତରେ ଯେତେବେଳେ ସମନ୍ୱୟର ଅଭାବ ଆସେ ସେତେବେଳେ କିଶୋର ହିଂସା ଜନ୍ମ ନିଏ ଏବଂ ତେର ବର୍ଷରୁ ଚଉଦ ବର୍ଷ ଭିତରେ ହରମନ ଜନିତ ପରିବର୍ତ୍ତନ ବେଶ୍ ଗୁରୁତର ବୋଲି ଏମାନେ ମତ ଦିଅନ୍ତି । ଅଥଚ କିଶୋର ହିଂସା ପାଇଁ ସାମାଜିକ ପରିବର୍ତ୍ତନ ଯେ ଏକ ବଳିଷ୍ଠ ଭୂମିକା ନିଏ ଏହାକୁ ଗବେଷକମାନେ ଜୋର ଦେଇ କହନ୍ତି । ଏ ପରିବର୍ତ୍ତନର ମଧ୍ୟ ଦୁଇଟି ସ୍ତର ଥାଏ । ପ୍ରଥମଟି ହେଉଛି ଛୋଟ ସ୍ତର ବା ମାଇକ୍ରୋ ଲିଭେଲ୍ ଏବଂ ଦ୍ୱିତୀୟଟି ହେଉଛି ବଡ ଦିଗ ବା ମାକ୍ରୋ ।

ଛୋଟ ସ୍ତରରେ ଅଛି ପାରିବାରିକ ପରମ୍ପରା, ନୈତିକ ମୂଲ୍ୟବୋଧ, ଅଭିଭାବକୀୟ ଯତ୍ନ, ଆର୍ଥିକ ସ୍ଥିତି, ସ୍କୁଲ ପରିବେଶ ଏବଂ ସହପାଠୀଙ୍କ ସହ ସମ୍ପର୍କ । ପୂର୍ବେ ଆମର ଏଠାରେ ଯୌଥ ପରିବାର ଥିଲା । ବାପା, ବୋଉ, ଜେଜେ, ଜେଜେମା, କକା, ଖୁଡ଼ି ସମସ୍ତେ ଗୋଟିଏ ଛାତ ତଳେ ଏକାଠି ରହୁଥିଲେ । କୌଣସି ଏକ କାରଣରୁ ପିଲାଟି ଆବେଗିକ ଭାବେ ଅସନ୍ତୁଳିତ ହେଲେ ବଡ଼ମାନଙ୍କ ଆଖିରେ ତାହା ଧରା ପଡିଯାଉଥିଲା ଏବଂ ଘଟଣାର ବିସ୍ଫୋରଣ ହେବା ପୂର୍ବରୁ ତାହାର ସମାଧାନ

ହୋଇଯାଉଥିଲା । ଏଇଟା ଥିଲା ଭାରତର ପାରିବାରିକ ମୂଲ୍ୟବୋଧର ଦୃଢ଼ ପରମ୍ପରା । ଏବେ ତ ଯୌଥ ପରିବାର ସହରମାନଙ୍କରେ ମୋଟେ ଆଉ ନାହିଁ । ବଦଳରେ ଏକ ଶକ୍ତ ଆଣବିକ ପରିବାର ଛିଡା ହୋଇଗଲାଣି । କେବଳ ସ୍ୱାମୀ ସ୍ତ୍ରୀ ପିଲାଙ୍କୁ ନେଇ ସଂସାର । ବାପ, ମା'ମାନେ ପିଲାଙ୍କ ଠାରୁ କେବଳ ସଫଳତା ହିଁ ଚାହାନ୍ତି । ପିଲାଙ୍କ ଅଭାବ ବାଣ୍ଟିବାକୁ ବଡମାନଙ୍କ ପାଖରେ ସମୟ ବି ନଥାଏ ।

ସ୍କୁଲର ପରିବେଶ ମଧ୍ୟ ଭାରତୀୟ ଆଣବିକ ପରିବାରର ପରିବେଶ ପରି ଯାନ୍ତ୍ରିକ । ଏଠି କେବଳ ପାଠପଢା, ପରୀକ୍ଷା ଏବଂ ପ୍ରଦର୍ଶନ ଉପରେ ହିଁ ଗୁରୁତ୍ୱ ଦିଆଯାଏ । କିଶୋର ବୟସରେ ଉପନୀତ ଥିବା ପିଲାଟିଏର ଆବେଗିକ ପରିବର୍ତ୍ତନ ବୁଝିବାକୁ କୌଣସି ସ୍କୁଲରେ ଆବଶ୍ୟକୀୟ ପରାମର୍ଶ କେନ୍ଦ୍ର ବା ମେକାନିଜିମ୍ ନାହିଁ । ଏସବୁ ହେଉଛି କିଶୋର ହିଂସାର ଛୋଟ ଦିଗ ବା ମାଇକ୍ରୋ ପର୍ଯ୍ୟାୟ । କିଶୋର ହିଂସାର ବୃହତ୍ ବା ମାକ୍ରୋ ପର୍ଯ୍ୟାୟ କିନ୍ତୁ ଭିନ୍ନ । ଏଥିରେ ସାମିଲ ଅଛି ଗଣମାଧ୍ୟମ, ଟି.ଭି, ସିନେମା, କାର୍ଟୁନ, ଭିଡିଓ ଗେମ୍, ଇଣ୍ଟରନେଟ୍ ଏବଂ ସଂଗୀତ ଆଲବମ୍ । ଏସବୁ ମନୋରଞ୍ଜନ ମାଧ୍ୟମରେ ପିଲାଏ ହିଂସାର ଦୃଶ୍ୟ ଦେଖନ୍ତି । ହିଂସା ସୃଷ୍ଟି କରୁଥିବା ଚରିତ୍ରକୁ ସେମାନେ ଅନୁକରଣ କରନ୍ତି । ଏପରି ବି ଏକ ଅଧ୍ୟୟନ ରିପୋର୍ଟ ଆସିଥିଲା ଯେ କୌଣସି ଏକ ସହରୀ ମଧ୍ୟବିତ୍ତ ଆଣବିକ ପରିବାରର ପିଲାଟି ଟାକୁ ଅଠର ବର୍ଷ ହେଲାବେଳକୁ ଏହି ଟିଭି ଆଉ ଆଲବମ୍‌ରେ ସେ ପ୍ରାୟ ଦୁଇ ଲକ୍ଷ ହିଂସା ଏବଂ ଚାଳିଶ ହଜାର ହିଂସା ଦେଖୁଛି । ନିଃସଙ୍ଗତାରୁ ମୁକ୍ତି ପାଇଁ ପିଲାଟି ଟିଭି ଆଉ ଇଣ୍ଟରନେଟ୍ ଦେଖେ ଏବଂ ହିଂସାକୁ ମନୋରଞ୍ଜନ ବୋଲି ଭାବେ । ଏସବୁ ହିଁ ମାନସିକ ସ୍ତରରେ ତାକୁ ଆନ୍ଦୋଳିତ କରେ ।

ଗୁରୁଗାଓଁ ଘଟଣାରେ ଅଭିଯୁକ୍ତ ବାଳକ ଆକାଶ ଯାଦବ କୁଆଡେ ଏକଥା ବି ସ୍ୱୀକାର କଲାଣି, ବାପାଙ୍କ ବନ୍ଧୁକ ସେ ଚୋରାଇ ଆଣିଥିଲା । ନିଜ ଜୋତାର ମୋଜା ତଳେ ଲୁଚାଇ ରଖି ସେ ତାକୁ ସ୍କୁଲକୁ ନେଇଥିଲା । ସହପାଠୀ ଅଭିଷେକର ହତ୍ୟାପାଇଁ ଦୁଇ ଜଣ ବନ୍ଧୁ ମିଶି ଯୋଜନା କରିଥିଲେ ଏବଂ ସ୍କୁଲ ଶେଷ ହେବା କ୍ଷଣି ତା ପାଖକୁ ଯାଇ ଖୁବ୍ ନିକଟରୁ ତାକୁ ଗୁଳି କରି ହତ୍ୟା କରିଥିଲେ ।

ହତ୍ୟାର ଏପରି ଯୋଜନା ପ୍ରକୃତରେ ସିନେମାର ଗୁଣ୍ଡାମାନେ କରନ୍ତି । ଆଲବମର କାର୍ଟୁନ ଚରିତ୍ରମାନେ ନିଜେ ବନ୍ଧୁକ ଧରି ପରସ୍ପର ସହ ଏପରି ଯୁଦ୍ଧ

କରନ୍ତି । ଘରେ ମଧ୍ୟ ଅଭିଭାବକମାନେ ଏପରି ଦୃଶ୍ୟ ଦେଖିବାକୁ ପିଲାଙ୍କୁ ପ୍ରେରଣା ଦିଅନ୍ତି । ଅଥଚ ଖରାପ ଏବଂ ଭଲ ଚରିତ୍ର ଭିତରେ ପାର୍ଥକ୍ୟ କ'ଣ ପିଲାଙ୍କୁ ବୁଝାଇ ଦିଆଯାଏ ନାହିଁ । ଅଭିଭାବକୀୟ ଦାୟିତ୍ୱହୀନତା ବି ହିଂସ୍ର କୈଶୋର ପାଇଁ ଦାୟୀ । ଗୁଳିଭରା ବନ୍ଧୁକଟି ପିଲାର ଖେଳନା କରିବାକୁ କିପରି ଯେ ଘରେ ଛାଡି ଦିଆଯାଇଥିଲା ଏଇତ ଏବେ ବୃହତ୍ ଚର୍ଚ୍ଚା ।

ସୁତରାଂ କିଶୋର ହିଂସାର କୌଣସି ଗୋଟିଏ ମାତ୍ର କାରଣ ନାହିଁ । ଆବେଗିକ ପରିବର୍ତ୍ତନ ଠାରୁ ସାମାଜିକ ପରିବର୍ତ୍ତନ ପର୍ଯ୍ୟନ୍ତ ଅନେକ କାରଣର ଏହା ସମାହାର ଏବଂ ଏହା ବି ସ୍ୱୀକାର୍ଯ୍ୟ ଯେ ପିଲାଙ୍କ ସହନଶୀଳତାର ସ୍ୱର ଏବେ ବେଶ୍ ନିମ୍ନରେ ଅଛି । ସାମାନ୍ୟ ଚାପକୁ ସହ୍ୟ କରିବାରେ ଏମାନେ ଅସମର୍ଥ । ବାସ୍ତବତା ସହ ଖାପ ଖୁଆଇ ଚାଲିବାରେ ଏମାନଙ୍କର ପ୍ରସ୍ତୁତି ବି ନାହିଁ । ଟି.ଭି, ଭିଡିଓ, ଇଣ୍ଟରନେଟ୍‌ର ଚରିତ୍ର, ଏମାନଙ୍କର ସମ୍ପ୍ରତି ଆଦର୍ଶ ।

ଏଇଠି ପ୍ରଶ୍ନ ଆସିବଣି, ହିଂସ୍ର କୈଶୋରକୁ ରୋକିବାର ବାଟ କ'ଣ ? ନୈତିକ ଅବକ୍ଷୟକୁ ଅଟକାଇ ସାମାଜିକକରଣ କରିବାକୁ ଉପାୟ କ'ଣ ? ଉତ୍ତର ଏହାର ଗୋଟିଏ - ସେ ହେଉଛି ଉପଯୁକ୍ତ ଶିକ୍ଷା, ଯେଉଁ ଶିକ୍ଷାରେ ଚରିତ୍ର ତିଆରି ହୋଇପାରୁଥିବ, ମାନସିକ ଶକ୍ତି ବୃଦ୍ଧି ପାଇପାରୁଥିବ, ବୌଦ୍ଧିକତାର ବିସ୍ତାର ହେଉଥିବ ଏବଂ ନିଜ ଗୋଡରେ ସ୍ୱାଧୀନ ଭାବେ ଛିଡା ହେବାର ସମସ୍ତ ଉପାଦାନ ଏଥିରେ ଥିବ । ଏପରି ଶିକ୍ଷା କଥା ସ୍ୱାମୀ ବିବେକାନନ୍ଦ କହିଥିଲେ । ପ୍ରକୃତ କଥା ହେଲା ଯେତେବେଳେ ସାମାଜିକ ଶୃଙ୍ଖଳାର ବିପର୍ଯ୍ୟୟ ଘଟେ, ସେତେବେଳେ ସମସ୍ତ ଆର୍ଥିକ ଅଭିବୃଦ୍ଧି ଏବଂ ପ୍ରାଚୁର୍ଯ୍ୟ ଯେ ଏକ ଅସୁର ହୋଇଯାଏ ଏହା ନିଶ୍ଚିତ । ହିଂସ୍ର କୈଶୋର କେବେବେଳେ କାହାପାଇଁ ବି ଶୁଭଙ୍କର ନଥିଲା ।



# ମେଡ୍ ଇନ୍ ଇଣ୍ଡିଆ

**ଗ**ତ ଉପଭୋକ୍ତା ଦିବସ ଉପଲକ୍ଷେ ପ୍ରକାଶିତ ଏକ ଲିଫ୍‌ଲେଟ୍ ନଜରକୁ ଆସିଲା । ଏଥିରେ ଲେଖାଥିଲା - ମେଡ୍ ଇନ୍ ଇଣ୍ଡିଆ ଛପାଥିବା ସାମଗ୍ରୀ କିଣନ୍ତୁ ! ଏହା ଶସ୍ତା, ସୁନ୍ଦର ଏବଂ ମଜଭୁତ । ବାପୁଜୀ ସ୍ୱଦେଶ କଥା କହୁଥିଲେ । ଦେଶୀ ଜିନିଷ କିଣି ବ୍ୟବହାର କରିବା ଉପରେ ସେ ଗୁରୁତ୍ୱ ଦେଉଥିଲେ । ମେଡ୍ ଇନ୍ ଇଣ୍ଡିଆ ଜିନିଷ ଦେଶ ପ୍ରୀତିର ସିମ୍ବଲ ।

ହଁ, ପାଠକ ବନ୍ଧୁ ! ଏପରି ଆବେଦନରେ ବାସ୍ତବତା ଅପେକ୍ଷା ଆବେଗ ଥିଲା ବେଶୀ ଏବଂ ଏହା ସତ, ଆବେଗରେ ଆଉ ଏବେ ବେପାର ଚାଲିବନି । କାରଣ ଇଏ ଜଗତୀକରଣର ଯୁଗ । ବଜାର ଏଠି ଖୋଲା । ମୁକ୍ତ ମାର୍କେଟରେ ତିଷ୍ଠି ରହିବାକୁ ହେଲେ ତଣ୍ଟିକଟା ପ୍ରତିଯୋଗିତା କରିବାକୁ ହୁଏ ।

ଇଏ ବି ସତ, ଭାରତ ଏବେ ବିଶ୍ୱ ବାଣିଜ୍ୟ ସଂଗଠନର ଜଣେ ସଦସ୍ୟ । ଏ ଦେଶରେ ବାହାର ଦେଶର ଦ୍ରବ୍ୟର ମୁକ୍ତ ଯୋଗାଣକୁ ଆମେ ପ୍ରତିଶ୍ରୁତି ଦେଇଛୁ । ଯେଉଁ ଦ୍ରବ୍ୟ ଯେତେ ଉତ୍ତମ ଏବଂ ଉତ୍କୃଷ୍ଟ ସେଇ ଏଠି ବଞ୍ଚି ରହିବ । ଏହା ମୁକ୍ତ ବଜାରର ଏକମାତ୍ର ଲକ୍ଷଣ - ସର୍ଭାଇଭାଲ୍ ଅଫ୍ ଦି ଫିଟେଷ୍ଟ ।

ଏହା କହିବାରେ ଦ୍ୱିଧା ନାହିଁ ଯେ ଭାରତରେ ତିଆରି ଜିନିଷର ଗୁଣବତ୍ତା ଆଉ ପୂର୍ବ ପରି ନିମ୍ନମାନର ନୁହେଁ । ପୃଥିବୀର ପରିବର୍ତ୍ତିତ ଅବସ୍ଥା ସହ ତାଳ ରଖି ଏହା ବଦଳି ଯାଇଛି । ପୂର୍ବେ ମେଡ ଇନ୍ ଇଣ୍ଡିଆ କହିଲେ ବୁଝାଯାଉଥିଲା ଯାହା ନକଲି ହୋଇଥିବ ଏବଂ ସେକେଣ୍ଡ ଗ୍ରେଡ ପରି ଦିଶୁଥିବ । ଏପରିକି ଦେଶ ତିଆରି ତାଲାଟିଏ ପ୍ରତି ବି ସ୍ୱତଃ ଅନାଗ୍ରହ ସୃଷ୍ଟି ହୋଇଯାଉଥିଲା । ଦେଶୀ ତାଲାର ଅର୍ଥ ଯାହା କାମ କରୁନଥିବ, ଯଦି ବା ଠିକ୍ ଥିବ, ଏହା ବହୁତ କଷ୍ଟରେ ପଡୁଥିବ । ଭାରତୀୟ ଇଲେକ୍‌ଟ୍ରୋନିକ୍ ସାମଗ୍ରୀ ମାନେ ଯାହା ଅଳ୍ପ ଦିନରେ ଭାଙ୍ଗି ଯାଉଥିବ । ଭାରତୀୟ ଇଲେକ୍‌ଟ୍ରି ବଲ୍‌ବ ମାନେ ଯାହା ତତ୍‌କ୍ଷଣାତ୍ ଫ୍ୟୁଜ ହୋଇଯାଉଥିବ ଏବଂ ଭାରତୀୟ ତିଆରି ଖାଦ୍ୟ ସାମଗ୍ରୀ ଏବଂ ପାଇଖାନା ଦ୍ରବ୍ୟ ମାନେ ଯାହା ନୀଚମାନର ହୋଇଥିବ ।

ଏହା ଥିଲା ମେଡ୍ ଇନ୍ ଇଣ୍ଡିଆ ସାମଗ୍ରୀ ପ୍ରତି ଭାରତୀୟଙ୍କ ଧାରଣା । ଅନ୍ୟ ପକ୍ଷରେ ବିଦେଶୀ ଦ୍ରବ୍ୟକୁ କିନ୍ତୁ ଭିନ୍ନ ଦୃଷ୍ଟିରେ ଦେଖାଯାଉଥିଲା । ବିଦେଶୀ ଏବଂ ଇମ୍ପୋର୍ଟେଡ୍ ମାନେ ଯାହା ଭାରତୀୟ ଦ୍ରବ୍ୟ ଠାରୁ ଉତ୍କୃଷ୍ଟ ହୋଇଥିବ, ବହୁଦିନ ଯାଉଥିବ ଏବଂ ଦେଖିବାକୁ ଆକର୍ଷଣୀୟ ହୋଇଥିବ । ବିଦେଶୀ ଦ୍ରବ୍ୟର ମହିମା ଗାନ ନେଇ ଏପରି ଏକ ମିଥ୍ ସୃଷ୍ଟି ହୋଇଯାଇଥିଲା ଭାରତ ସାରା ।

ନବେ ଦଶକର ଆରମ୍ଭ ପର୍ଯ୍ୟନ୍ତ ମଧ୍ୟ ବିଦେଶୀ ସାମଗ୍ରୀ ନେଇ ଏଇ ଧାରଣା ଏଠି ବେଶ୍ ବଳବତ୍ତର ଥିଲା । ମେଡ୍ ଇନ୍ ଜାପାନ ଜିନିଷ କିଣିବାରେ ଲୋକେ ଆଗ୍ରହୀ ହେଉଥିଲେ । ସବୁ ବିଦେଶୀ ତିଆରି ଜିନିଷକୁ ଆଦର କରାଯାଉଥିଲା ।

ଜଣେ କିଏ ବିଦେଶ ଯାଉଥିଲେ ବିଦେଶରୁ କେଉଁ ଉପଭୋକ୍ତା ସାମଗ୍ରୀ କିଣି ଆଣିବ ତାର ଏକ ଲମ୍ବା ତାଲିକା ସେ ସାଙ୍ଗରେ ନେଇ ଯାଉଥିଲେ ଏବଂ ବିଦେଶରୁ କୌଣସି ଆତ୍ମୀୟ ଦେଶକୁ ଫେରିବାକୁ ଥିଲେ ତାଙ୍କୁ ମଧ୍ୟ କେଉଁ କେଉଁ ବିଦେଶୀ ଜିନିଷ ଆଣିବାକୁ ହେବ ତାର ଏକ ତାଲିକା ଦିଆଯାଉଥିଲା । ଏ ତାଲିକା ଭିତରେ ଥିଲା ହାତଘଣ୍ଟା, କଲମ, ଟେପ ରେକର୍ଡର, ସ୍କୁଲ ବ୍ୟାଗ, ସାର୍ଟପ୍ୟାଣ୍ଟ, ମଦ, ଚକ୍ଲେଟ ଏବଂ ଏପରି ଅନେକ ଜିନିଷ । ଏପରି ବି ହେଉଥିଲା ଭାରତରେ ରହୁଥିବା ବିଦେଶୀଟିଏ ଯଦି ନିଜ ଦେଶକୁ ଚାଲିଯାଉଥିଲା ସେ ନିଲାମ କରୁଥିବା ତାର ବ୍ୟବହୃତ ଜିନିଷକୁ ବି ଏଠି ଅଧିକା ଦାମ୍‌ରେ ଲୋକେ କିଣୁଥିଲେ । ମୁମ୍ବାଇ ଏବଂ ଦିଲ୍ଲୀର ଅନେକ ମହିଳା ତ ବିଦେଶୀଙ୍କ ବ୍ୟବହୃତ ତଥା ପିନ୍ଧା ଅନ୍ତଃବସ୍ତ୍ର କିଣିବାକୁ ବି ପଛାଉନଥିଲେ ।

ବିଦେଶୀ ଜିନିଷ କିଣିବା ଥିଲା ଏକ ଷ୍ଟାଟସର ପ୍ରତୀକ । ନିଜକୁ ସୋସିଆଲାଇଟ କହୁଥିବା ବ୍ୟକ୍ତିମାନେ ଏହା କରୁଥିଲେ । ବିଦେଶୀ ରେଫ୍ରିଜେରେଟର୍, ୱାସିଂ ମେସିନ୍, ମୋଟର ଗାଡି କିଣିଦେଲେ ସାମାଜିକ ପ୍ରତିଷ୍ଠା ବଢିଗଲା ପରି ଧାରଣାଟିଏ ସୃଷ୍ଟି ହୋଇଯାଇଥିଲା ।

ସ୍ୱାଧୀନ ଭାରତର ପ୍ରଥମାବସ୍ଥାରେ ବାସ୍ତବରେ ଭାରତୀୟଙ୍କ ଏହି ବିଦେଶୀ ଜିନିଷ ପ୍ରିତି ଭାରତୀୟ ଅର୍ଥନୀତି ପ୍ରତି ଏକ ଚ୍ୟାଲେଞ୍ଜ ବି ଆଣିଥିଲା । ବିଦେଶୀ ଜିନିଷର ଚୋରାବେପାର ହେଉଥିଲା । ଚୋରା ବେପାରୀଙ୍କ ସଂଖ୍ୟା ବଢୁଥିଲା । ବିଦେଶୀ ଜିନିଷର ଦାମ ବଢୁଥିଲା । ଭାରତୀୟ ମୁଦ୍ରା ବାହାରକୁ ଚାଲିଯାଉଥିଲା ଏବଂ

ଦେଶୀ ଜିନିଷ ପ୍ରତି ଚାହିଦା କମ୍ ଥିବାରୁ ଉତ୍ତମ ଜିନିଷ ତିଆରି ନିମନ୍ତେ ଆବଶ୍ୟକୀୟ ଅର୍ଥ ଖଟାଯାଉନଥିଲା ।

ମେଡ୍ ଇନ୍ ଇଣ୍ଡିଆ ପଦାର୍ଥର ବୃଦ୍ଧି ଏବଂ ସୁରକ୍ଷା ପାଇଁ ଭାରତର ବହିଃ-ବାଣିଜ୍ୟ ନୀତି ବି ସମୟାନୁଯାୟୀ ପରିବର୍ତ୍ତିତ ହୋଇଥିଲା । ଅନେକ ବିଦେଶୀ ଜିନିଷର ଆମଦାନୀକୁ ଏଠି ନିଷେଧ କରାଯାଉଥିଲା କିମ୍ବା ବିଦେଶୀ ଜିନିଷ ଉପରେ ଅଧିକ ଟିକସ ବସାଇ ଭାରତରେ ଏହାକୁ ଅଧିକ ଦାମିକା କରିଦିଆଯାଉଥିଲା । ଏ ସବୁର ଉଦ୍ଦେଶ୍ୟ ଥିଲା, ଭାରତୀୟ ପ୍ରସ୍ତୁତି ସାମଗ୍ରୀର ଉତ୍ପାଦନ ଏବଂ ବିକ୍ରିରେ ଅଭିବୃଦ୍ଧି ଆଣିବା ।

ସ୍ୱାଭାବିକ ପ୍ରଶ୍ନ ଆସିବଣି – ସେତେବେଳେ ଭାରତୀୟ ଦ୍ରବ୍ୟ ନିକୃଷ୍ଟ ଥିଲା କାହିଁକି ? ଏହି ପ୍ରଶ୍ନର ଉତ୍ତରରେ କାରଣ କିଛି ଅଛି । ଏହି କାରଣକୁ ଆର୍ଥିକ, ପରିଚାଳନାଗତ ଏବଂ ମାନବସମ୍ବଳ ଶ୍ରେଣୀଭୁକ୍ତ କରି ଏ ଆଲୋଚନାର ପରିସରକୁ ଏଠି ଅଣାଯାଇପାରେ ।

ଭାରତୀୟ କମ୍ପାନୀ ବା ଶିଳ୍ପପତିମାନେ ଜିନିଷ ତିଆରି କରିବାରେ ସେତେ ଅର୍ଥ ଖଟାଉନଥିଲେ । ଅର୍ଥ ବିନିଯୋଗ ପାଇଁ ତାଙ୍କ ପାଖରେ ଆବଶ୍ୟକ ସମ୍ବଳ ବି ନଥିଲା । ୧୯୯୦ ଦଶକ ପର୍ଯ୍ୟନ୍ତ ଭାରତରେ ଧନୀମାନଙ୍କ ସଂଖ୍ୟା କମ୍ ଥିଲା । ଉପନିବେଶବାଦର ଦାସତ୍ୱ ବାସ୍ତବରେ ଏ ଦେଶରେ ଧନୀ ସୃଷ୍ଟି ପାଇଁ ଅନୁମତି ଦେଇନଥିଲା ।

ଉତ୍କର୍ଷ ସମ୍ପର୍କରେ କୁହାଯାଏ, ଗୋଟିଏ ଜିନିଷ ଉତ୍ତମ ଏବଂ ଉତ୍କୃଷ୍ଟ ହେବାକୁ ହେଲେ ଏହା ଗୁଣାତ୍ମକ ଦୃଷ୍ଟିରୁ ଉନ୍ନତ ହେବା ଦରକାର ଏବଂ ଯିଏ ଯେତେ ଉତ୍କୃଷ୍ଟ ସିଏ ସେତେ ଦାମିକା ହେବା ସ୍ୱାଭାବିକ । ବ୍ୟବସାୟୀ ଇଂରେଜମାନେ ଏହାକୁ ତାଙ୍କ ଭାଷାରେ କହନ୍ତି – 'ଏକ୍ସଲେନସ୍ ଇଜ୍ ଏକ୍ସପେନସିଭ୍' ।

ଭାରତୀୟ ତିଆରି ଜିନିଷ ଦାମିକା ନଥିଲ । ତେଣୁ କ୍ୱାଲିଟି ଦୃଷ୍ଟିରୁ ଏହା କମ୍ ଥିଲା । ଶସ୍ତାରେ ଜିନିଷ ତିଆରି କରିବାର ଭାରତୀୟ ଶିଳ୍ପପତିଙ୍କ ପାଇଁ ଏକ ବାଧ୍ୟତା ବି ଥିଲା । ସେ ଥିଲା ଭାରତୀୟ ଦାରିଦ୍ର୍ୟ । ଜିନିଷ କିଣିବାକୁ ଭାରତୀୟଙ୍କ ପାଖରେ ଉଚ୍ଚ କ୍ରୟ ଶକ୍ତି ନଥିଲା ।

ଭଲ ଜିନିଷଟିଏ ପ୍ରସ୍ତୁତ ନିମନ୍ତେ ମଧ୍ୟ ଭାରତରେ ଦକ୍ଷ ପରିଚାଳକ ଏବଂ

ଯୋଗ୍ୟ ସୁପରଭାଇଜର ନଥିଲେ । ଉଚ୍ଚଶିକ୍ଷା ପାଇଁ ଯୋଗ୍ୟ ହୋଇଥିବା ଟେକ୍‌ନୋକ୍ରାଟମାନେ ଅଧିକ ରୋଜଗାର ଆଶାରେ ବିଦେଶ ଚାଲିଯାଉଥିଲେ । ମେଡ୍ ଇନ୍ ଇଣ୍ଡିଆ ଛାପ ଉପରେ ଆଉ ଏକ ଅଲିଖିତ ଛାପ ଲଗାଯାଇପାରେ – ସବ୍ ଷ୍ଟାଣ୍ଡାର୍ଡ । ଭାରତୀୟ ଅର୍ଥନୀତିରେ ଉଦାରୀକରଣ ପରେ ସ୍ପଷ୍ଟ କହିଲେ, ୧୯୯୦ ଦଶକରୁ ମେଡ୍ ଇନ୍ ଇଣ୍ଡିଆ ଦ୍ରବ୍ୟର ଗୁଣାତ୍ମକ ସ୍ଥିତି ଏଠି ଉଜ୍ଜଳ । ମାନବ ସମ୍ବଳ ଏବେ ସମୃଦ୍ଧ ଏବଂ ବିଦେଶୀଙ୍କ ସହ ପ୍ରତିଯୋଗିତା ନିମନ୍ତେ ମାନସିକତା ବି ଏଠି ଦୃଢ ।

ମେଡ୍ ଇନ୍ ଜାପାନ ଏବଂ ମେଡ୍ ଇନ୍ ଚୀନ୍ ଦ୍ରବ୍ୟ ସହ ଭାରତ ପ୍ରସ୍ତୁତ ସାମଗ୍ରୀ ଏବେ ପ୍ରତିଯୋଗିତାରେ ଅଛି । ଖାଲି ପ୍ରତିଯୋଗିତା କରୁନାହିଁ, ଏଥିରେ ଭାରତୀୟ ସାମଗ୍ରୀ ବି ଜିତୁଛି । ବଜାରରେ ଭାରତୀୟ ଜିନିଷ ଏବେ ବିଶ୍ୱାସଯୋଗ୍ୟ ଜିନିଷ ! ନକଲି ଏବଂ ଦ୍ୱିତୀୟ ଶ୍ରେଣୀର କଳଙ୍କ ଆଉ ଏହା ଦେହରେ ନାହିଁ ।

ଆଜିକୁ ତିରିଶ ବର୍ଷ ତଳେ ଅମୂଲ ଡାଏରୀ ଯେତେବେଳେ ଦୁଗ୍ଧଜାତ ଦ୍ରବ୍ୟ ପ୍ରସ୍ତୁତ କଲା ସେତେବେଳେ ଏହା ସନ୍ଦେହରେ ଥିଲା । ଅମୂଲ ଦୁଗ୍ଧ ଗୁଣ୍ଡ ଏବଂ ବଟର୍ କିଣିବାକୁ ସେତେ ଆଗ୍ରହ ଦେଖାଯାଉନଥିଲା । ବର୍ତ୍ତମାନ ଭାରତର ସବୁ ଶ୍ରେଣୀର ଲୋକଙ୍କ ପାଇଁ ଅମୂଲ ପ୍ରସ୍ତୁତ ସାମଗ୍ରୀ ବେଶ୍ ଉତ୍କୃଷ୍ଟ ସାମଗ୍ରୀ । ପୃଥିବୀର ଖୋଲା ବଜାରରେ ବି ଏହା ପ୍ରତିଯୋଗିତା କରୁଛି । ତିଷ୍ଠି ରହିଛି । ସରକାରୀ ରକ୍ଷଣାବେକ୍ଷଣ ଏବଂ ପୃଷ୍ଠପୋଷକତାର ଯେ ଆଉ ଆବଶ୍ୟକତା ନାହିଁ, ଅମୂଲ ଏହା ପ୍ରମାଣ କରିଦେଇଛି ।

ଭାରତୀୟ ବ୍ରାଣ୍ଡ ନିରମା, ଭିଡିଓକନ୍ ଏବଂ ମାରୁତି ଏବେ ଉଚ୍ଚ କ୍ୱାଲିଟିର ଜିନିଷ ତିଆରି କରୁଛନ୍ତି । ବାବା ରାମଦେବଙ୍କ ପତଞ୍ଜଳି ପ୍ରସ୍ତୁତ ବିଭିନ୍ନ ଉପଭୋକ୍ତା ସାମଗ୍ରୀ ଏବେ ବହୁତ ଉଚ୍ଚମାନର । ଆୟୁର୍ବେଦ ଔଷଧରୁ ଆରମ୍ଭ କରି ଅଟା, ଡାଲି, ତେଲ ସାବୁନ ପ୍ରାୟ ସମସ୍ତ ଉପଭୋକ୍ତା ଜିନିଷ ସଂପ୍ରତି ପତଞ୍ଜଳି ଦ୍ୱାରା ପ୍ରସ୍ତୁତ । ସ୍ୱଦେଶୀ ଜିନିଷ ପ୍ରସ୍ତୁତକରି ପତଞ୍ଜଳିର ବେପାର ବର୍ତ୍ତମାନ ଏକ ରିପୋର୍ଟ ଅନୁସାରେ ଷୋଳ ହଜାର କୋଟି ଟଙ୍କା । ହିନ୍ଦୁସ୍ତାନ ଲିଭର, ପ୍ରୋକ୍ଟର ଆଣ୍ଡ ଗ୍ୟାମ୍ବଲ୍ ଏବଂ ଫିଲିପସର ଚାହିଦା ସେତେ ଆଉ ନାହିଁ । ବିଦେଶୀ ତିଆରି ଜିନିଷ କିଣିବା ପାଇଁ ଦୋକାନ ଆଗରେ ଆଉ ଭିଡ ଜମୁନି । ଜିନିଷର ସ୍ମଗଲିଙ୍ଗ ଆଉ ହେଉନି ।

ଭାରତୀୟମାନେ ନିଜ ସଞ୍ଚୟକୁ ଡଲାରରେ ରଖିବାକୁ ଚାହୁନାହାନ୍ତି । ସଞ୍ଚୟ ଏବେ ଭାରତୀୟ 'ରୁପି'ରେ ହେଲାଣି ।

ହଁ, ଏ ପରିବର୍ତ୍ତନ କେବଳ ଭାରତୀୟ ସାମଗ୍ରୀ ପ୍ରସ୍ତୁତ କରିବାରୁ ଦେଖାଯାଇନାହିଁ । ଭାରତୀୟ ସେବା ବା ସର୍ଭିସ୍‌ରେ ବି ଗୁଣାତ୍ମକ ମାନ ବଢ଼ିଛି ।

ଏଇ ଯେମିତି ଭାରତୀୟ ବ୍ୟାଙ୍କ ସେକ୍ଟର, ଏୟାର ସର୍ଭିସ୍, ଇନ୍ସ୍ୟୁରାନ୍ସ ଏବଂ ହୋଟେଲ ତଥା ରେଷ୍ଟୋରାଁ କ୍ଷେତ୍ର । ଏଠାରେ ସେବା ଆଉ ପୂର୍ବ ପରି ନାହିଁ । ଏବେ ଏହା ଖୁବ ଉନ୍ନତ । କମ୍ପ୍ୟୁଟରୀକରଣ, ଉପଭୋକ୍ତାଙ୍କ ପ୍ରତି ଯତ୍ନ ଏ ସେବା ପ୍ରତି ଆକର୍ଷଣ ଆଣିଲାଣି । ଭାରତୀୟ ରେଳ ନିଜର ଲାଭ ସହ ଗୁଣାତ୍ମକ ସେବା ମେଡ୍ ଇନ୍ ଇଣ୍ଡିଆର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କଲାଣି ।

ସଂକ୍ଷିପ୍ତରେ କହିଲେ, ଭାରତ ତିଆରି ଉପଭୋକ୍ତା ସାମଗ୍ରୀ ଆଉ ଦ୍ୱିତୀୟ ଶ୍ରେଣୀର ନୁହେଁ । ବିଶ୍ୱ ବଜାରରେ ଉତ୍କର୍ଷତା ଜାହିର କରିବାରେ ଏହା ସଂପ୍ରତି ଆଗରେ ଅଛି । ଭାରତୀୟ ଶାଢ଼ୀ, ଜରିଲଗା ପୋଷାକ, ବିନ୍ଦି, ହେନା କବାବ୍, ବଲିଉଡ ନାଚ, ଭାରତୀୟ ଯୋଗ, ଆୟୁର୍ବେଦ ଆଦି ବର୍ତ୍ତମାନ ବିଦେଶୀମାନଙ୍କର ପ୍ରଥମ ପସନ୍ଦ । ମେଡ୍ ଇନ୍ ଇଣ୍ଡିଆ ସଂପ୍ରତି ଆନ୍ତର୍ଜାତିକ ବ୍ରାଣ୍ଡର ।

ଭାରତୀୟ ଉପଭୋକ୍ତା ସାମଗ୍ରୀ ଏବଂ ସେବା ଏବେ ତ ବେଶ ଅସଲି ।



# ମିଡିଆ ବିଚାର

**ନ୍ୟା**ୟ ବିଚାରର ଇଏ ସଂପ୍ରତି ନୂଆ ଧାରା -ମିଡିଆ ବିଚାର - ମିଡିଆ ଟ୍ରାଏଲ୍ । କୌଣସି ଏକ ଅପରାଧୀୟ ଘଟଣା ଏଠି ଘଟିଗଲେ ପ୍ରଥମେ ଏହାର ବିଚାର ଗଣମାଧ୍ୟମରେ ହେଉଛି । ଟିଭି ଚ୍ୟାନେଲ ମାନଙ୍କରେ ବିତର୍କ ହେଉଛି । ସମ୍ବାଦପତ୍ରମାନଙ୍କରେ ବହୁ ସଂଖ୍ୟାରେ ଲେଖା ପ୍ରକାଶିତ ହେଉଛି । ଅପରାଧରେ ଅଭିଯୁକ୍ତ ବ୍ୟକ୍ତି ଦୋଷୀ ନା ନିର୍ଦ୍ଦୋଷ ଏଥିନେଇ ଏସ୍ଏମ୍ଏସ୍ ମଗାଯାଉଛି ଏବଂ ଏହାର ଭୋଟିଂ ପ୍ରତିଶତ ହାର କେତେ ଏହା ଦେଶବାସୀଙ୍କୁ ଜଣାଇ ଦିଆଯାଉଛି । ଗଣମାଧ୍ୟମ ବା ପ୍ରେସ୍ ଭାରତୀୟ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ । ଏହାର କାମ ହେଲା ଦାୟିତ୍ୱପୂର୍ଣ୍ଣ ଭାବେ ଖବର ପରିବେଷଣ କରିବା ; ସୂଚନା ଦେବା ଏବଂ ସଚେତନତା ସୃଷ୍ଟି କରିବା ।

ସଚେତନତା ସୃଷ୍ଟି କରିବା ଅର୍ଥ ନୁହେଁ ନ୍ୟାୟ ପ୍ରଦାନ କରିବା ଏବଂ କୌଣସି ଏକ ବିବାଦୀୟ ଘଟଣାରେ ନିଜର ଜଜ୍‌ମେଣ୍ଟ ଶୁଣାଇବା । ରାୟଦେବା କାମ ହେଉଛି ନ୍ୟାୟପାଳିକାଙ୍କର । ଭାରତରେ ଏଥିପାଇଁ ଦୃଢ଼ ବିଚାର ବିଭାଗ ଅଛି । ପ୍ରତିଷ୍ଠିତ ନ୍ୟାୟିକ ପଦ୍ଧତିଟିଏ ଅଛି । ମେଧାସମ୍ପନ୍ନ ବିଚାରପତି ଅଛନ୍ତି ଏବଂ ବିଦ୍ୱାନ୍ ଅଧିବକ୍ତା ଅଛନ୍ତି । ବିଚାରାଳୟର କାମ ଯଦି ମିଡିଆ ହାତକୁ ଦିଆଯାଏ, ଭାରତରେ ନ୍ୟାୟ ପଦ୍ଧତି ଦୁର୍ବଳ ହୋଇଯିବ । ଗଣତନ୍ତ୍ରକୁ ଧରିରଖିଥିବା ସ୍ତମ୍ଭମାନେ ଦୋହଲି ଯିବେ । ଏଇ ଯେମିତି ଯେସିକା ଲାଲ ମର୍ଡର କେଶ୍ କଥା । ଏହି ମର୍ଡର କେଶରେ ଅଭିଯୁକ୍ତ ମନୁ ଶର୍ମାର ବିଚାର ଏବଂ ଦଣ୍ଡ ବିଧାନ କେତେ ଠିକ୍ ଏଥିନେଇ ଟିଭି ଚାନେଲମାନେ ସର୍ବେକ୍ଷଣ କରିଥିଲେ ।

କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଏଠି ଘଟିଗଲେ ଗଣମାଧ୍ୟମର ଭୂମିକା ବିରୁଦ୍ଧରେ କିଛି ଅଭିଯୋଗ ଆସେ । ଅଭିଯୋଗ ହେଲା - ମିଡିଆ ଏଠି ଜଣକୁ ଅଭିଯୁକ୍ତ କରୁଛି, ରାୟ ଶୁଣାଉଛି ଏବଂ ରାୟରେ ଦିଆଯାଉଥିବା ଶାସ୍ତିକୁ କାର୍ଯ୍ୟକାରୀ

କରୁଛି । ମିଡିଆ ଏକାଧାରରେ ଜଣେ ଅଭିଯୋଗକାରୀ, ଅନୁସନ୍ଧାନକାରୀ, ବିଚାରପତି ଏବଂ ଘାତକ ଭୂମିକାରେ ଅଛି । ମିଡିଆ ଆକ୍ୟୁଜର, ଇନ୍‌ଭେଷ୍ଟିଗେଟର, ଜଜ୍, ଏକ୍‌ଜିକ୍ୟୁସନର୍ ।

ହଁ, ପାଠକ ବନ୍ଧୁ ! ଏହା ସତ, ମିଡିଆର କାର୍ଯ୍ୟ ବ୍ୟାପକ ହୋଇଯାଇଛି ଏବଂ କୌଣସି ଏକ ଅପରାଧୀୟ ଘଟଣାର ରାୟ କ'ଣ ହେବ, ମିଡିଆ ଏହା ଠିକ୍ କରୁଛି ।

ମିଡିଆର ଏତାଦୃଶ ଭୂମିକାରେ କିଛି କାରଣ ବି ଅଛି । କୌଣସି ଏକ କେଶ୍‌ରେ ନିମ୍ନ ଅଦାଲତ ଦେଇଥିବା ରାୟ ବିରୁଦ୍ଧରେ ଅପିଲ ସବୁ ଉଚ୍ଚ ନ୍ୟାୟାଳୟ ମାନଙ୍କରେ ବର୍ଷ ବର୍ଷ ଧରି ପଡିରହୁଛି । ଭାରତରେ ନ୍ୟାୟ ପ୍ରଦାନ ସାଧାରଣତଃ ଏମିତି ବିଳମ୍ବିତ ହେଉଛି ।

ଏକ ପରିସଂଖ୍ୟାନ ଅନୁଯାୟୀ ଭାରତ ସାରା ନ୍ୟାୟାଳୟମାନଙ୍କରେ ପଡିରହିଥିବା ସିଭିଲ କେଶ୍ ହେଉଛି ପ୍ରାୟ ଦୁଇ କୋଟି ଏବଂ ଅପରାଧ ସମ୍ପର୍କିତ ମକଦ୍ଦମା ହେଉଛି ପ୍ରାୟ ଏକ କୋଟି । ଦକ୍ଷ ବିଚାରପତି ଏବଂ ପ୍ରତିଭାସମ୍ପନ୍ନ ଓକିଲ ଏଠି ଥିଲେ ବି ଅତ୍ୟଧିକ କେଶ୍ ସଂଖ୍ୟା ସମ୍ଭବତଃ ନ୍ୟାୟ ପ୍ରଦାନକୁ ଏପରି ବିଳମ୍ବିତ କରୁଛି ।

ନ୍ୟାୟାଳୟର କାମ ଏବେ ମଧ୍ୟ ସେଇ ପୁରୁଣା ଆଇନ ବହି ଏବଂ ପ୍ରୋସେଡ୍ୟୁୟରରେ ଚାଲେ । ଭାରତୀୟ ପିଙ୍ଗଳ କୋଡ ବା ଆଇପିସି ଆଜକୁ ପ୍ରାୟ ଦେଢ ଶହ ବର୍ଷରୁ ଊର୍ଦ୍ଧ୍ୱ ବର୍ଷ ତଳେ ପ୍ରଚଳନ ହୋଇଥିଲା, ଆଇପିସି ୧୮୬୦ । ଏହି ପିଙ୍ଗଳ କୋର୍ଡ ଅନୁସାରେ ଭାରତ ବର୍ଷରେ ଅପରାଧୀମାନଙ୍କ ବିଚାର ହୁଏ । ଇଣ୍ଡିଆନ ଏଭିଡେନ୍ସ ଆକ୍ଟ ହେଉଛି ୧୮୭୪ ମସିହାର । ଶତାଧିକ ବର୍ଷର ଏହା ଏକ ପୁରୁଣା ବହି । ଏଇ ସମୟ ଭିତରେ ଭାରତର ସାମାଜିକ, ରାଜନୈତିକ ଏବଂ ଆର୍ଥିକ ଅବସ୍ଥା ବଦଳି ଯାଇଛି । ଲୋକ ଚରିତ୍ରରେ ପରିବର୍ତ୍ତନ ଆସିଛି । ସାକ୍ଷ୍ୟ ପ୍ରଦାନରେ ଥିବା ପାରମ୍ପରିକ ନିଷ୍ଠା ତେଣୁ ବଦଳିଯିବା ସ୍ୱାଭାବିକ ।

ସିଭିଲ୍ କେଶ୍ ପାଇଁ ସିଭିଲ୍ ପ୍ରୋସେଡ୍ୟୁୟର କୋଡ ହୋଇଥିଲା ୧୯୦୮ ମସିହାରେ । କ୍ରିମିନାଲ ପ୍ରୋସେଡ୍ୟୁୟର କୋଡ ପ୍ରସ୍ତୁତ ଏବଂ ପ୍ରୟୋଗ ଏଠି ହେଲାଣି ଊଣେଇଶ ସତୁରି ଦଶକର ମଧ୍ୟ ଭାଗରୁ । ଅବଶ୍ୟ ଏଇ ସବୁ ଆଇନ ବହି ଏବଂ

ପଦ୍ଧତିରେ ଏଥି ମଧ୍ୟରେ କିଛି ସଂଶୋଧନ ହୋଇଛି । ଏହା କିନ୍ତୁ ବଢୁଛି । ଜନସଂଖ୍ୟା ଏବଂ ତଜ୍ଜନିତ ସୃଷ୍ଟ ଫୌଜଦାରୀ ତଥା ଦେଓ୍ୱାନୀ କେଶ୍‌ରେ ଠିକ୍ ସମୟରେ ବିଚାର ନିମନ୍ତେ ସକ୍ଷମ ହୋଇପାରୁନାହିଁ । ମକଦ୍ଦମା ରାୟ ତେଣୁ ବିଳମ୍ବିତ ହେଉଛି ଏବଂ ଏଇ ମକଦ୍ଦମାନଙ୍କରେ ସଂପୃକ୍ତ ବ୍ୟକ୍ତିମାନଙ୍କର କ୍ରୋଧ ତଥା ଅସନ୍ତୋଷ ବଢୁଛି । ସୁତରାଂ ସଠିକ ତଥା ତୁରନ୍ତ ବିଚାର ପାଇଁ ନ୍ୟାୟିକ ବ୍ୟବସ୍ଥାରେ ସଂସ୍କାର ଆସିବା ଜରୁରୀ । ମିଡିଆ ଟ୍ରାଏଲ କିନ୍ତୁ ଏହାର ସମାଧାନ ନୁହେଁ ।

ଜେସିକା ଲାଲ ହତ୍ୟା କେଶ୍‌ରେ ମୁଖ୍ୟ ଅଭିଯୁକ୍ତ ମନୁ ଶର୍ମାଙ୍କ ପାଇଁ ଭାରତର ବିଶିଷ୍ଟ ଫୌଜଦାରୀ ଓକିଲ ରାମ ଜେଠମାଲାନୀ ମକଦ୍ଦମା ଲଢୁଥିଲେ । ଏଥିନେଇ ମିଡିଆରେ ବିଚାର ଆରମ୍ଭ ହୋଇଯାଇଥିଲା । ଏସ୍‌ଏମ୍‌ଏସ୍ ମଗାଗଲା । ବିତର୍କ ଚାଲିଲା । ମନୁ ଶର୍ମା ଦୋଷୀ କି ନା ଏବଂ ଜେଠମାଲାନୀ ତାଙ୍କର ଓକିଲ ହେବା ଉଚିତ କି ନା, ଏପରି ପ୍ରଶ୍ନ ଥାଇ ସର୍ବେକ୍ଷଣ ହେଲା । ଏସବୁ ଯେ ନ୍ୟାୟିକ ପ୍ରକ୍ରିୟାକୁ ପ୍ରଭାବିତ କରୁଥିଲା, ଏପରି ପ୍ରଶ୍ନ ଆସିଥିଲା ।

ସ୍ୱାଭାବିକ ପ୍ରଶ୍ନ ଆସୁଛି - ବିଚାର ଯଦି ବ୍ୟାଲଟ ପେପରରେ ହେବ, ନ୍ୟାୟପାଳିକାର ଆବଶ୍ୟକତା ତେବେ କ'ଣ ?

ଜେସିକା ଲାଲ୍ ଏକ ମଡେଲ ଥିଲେ । ଦିଲ୍ଲୀରେ ଏକ ସମ୍ଭ୍ରାନ୍ତ, ରେଷ୍ଟୋରାଁରେ ସେ ପରିଚାରିକା ଭାବେ କାମ କରୁଥିଲେ । ୧୯୯୯ ମସିହାରେ ମଦ ପରସିବାକୁ ଆଳ କରି ଦିଲ୍ଲୀର ଏକ ଜଣାଶୁଣା ରାଜନେତାଙ୍କ ପୁଅ ମନୁ ଶର୍ମା ତାଙ୍କୁ ହତ୍ୟା କରିଥିଲେ ବୋଲି ଅଭିଯୋଗ ଆସିଥିଲା ।

ଏ କେଶ୍ ଥିଲା ବେଶ୍ ସମ୍ବେଦନଶୀଳ । କାରଣ ଏଥିରେ ସଂପୃକ୍ତ ଥିବା ଉଭୟ ସମ୍ଭ୍ରାନ୍ତ ଶ୍ରେଣୀୟ ଥିଲେ ।

ଜେଠମାଲାନୀ ମନୁ ଶର୍ମାଙ୍କ ସପକ୍ଷ ଓକିଲ । ଅତୀତରେ ଅନେକ ବିବାଦୀୟ ମକଦ୍ଦମାରେ ଜେଠମାଲାନୀ ଓକିଲ ହୋଇସାରିଛନ୍ତି । ଇନ୍ଦିରା ଗାନ୍ଧୀ ହତ୍ୟା, ବୋଫର୍ସ ଦୁର୍ନୀତିରେ ଅଭିଯୁକ୍ତ ଥିବା ହିନ୍ଦୁଜା ବ୍ରଦର୍ସ ଏବଂ ସଂସଦ ଆକ୍ରମଣରେ ଅଭିଯୁକ୍ତ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଏସ୍.ଆର୍.ଗିଲାନୀଙ୍କ ତରଫରୁ ସେ ଲଢ଼ିଛନ୍ତି । ସବୁ କେଶ୍‌ରେ ଯେ ଜେଠମାଲାନୀ ଜିତିଛନ୍ତି, ଏହା ସତ ନୁହେଁ ।

ଭାରତର ନ୍ୟାୟିକ ବ୍ୟବସ୍ଥା ହେଲା, ଅଭିଯୁକ୍ତ ଅପରାଧୀ ଯେପର୍ଯ୍ୟନ୍ତ

ନ୍ୟାୟାଳୟରେ ଦୋଷୀ ସାବ୍ୟସ୍ତ ହୋଇନାହିଁ ସେପର୍ଯ୍ୟନ୍ତ ସେ ଦୋଷୀ ନୁହେଁ । ସେ କେବଳ ଏକ ଅଭିଯୁକ୍ତ ଆସାମୀ । ନିଜ ସପକ୍ଷରେ କହିବାର ତା'ର ଅଧିକାର ଅଛି । ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବା ପାଇଁ ସେ ସମସ୍ତ ସୁଯୋଗ ପାଇବାକୁ ହକ୍‌ଦାର !

ଇଏ ହେଉଛି ପ୍ରାକୃତିକ ନ୍ୟାୟ । ପୃଥିବୀ ସାରା ଏହି ପ୍ରକ୍ରିୟାର ଅପରାଧୀର ନ୍ୟାୟାଳୟରେ ବିଚାର ହୁଏ ।

ଓକିଲମାନଙ୍କର ମଧ୍ୟ ଏକ ବ୍ୟାବହାରିକ ନିୟମ ଅଛି । ଏହା ତାଙ୍କର କୋଡ୍ ଅଫ୍ କଣ୍ଡକ୍ଟ ।

ଏଇ କୋଡ୍ ହେଲା - ଓକିଲଙ୍କର ଆଇନ ପ୍ରତି ଆନୁଗତ୍ୟ ଥିବ; ନିଜ ମହକିଲ ସପକ୍ଷନେଇ ଲଢିବା ବେଳେ ଅପରାଧୀ ପ୍ରତି ତାଙ୍କର ବ୍ୟକ୍ତିଗତ ଧାରଣାକୁ ସେ ପାଶୋରି ଦେବେ ଏବଂ ବିନା ସାକ୍ଷୀରେ ନିଜ ମହକିଲ ଯେପରି ଦଣ୍ଡ ନପାଏ ସେଥିପ୍ରତି ଦୃଷ୍ଟି ଦେବେ । ଆଇନ କୋଡ୍ ଏହାକୁ ବ୍ୟାବସାୟିକ କର୍ତ୍ତବ୍ୟ କୁହେ - ପ୍ରଫେସନାଲିଜିମ୍ ।

ମନୁ ଶର୍ମାଙ୍କ ସପକ୍ଷରେ ଜେଠାମାଲାନୀ ଓକିଲ ହେବା ତେଣୁ ଅଯୌକ୍ତିକ ନୁହେଁ । ଆଇନତଃ ଏହା ବି ସିଦ୍ଧ ।

କିଛି ଟିଭି ଚାନେଲର ଆଂକର ଖୋଲାଖୋଲି ସଂପ୍ରତି କହିଲେଣି, କେବଳ ପ୍ରଶ୍ନ କରିବା ଏବଂ ସୂଚନା ଦେବା କେବଳ ଗଣମାଧ୍ୟମର କାମ ନୁହେଁ । ନ୍ୟାୟ ଦେବା ମଧ୍ୟ ଗଣମାଧ୍ୟମର କାମ । ଭାରତୀୟ ଗଣତନ୍ତ୍ରର ଏହା ଏକ ନୂଆ ଧାରା ।

ସତ କଥା ହେଲା ଏଇ ଧାରାରେ ବିପଦ ଅଛି । ବିପଦ ହେଉଛି, ଗଣମାଧ୍ୟମ ବିଚାରାଳୟ ନୁହେଁ । ବିଚାର ପାଇଁ ଏହାର କୌଣସି ସଂାବିଧାନିକ କ୍ଷମତା ନାହିଁ । ସୁତାରାଂ ନ୍ୟାୟାଳୟ କାମ ଗଣମାଧ୍ୟମ ନ କରୁ । ଗଣମାଧ୍ୟମର କାମ ହେଉଛି ସମ୍ବାଦ ଦେବା; ରାୟ ଦେବା ନୁହେଁ ।

ବର୍ତ୍ତମାନର ମିଡିଆ ବିଚାର ଏକ କୁତ୍ସିତ ତଥା ବିପଦପୂର୍ଣ୍ଣ ମୋଡଟିଏ ନେବା ପୂର୍ବରୁ ଏହା ସଂଯତ ହେବା ଉଚିତ ।



# ମିଡିଆ ହାଇପ୍

**କୌ**ଣସି ଏକ ଖବରକୁ ଅତିରଞ୍ଜିତ କରି ଗଣମାଧ୍ୟମରେ ଉପସ୍ଥାପିତ କରିବାକୁ କୁହାଯାଏ ହାଇପ୍ । ଉଭୟ ପ୍ରିଣ୍ଟ୍ ଏବଂ ଇଲେକ୍ଟ୍ରୋନିକ୍ ମିଡିଆର ଏହା ଏବେ ନୂଆ ଧାରା - ମିଡିଆ ହାଇପ୍ ।

ଗଣମାଧ୍ୟମରେ ଅନେକ ଖବର ପ୍ରକାଶିତ ହୁଏ । ଅନେକ ଅଭିମତ ଏବଂ ବିଶ୍ଲେଷଣର ଅବତାରଣା କରାଯାଏ । ଅଥଚ ଏଇ ସବୁ ଖବର ଆଉ ବିଶ୍ଲେଷଣରେ ସାଧାରଣ ଲୋକେ ଅନେକ ସମୟରେ ସତ୍ୟ ଖୋଜି ପାଇବାରେ ଅସୁବିଧାରେ ପଡନ୍ତି । କାରଣ ହେଲା, ଯେଉଁମାନେ ସତ କହିବା କଥା, ସେମାନେ ପ୍ରକୃତରେ ସତ କହନ୍ତି ନାହିଁ । ଏଇ ଗୋଷ୍ଠୀଙ୍କ ଭିତରେ ଅଛନ୍ତି ରାଜନେତାମାନେ । ଏମାନେ ଖବର ତିଆରି କରନ୍ତି ଏବଂ ଏହାର ପ୍ରଚାର କରନ୍ତି ।

ବିଡମ୍ବନା ସେ ରାଜନେତାମାନେ ସେତେ ଆଉ ବିଶ୍ୱସନୀୟ ନୁହନ୍ତି । ନେତାଙ୍କ ପ୍ରତି ସାଧାରଣ ଜନତାର ଭରସା ଆଉ ନାହିଁ । ରାଜନେତାଙ୍କ ସମ୍ପର୍କରେ ଏପରି ମନ୍ତବ୍ୟ ଏ ଲେଖକର ନିଜସ୍ୱ ମନ୍ତବ୍ୟ ନୁହେଁ । ଏଇ କିଛି ଦିନ ତଳେ ବିବିସି ୱାର୍ଲଡ ସର୍ଭିସ ତରଫରୁ ଏକ ଗ୍ୟାଲପ୍ ସର୍ଭେ କରାଯାଇଥିଲା । ଏହି ସର୍ବେକ୍ଷଣର ସିଦ୍ଧାନ୍ତ ଥିଲା, ନେତାମାନେ ଏବେ କମ୍ ବିଶ୍ୱାସଯୋଗ୍ୟ । କ୍ରେଡିବିଲିଟି ଏମାନଙ୍କର ଆଉ ନାହିଁ । ସୁତରାଂ ପ୍ରତ୍ୟୟ ନଥିବା ନେତାମାନେ ଯେଉଁ ଖବର ଏବଂ ମନ୍ତବ୍ୟ ଦିଅନ୍ତି ସେହି ଖବରକୁ ସେତେ ଆଉ ବିଶ୍ୱାସକୁ ନିଆଯାଉନି । ସ୍ତର ସ୍ତର ହୋଇ ଆସୁଥିବା ସମ୍ବାଦ ତଥା ଅଭିମତ ନେଇ ସାଧାରଣ ଲୋକ ଦ୍ୱନ୍ଦ୍ୱଗ୍ରସ୍ତ ହେବା କିଛି ଆଶ୍ଚର୍ଯ୍ୟ ମଧ୍ୟ ନୁହେଁ ।

ସମ୍ବାଦର ସତ୍ୟତା ନେଇ ସାଧାରଣରେ ଏହି ଦ୍ୱନ୍ଦ୍ୱ ମିଡିଆ ଦ୍ୱାରା ବି ଆହୁରି ଜଟିଳ ହୋଇଯାଏ । ଅଭିଯୋଗ ହୁଏ,ଭାରତୀୟ ଗଣମାଧ୍ୟମ ଅନେକ ଅଭିମତ ତଥା ବିଶ୍ଲେଷଣକୁ ଅତିରଞ୍ଜିତ କରେ । ବହୁ ସମୟରେ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦକୁ ଏହା ବଙ୍କେଇ କହେ । କେତେବେଳେ କେମିତି ବି ଅସତ୍ୟ ଉପସ୍ଥାପିତ ହୁଏ ।

ଖବରର ଏଇ ଅଯଥା ଉପସ୍ଥାପନର ତିନୋଟି ଅବସ୍ଥା ଅଛି – ଅତିରଞ୍ଜନ, ଘୂର୍ଣ୍ଣନ ଏବଂ ମିଥ୍ୟା । ଇଂରାଜୀରେ ଏହାକୁ ହାଇପ୍, ସ୍ପିନ, ଏବଂ ଲାଇ କୁହାଯାଏ ।

ବାସ୍ତବରେ ଏଇଟା ହିଁ ମିଡିଆ ପରିଚାଳନା ନେଇ ଏକ ହିଟଲରୀୟ ସଂସ୍କୃତି । ୧୯୩୦ ଦଶକରେ ନାଜିବାଦୀ ହିଟଲରଙ୍କ ଚିନ୍ତାକୁ ତାଙ୍କର ପ୍ରଚାର ମନ୍ତ୍ରୀ ଡକ୍ଟର ଗୋଏବଲ୍ସ ପ୍ରଚାର କରୁଥିଲେ । ଏହା ଥିଲା ହିଟଲରୀୟ ତତ୍ତ୍ୱ- ହିଟଲର୍ ଡିକ୍ଟମ୍ । ଏହି ତତ୍ତ୍ୱର ସାରାଂଶ ହେଲା, ମିଛକୁ ବାରମ୍ବାର କହିଲେ ମିଛ ସତ ହୋଇଥାଏ ।

ହଁ, ପାଠକ ବନ୍ଧୁ! ସତ କଥା ହେଲା ଘଟଣା ଏବେ ଯେପରି ଘଟୁଛି ସେ ସବୁ ଘଟଣା ଠିକ୍ ସେମିତି ପରିବେଶିତ ହେଉନାହିଁ । ଖବରରେ ରଙ୍ଗ ବୋଳି କାହାଣୀ କରାଯାଉଛି । ଏଥିରେ ତେଣୁ ହାଇପ୍ ରହୁଛି, ସ୍ପିନ୍ ରହୁଛି ଏବଂ ମିଛ ମଧ ରହୁଛି । ଏହାର ଏକମାତ୍ର କାରଣ ହେଉଛି, ରାଜନୈତିକ ଜଗତରେ ଛଳନା ବା ଗିମିକ୍ ବାସ୍ତବତାର ବିକଳ୍ପ ହୋଇଗଲାଣି ଏବଂ ବଡ କଥା ହେଉଛି, ଏଇ ଛଳନାକୁ ଗଣମାଧମ ଅତିରଞ୍ଜିତ କରୁଛି ।

ଦୁଇ ହଜାର ଚାରି ମସିହା ଲୋକସଭା ନିର୍ବାଚନ ବେଳେ ପ୍ରିୟଙ୍କା ଗାନ୍ଧୀ ଥରେ ଉତ୍ତର ପ୍ରଦେଶର ଆମେଥି ବୁଲିଯାଇଥିଲେ । ସେଠାରେ ସେ ଲୋକଙ୍କୁ ଦର୍ଶନ ଦେଇ ଫେରିବା ବାଟରେ ଆମେଥି ବଜାରରୁ ନିଜ ପାଇଁ ମୁଣ୍ଡକଣ୍ଟା କିଣିଲେ । ପୁଅ ପାଇଁ ସୁସୁରି ଏବଂ ତାଙ୍କ ବାପା ରାଜୀବ ଗାନ୍ଧୀ ସେତେବେଳେ ନିଜ ନିର୍ବାଚନମଣ୍ଡଳୀ ଯାଆନ୍ତି, ଆମେଥି ବଜାରର ଯେଉଁ ଦୋକାନରେ ବସି ସେ ଜିଲାବି ଖାଆନ୍ତି ସେଇ ଦୋକାନରୁ ପ୍ରିୟଙ୍କା ନିଜ ଘର ପାଇଁ କିଛି ଲଡୁ କିଣିଲେ ।

ସେତେବେଳେ ପ୍ରିୟଂକାଙ୍କ ପ୍ରଶଂସକମାନେ କହି ବୁଲିଲେ, ନେହରୁ-ଗାନ୍ଧୀ ପରିବାରର ପ୍ରାଚୁର୍ଯ୍ୟ ଭିତରେ ସେ ବଢିଥିଲେ ବି ପ୍ରିୟଂକାଙ୍କ ସ୍ୱଭାବ ଜଣେ ସାଧାରଣ ଭାରତୀୟ ମହିଳାଙ୍କ ପରି ସରଳ । ପ୍ରିୟଙ୍କା ବି ଗାଁ ହାଟରୁ ନିଜ ପାଇଁ ମୁଣ୍ଡକଣ୍ଟା ଏବଂ ଟିକି ପୁଅ ପାଇଁ ସୁସୁରି କିଣି ପାରନ୍ତି । ଯଦିଓ ଏହା ଥିଲା ଏକ ରାଜନୈତିକ ଭେଲିକି, ତଥାପି ମିଡିଆରେ ଏଥିନେଇ ପ୍ରଚାର ଏବଂ ପ୍ରସାରର ବ୍ୟାପକତା ଥିଲା ବେଶି । ମିଡିଆ ଯେ ପ୍ରିୟଙ୍କାଙ୍କୁ ନେଇ ଏଇ ସାମାନ୍ୟ ଘଟଣାକୁ ହାଇପ୍ କରୁଥିଲା ଏହା ବୁଝିବା ବୋଧେ କଷ୍ଟ ହୋଇନଥିଲା ।

ଅନେକ ସମୟରେ ଅତିରଞ୍ଜନର ଏ ଅତ୍ୟଧିକ ମାତ୍ରା କୌଣସି ଖବରର ଉଦ୍ଦେଶ୍ୟକୁ ପ୍ରଭାବିତ କରେ । ଘଟଣା ସତ ହେଲେବି ଏହା ତେଣୁ ଅବିଶ୍ୱାସ ଲାଗେ । ଏହାର ଉଦାହାରଣ ହେଉଛି, ବାଜପେୟୀଙ୍କ ଏନ୍‌ଡିଏ ସରକାରଙ୍କ ଦ୍ୱାରା ପ୍ରଚାରିତ ଇଣ୍ଡିଆ ସାଇନିଂ । ପ୍ରଚାରର ଅତିରଞ୍ଜନ ହିଁ ବାଜପେୟୀଙ୍କ ଜାତୀୟ ଗଣତାନ୍ତ୍ରିକ

ମେଣ୍ଟ ସରକାରର ପ୍ରକୃତ ସଫଳତାକୁ କେବଳ ଏକ ଅର୍ଥହୀନ ବାକ୍‌ଚାତୁରୀର ନାଁ ଦେଇ ଦେଇଥିଲା । ଏନ୍‌ଡିଏ ତେଣୁ ୨୦୦୪ ନିର୍ବାଚନରେ ହାରିଗଲା ଏବଂ ସନ୍ଦେଶ ଥିଲା ପ୍ରଚାରର ଅତ୍ୟଧିକ ଉପସ୍ଥାପନା ଏମିତି ହତାଶା ଆଣେ ।

ଖବରକୁ ଅତିରଞ୍ଜିତ କରି ଉପସ୍ଥାପିତ କଲାବେଳେ ଅନେକ ସମୟରେ ସମ୍ବାଦକୁ ବକ୍ର କରି ପରିବେଶିତ କରାଯାଏ । ଘଟଣା ଯେପରି ସଂଗଠିତ ହୁଏ ଏହାକୁ ଖବରରେ ଠିକ୍ ସେମିତି କୁହାଯାଏନି । ବର୍ହି ଉଦ୍ଦେଶ୍ୟ ରଖି ଏହାକୁ ବଙ୍କେଇ ଦିଆଯାଏ । ଏହି ପ୍ରକ୍ରିୟା ନାଁ ଏବେ ସ୍ପିନ୍ । ସମ୍ବାଦ ଉପସ୍ଥାପନାରେ ଏଇ ସ୍ପିନ୍ ସଂପ୍ରତି ବଡ ସ୍ଥାନଟିଏ ନେଇଯାଇଛି । ମିଡିଆ ହାଇପ୍‌ରେ ସାମୂହିକ କ୍ଷତି ହୋଇନଥିଲେ ବି ଅଯଥା ଉପସ୍ଥାପନାରେ ଯେଉଁ ସ୍ପିନ୍ କରାଯାଏ ସେଥିରେ ସାମଗ୍ରିକଭାବେ କ୍ଷତିର ପରିମାଣ ବେଶି ଥାଏ ।

ଏଇ ଧରନ୍ତୁ ଇରାକ୍ କଥା । ଇରାକ୍ ଆକ୍ରମଣ ପୂର୍ବରୁ ଡୋସିଏରଟିଏ ପ୍ରକାଶିତ ହୋଇଥିଲା । ସେଥିରେ ଉଲ୍ଲେଖ ଥିଲା, ସଦାମ୍ ହୁସେନ୍‌ଙ୍କ ପାଖରେ ଗଣବିଧ୍ୱଂସୀ ମାରଣାସ୍ତ୍ର ଅଛି । ଅଣୁ ଅସ୍ତ୍ର ଏବଂ ଜୈବିକ ଅସ୍ତ୍ର ଏଥିରେ ସାମିଲ । ମାତ୍ର ୪୫ ମିନିଟ୍‌ରେ ଏଇ ମାରଣା ଅସ୍ତ୍ରସବୁ ପ୍ରୟୋଗ କରିପାରିବାର କ୍ଷମତା ବାଗ୍ଦାଦ୍ ହାସଲ କରିସାରିଛି । ଇରାକ୍‌ରେ ଗଚ୍ଛିତ ଏ ଅସ୍ତ୍ର ପୃଥିବୀ ପାଇଁ ବିପଦ ବୋଲି ଡୋସିଏର୍‌ରେ ଉପସ୍ଥାପିତ ହୋଇଥିଲା ।

ବାସ୍ତବରେ ଏହା ଥିଲା ଏକ ସ୍ପିନ୍ ଖବର । ଇରାକ୍ ଯୁଦ୍ଧ ପରେ ଏହା ପ୍ରମାଣିତ ହୋଇଗଲା ଯେ ସଦାମଙ୍କ ସମ୍ପର୍କରେ ଯେଉଁ ସବୁ କଥା ଯୁକ୍ତରାଷ୍ଟ୍ର ଆମେରିକାର ପ୍ରାୟୋଜିତ ରିପୋର୍ଟରେ ସ୍ଥାନ ପାଇଥିଲା ତାହା ସବୁ ମିଛ ଥିଲା ।

ସୁତରାଂ ମିଡିଆ ହାଇପ୍ ଏବଂ ସ୍ପିନ୍ ଖବର ପରସ୍ପର ଅନୁପୁରକ । ଉଭୟରେ ଯେ କିଛି ମିଥ୍ୟା ଲୁଚି ରହିଯାଏ ଏହା ସତ । ଖବରର ଅଯଥା ଉପସ୍ଥାପନ ହେଲେ ଏଥିରେ ମିଛ ମିଶିଯିବା ସ୍ୱାଭାବିକ ।

ହାଇପ୍ ଏବଂ ସ୍ପିନ୍ ଏସବୁ ହେଉଛି ଶାସ୍ତ୍ରୀୟ ମିଡିଆ ଆଦର୍ଶର ପରିପନ୍ଥୀ । ଏହା ସଠିକ୍ ଗଣମାଧ୍ୟମର ଚରିତ୍ର ନୁହେଁ । ଯଦିଓ ମିଡିଆ ପରିଚାଳନା ପାଇଁ ଏକ ନିର୍ଦ୍ଦିଷ୍ଟ ନୀତି ଆଦର୍ଶ ଅଛି ଏବଂ କିଛି ଏଥିକ୍ସ ଅଛି ଏହାକୁ ଗଣମାଧ୍ୟମ ମାନେନି ।

ଏଇ ଏଥିକ୍ସ କହେ , ସାଧାରଣ ଜନତାର ସ୍ୱାର୍ଥ ଦେଖିବା ମିଡିଆର କାମ । ବିଶ୍ୱାସନୀୟତା ଏହାର ପ୍ରଧାନ ସମ୍ପତ୍ତି । କାରଣ ଗଣମାଧ୍ୟମ ଏକ ପବ୍ଲିକ ଟ୍ରଷ୍ଟ ।

ଗଣତନ୍ତ୍ରର ଏହା ଚତୁର୍ଥ ସ୍ତମ୍ଭ । ଅନ୍ୟ ତିନୋଟି ସ୍ତମ୍ଭ ଯଥା ନ୍ୟାୟପାଳିକା, ବିଧାନପାଳିକା ଏବଂ କାର୍ଯ୍ୟପାଳିକା ପରି ଗଣମାଧ୍ୟମ ମଧ୍ୟ ବେଶ୍ ଦୃଢ ଏବଂ ଶକ୍ତ । ୧୯୯୦ ଦଶକ ଅର୍ଥାତ୍ ଜଗତୀକରଣ ଯୁଗ ଆରମ୍ଭ ହେବା ପର୍ଯ୍ୟନ୍ତ ସମ୍ବାଦପତ୍ର ଥିଲା ଏକ ମିଶନ୍ । ବ୍ୟାବସାୟିକ ଷ୍ଟାଣ୍ଡାର୍ଡ ଏହାର ଉଚ୍ଚ ଥିଲା । ଖବର ଉପସ୍ଥାପନାରେ ନିରପେକ୍ଷତା ଥିଲା । ଆଦର୍ଶଗତ ପ୍ରସଙ୍ଗ ନେଇ ବିଶ୍ଳେଷଣ ହେଉଥିଲା । ଖବର କାଗଜ ପ୍ରକାଶନରେ ଲାଭର ଉଦ୍ଦେଶ୍ୟ ନଥିଲା ।

ଅଥଚ ମିଡିଆର ଏଇ ଆଦର୍ଶକୁ ଜଗତୀକରଣ ଏବେ ଧ୍ୱଂସ କରିଦେଇଛି । ମିଡିଆ ଏକ ଶିଳ୍ପ ହୋଇଯାଇଛି ।ଏଥିନେଇ ଏଥିକ୍ସ ଏବଂ ମାର୍କେଟ୍ ଭିତରେ ଦ୍ୱନ୍ଦ୍ୱ ଆରମ୍ଭ ହୋଇଯାଇଛି । ପ୍ରସାରଣର ଏବଂ ଦଶର୍କ ସଂଖ୍ୟା ବୃଦ୍ଧି ପାଇଁ ବର୍ତ୍ତମାନ ପ୍ରତିଯୋଗିତା ବେଶି । ବିଜ୍ଞାପନ ବଜାରରେ ବଡ ଭାଗ ପାଇଁ ଖବରକାଗଜ ତଥା ଟିଭି ଚାନେଲମାନଙ୍କରେ କେମିତି ଏକ ଅଣନିଃଶ୍ୱାସୀ ଦୌଡ । ସେଇଥିପାଇଁ ଅଯଥା ଚାଞ୍ଚଲ୍ୟକର ଖବର ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ବ୍ୟକ୍ତିଗତ ଜୀବନ ନେଇ ଟିପ୍ପଣୀ ଆସୁଛି । ଗୁଜବ ତଥା ଲଘୁ ଘଟଣାକୁ ବିଶ୍ୱାସକୁ ନିଆଯାଉଛି । କିଛି ସାମାନ୍ୟ କଥାରେ ବି ମିଡିଆରେ ବିଚାର ଚାଲୁଛି । ସାମାଜିକ ମୂଲ୍ୟବୋଧରେ ଯେପରି ଅବକ୍ଷୟର ପ୍ରକ୍ରିୟା ଆରମ୍ଭ ହୋଇଯାଇଛି, ପତ୍ରକାରିତାରେ ମଧ୍ୟ ସେମିତି ମୂଲ୍ୟବୋଧଭିତ୍ତିକ ସ୍ଖଳନ ପରିଦୃଷ୍ଟ ହୋଇସାରିଲାଣି । ନଚେତ ବିଜ୍ଞାପନରୁ ଉପାର୍ଜନ ପାଇଁ କିଛି ଖବରକାଗଜ, ପାଠକଙ୍କ ପାଇଁ ଉଦ୍ଦିଷ୍ଟ ଥିବା ନିଜର ସମ୍ମୁଖ ପୃଷ୍ଠା ବା ଫ୍ରଣ୍ଟ୍ ପେଜକୁ ବିକ୍ରି କରିଦିଅନ୍ତେ ନାହିଁ । ପ୍ରଥମ ପୃଷ୍ଠା ତ କାଗଜର ଆତ୍ମା । ଆତ୍ମାକୁ କେବେ ବିକ୍ରି କରାଯାଏନା । ହାଇପ, ସ୍ପିନ୍, ମିଥ୍ୟା ପରିବେଷଣ ବାସ୍ତବରେ ମାର୍କେଟ ଏବଂ ଏଥିକସ୍ ମଧ୍ୟରେ ଦେଖାଦେଇଥିବା ବିରୋଧାଭାସରୁ ହିଁ ସୃଷ୍ଟି ।

ଏ ଆଲୋଚନା ଏଇଠି ଶେଷ କରିବାକୁ ଇଚ୍ଛା । ଯଦିଓ କାଗଜ ତଥା ଟିଭି ଚାନେଲର ସ୍ଥିତି ପାଇଁ ବଞ୍ଚିବା ଯୋଗ୍ୟ ବ୍ୟବସାୟକୁ ଉପେକ୍ଷା କରାଯାଇ ପାରେନା, ତଥାପି ଏଠି ଏବେ ମଧ୍ୟ କିଛି ଖବରକାଗଜ ଟିଭି ଚାନେଲ ଅଛନ୍ତି, ଯେଉଁମାନେ ଲାଭ ପାଇଁ ମିଡିଆ ନୈତିକତାର ଅପଚୟ କରି ନାହାନ୍ତି । ଖବରର ଗୁଣ ତଥା ଷ୍ଟାଣ୍ଡାର୍ଡ ସହ ବ୍ୟବସାୟ ପାଇଁ ସାଲିସ୍ ବି କରି ନାହାନ୍ତି ।



# ମୃତ୍ୟୁ ଦଣ୍ଡ

ମୃତ୍ୟୁ ପୁଣି, ଦଣ୍ଡ କ'ଣ ? ମୃତ୍ୟୁ ତ ସବୁ ଯନ୍ତ୍ରଣାର ଅବସାନ ପାଇଁ ଏକ ସହଜ ମାଧ୍ୟମ । ସବୁ ନୈତିକ ବିଚ୍ୟୁତିର ଏହା ଏକ ଲମ୍ବା ପୂର୍ଣ୍ଣଚ୍ଛେଦ ଯେଉଁ ପୂର୍ଣ୍ଣଚ୍ଛେଦରେ ଦୁଃଖ ଆଉ ଆନନ୍ଦ ପାଇଁ ସ୍ଥାନ ବି ନଥାଏ । ମୃତ୍ୟୁକୁ ତେଣୁ ଦଣ୍ଡ ବା ଶାସ୍ତିର ନାଁ ଦେବା ଠିକ୍ ହେଉନି । ମାନବିକ ଅଧିକାରର ପ୍ରବକ୍ତାମାନେ ମୃତ୍ୟୁଦଣ୍ଡ କଥା ଶୁଣିଲେ ଏପରି ପ୍ରଶ୍ନ କରନ୍ତି ଏବଂ ଉତ୍ତର ରଖନ୍ତି ।

୧୯୯୩ ମସିହା ମୁମ୍ବାଇ ସିରିୟାଲ ବୋମା ବିସ୍ଫୋରଣରେ ଦୋଷୀ ସାବ୍ୟସ୍ତ ହୋଇଥିବା ଆସାମୀ ୟାକୁବ୍ ମେମନକୁ ଫାଶୀଦଣ୍ଡ ପରେ ଭାରତର ପ୍ରାୟ ସମସ୍ତ ବୁଦ୍ଧିଜୀବୀ ମୃତ୍ୟୁଦଣ୍ଡ ସପକ୍ଷ ଏବଂ ବିପକ୍ଷରେ କେମିତି ପ୍ରାୟ ଅଧାଅଧା ହୋଇ ବାଂଟି ହୋଇଗଲେ । ଏପରି ବି ହୋଇଥିଲା, ମେମନ୍‌ର ମୃତ୍ୟୁଦଣ୍ଡକୁ କୋହଳ କରିଦେବାକୁ ଭାରତର କିଛି ବିଦ୍ୱାନ୍ ବି ମାନ୍ୟବର ରାଷ୍ଟ୍ରପତି ଶ୍ରୀଯୁକ୍ତ ପ୍ରଣବ ମୁଖାର୍ଜୀଙ୍କୁ ଅନୁରୋଧ କରି ଦେଇଥିଲେ । ମେମନର ଦୋଷ କୁଆଡ଼େ ସେତେ ବିରଳ ନଥିଲା ବୋଲି ସେମାନଙ୍କର ଦାବି ଥିଲା ।

ଯାହା ଜଣାଯାଏ, ୟାକୁବ୍ ମେମନ୍‌ର ଅପରାଧ କିନ୍ତୁ ଥିଲା ବେଶ୍ ଜଘନ୍ୟ । ୧୯୯୨ ମସିହା ଡ଼ିସେମ୍ବର ମାସରେ ବାବ୍ରି ମସଜିଦ୍ ଭଙ୍ଗା ଘଟଣା ପରେ ମେମନ୍ ନିଜ ବଡ଼ ଭାଇ ଟାଇଗର ମେମନ୍ ଏବଂ ଅଣ୍ଡର ୱାଲର୍ଡ଼ ଡ଼ନ୍ ଦାଉଦ ଇବ୍ରାହିମ୍ ସହ ଷଡ଼ଯନ୍ତ୍ର କରି ୧୯୯୩ରେ ମୁମ୍ବାଇରେ ବୋମା ବିସ୍ଫୋରଣ କରାଇଥିଲା । ମେମନ୍ ଥିଲା ଏ ବିସ୍ଫୋରଣର ମାଷ୍ଟର ମାଇଣ୍ଡ । ଏଇ ଘଟଣାରେ ୨୫୭ ଜଣଙ୍କର ମୃତ୍ୟୁ ହୋଇଥିଲା । ମୃତକଙ୍କ ପରିବାର ଦୀର୍ଘ ୨୨ ବର୍ଷ ଧରି ନ୍ୟାୟ ପାଇଁ ବି ଅପେକ୍ଷାରେ ଥିଲେ । ମେମନ୍ ମଧ୍ୟ ନିଜର ଜୀବନରକ୍ଷା ପାଇଁ ସମସ୍ତ ନ୍ୟାୟିକ ବ୍ୟବସ୍ଥାର ସୁଯୋଗ ନେଇଥିଲା । ଶେଷରେ ମେମନ୍‌ର ସମସ୍ତ ଆବେଦନ ଖାରଜ ହୋଇଯିବା ପରେ ୨୦୧୫ ମସିହା ଜୁଲାଇ ମାସ ୩୦ ତାରିଖର ସୂର୍ଯ୍ୟୋଦୟ ପୂର୍ବରୁ ତାକୁ ନାଗପୁର ଜେଲରେ ଫାଶୀ ଦିଆଗଲା ।

ୟାକୁବ୍ ମେମନ୍‌ର ଫାଶୀ ଦଣ୍ଡ ଏଇ ନିକଟ ଅତୀତରେ ବେଶ୍ ବିବଦମାନ ହୋଇ ପଡ଼ିଥିଲା । ଅଭିଯୋଗ ହୁଏ, ମେମନ୍‌ର ଦଣ୍ଡ ବିଧାନରେ ମାନବିକ ଅଧିକାରର

ପ୍ରଶ୍ନ ଯେତିକି ନାହିଁ ତା'ଠାରୁ ବେଶି ରାଜନୀତି ରହିଛି। କାରଣ ଏଠି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଭୋଟ ବ୍ୟାଙ୍କକୁ ହିଁ ସେ ପ୍ରତିନିଧିତ୍ୱ କରେ।

୨୦୦୪ ମସିହାରୁ ୨୦୧୫ ମସିହା ପର୍ଯ୍ୟନ୍ତ ଏଇ ଏଗାର ବର୍ଷ ଭିତରେ ଭାରତରେ ୟାକୁବ୍ ସମେତ ମାତ୍ର ଚରିଜଣଙ୍କୁ ଫାଶୀରେ ଝୁଲାଇ ମୃତ୍ୟୁ ଦିଆଯାଇଛି। ଏକ ନାବାଳିକା ଝିଅକୁ ଧର୍ଷଣ ତଥା ହତ୍ୟା ଘଟଣାରେ କଲିକତାର ଧନଞ୍ଜୟ ଚଟାର୍ଜୀଙ୍କୁ ୨୦୦୪ ମସିହାରେ ଫାଶୀ ଦିଆଯାଇଥିଲା। ପରେ ୨୦୧୩ ମସିହାରେ ସଂସଦ ଭବନ ଉପରେ ଆକ୍ରମଣ ପାଇଁ ଅଫଜଲ ଗୁରୁ ଏବଂ ବମ୍ବେ ଆକ୍ରମଣ ପାଇଁ କଶବଙ୍କୁ ଫାଶୀ ଦେଇ ହତ୍ୟା କରାଯାଇଥିଲା। ଏବେ ମେମନ୍ ଫାଶୀଦଣ୍ଡ ପାଇଲା। ପ୍ରକାଶ ଥାଉକି, ଏଇ ଏଗାର ବର୍ଷ ଭିତରେ ଏଠି ସମୁଦାୟ ତେର ଶହ ତିନି ଜଣଙ୍କୁ ଭାରତୀୟ ନ୍ୟାୟାଳୟ ଫାଶୀଦଣ୍ଡ ପାଇଁ ରାୟ ଦେଇଛନ୍ତି।

ଭାରତୀୟ ପିଙ୍ଗଳ କୋର୍ଡ଼ର ୩୦୨ ଦଫାରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା ରହିଛି। ଏଇ କୋଡ଼୍ ୧୮୬୦ ମସିହାରେ ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା। ଭାରତର ମାନ୍ୟବର ସୁପ୍ରିମକୋର୍ଟ ତାଙ୍କ ରାୟ ଆଳରେ ସୂଚାଇ ଦେଇଛନ୍ତି, ମୃତ୍ୟୁଦଣ୍ଡ କେବଳ ବିରଳରୁ ଅତି ବିରଳ ଘଟଣାରେ ଦିଆଯାଇପାରିବ। ମାନ୍ୟବର କୋର୍ଟଙ୍କ ଭାଷାରେ ଏହା 'ରେୟାରେଷ୍ଟ ଅଫ୍ ରେୟାର କେଶ୍'। କୋର୍ଟଙ୍କ ଏହି ସିଦ୍ଧାନ୍ତିକ ତତ୍ତ୍ୱ ବଚନ ସିଂ କେଶ୍‌ରେ ଦିଆଯାଇଛି।

ନ୍ୟାୟିକ ବ୍ୟବସ୍ଥାରେ ଫାଶୀଦଣ୍ଡ ବ୍ୟବସ୍ଥାର ଉଚ୍ଛେଦ ଏବଂ ସ୍ଥାୟିତ୍ୱ ମଧ୍ୟ ଏକ ଆନ୍ତର୍ଜାତିକ ଘଟଣା। ଜାତିସଂଘର ସାଧାରଣ ଆସେମ୍ବ୍ଲିରେ ମୃତ୍ୟୁଦଣ୍ଡକୁ ଉଠାଇ ଦେବାକୁ ଏକ ପ୍ରସ୍ତାବ ପାଶ୍ ହୋଇ ସାରିଛି। ଏଥିନେଇ ଯେଉଁ ଭୋଟ ହୋଇଥିଲା, ଏଥିରେ ୧୦୪ଟି ରାଷ୍ଟ୍ର ମୃତ୍ୟୁଦଣ୍ଡର ଉଚ୍ଛେଦ ନେଇ ଭୋଟ ଦେଇଥିବା ବେଳେ ମାତ୍ର ୫୪ଟି ରାଷ୍ଟ୍ର ମୃତ୍ୟୁଦଣ୍ଡ ରହୁ ବୋଲି ଭୋଟ ଦେଇଥିଲେ। ଭାରତ ସମେତ ଭାରତୀୟ ଉପମହାଦେଶର ସମସ୍ତ ରାଷ୍ଟ୍ର ମୃତ୍ୟୁଦଣ୍ଡକୁ ସମର୍ଥନ କରି ଜାତିସଂଘରେ ମତ ରଖିଛନ୍ତି। କିନ୍ତୁ ଆଶ୍ଚର୍ଯ୍ୟ ଯେ, ଏଲ୍.ଟି.ଟି.ଇ. ଆତଙ୍କବାଦରେ ପିଡ଼ୀତ ହୋଇଥିବା ଶ୍ରୀଲଙ୍କା, ମାଓବାଦରେ ଅଣନିଃଶ୍ୱାସୀ ହୋଇପଡ଼ିଥିବା ନେପାଳ ମୃତ୍ୟୁଦଣ୍ଡକୁ ଉଠାଇ ଦେବାକୁ ଭୋଟ ଦେଇଥିଲେ ଏବଂ ତାଙ୍କ ସହ ସମସ୍ୱରରେ ଭାଗୀଦାର ଥିଲେ ଇସ୍ରାଏଲ, କାନାଡ଼ା, ୟୁରୋପ ରାଷ୍ଟ୍ରସମୂହ, ଇଂଲଣ୍ଡ ତଥା ଅଷ୍ଟ୍ରେଲିଆ। ପୃଥିବୀର ଏଇ ୧୦୪ଟି ରାଷ୍ଟ୍ର ଜାତିସଂଘର ସାଧାରଣ ସଭାରେ ଭୋଟ ଦେଇ ସ୍ଥିର କରିନେଲେ-

ମୃତ୍ୟୁଦଣ୍ଡ ପରି କଠୋର ଦଣ୍ଡ ବ୍ୟବସ୍ଥା ଆମ ଅପରାଧୀୟ ନ୍ୟାୟିକ ବ୍ୟବସ୍ଥାରେ ଆଉ ଦରକାର ନାହିଁ। କାରଣ ମୃତ୍ୟୁ ଏକ ଦଣ୍ଡ ନୁହେଁ। ଏହା କେବଳ ଏକ ପ୍ରତିଶୋଧ ହୋଇପାରେ। ଜାତିସଂଘର ଏଇ ନିଷ୍ପତ୍ତି ପରେ ମୃତ୍ୟୁଦଣ୍ଡକୁ ଜବରଦସ୍ତ ସମର୍ଥନ କରୁଥିବା ଆମେରିକାର ଏକ ପ୍ରାଦେଶିକ ସରକାର, 'ନିୟୁ ଜର୍ସି' ମୃତ୍ୟୁଦଣ୍ଡର ଉଚ୍ଛେଦ କରି ଏକ ଇତିହାସ ରଚି ସାରିଲାଣି।

ଫାଶୀ କଥା ଉଠିଲା ବେଳେ ଦୁଇଟି ପରସ୍ପର ବିରୋଧୀ ମତ ଆସେ। ମୃତ୍ୟୁଦଣ୍ଡକୁ ବିରୁଦ୍ଧ କରୁଥିବା କିଛି ବିଦ୍ୱାନ କହନ୍ତି - ମୃତ୍ୟୁଦଣ୍ଡ ଏକ ପୁରୁଣା ଦଣ୍ଡ ପଦ୍ଧତି। ପୁରାତନ ସମାଜରେ ଏହାକୁ ଏକ ଶାସ୍ତି ଭାବେ ତତ୍‌କାଳୀନ ରାଷ୍ଟ୍ରଶକ୍ତି ଗ୍ରହଣ କରି ନେଇଥିଲେ। ଏପରି ଗ୍ରହଣ କରିବାର ତିନୋଟି କାରଣ ଥିଲା। ପ୍ରଥମ କାରଣ ହେଲା, ପୁରାତନ ତଥା ପ୍ରାକ୍ ରାଜନୈତିକ ସମାଜରେ ମାନବିକ ମୂଲ୍ୟବୋଧ ନେଇ ସେମିତି କିଛି ପ୍ରଗତିଶୀଳ ଚିନ୍ତା ନଥିଲା କିମ୍ବା ଜୀବନ ପ୍ରତି ସେତେ ବେଶି ଅନୁରକ୍ତି ନଥିଲା। ଦ୍ୱିତୀୟ କାରଣ ହେଲା, କୌଣସି ହତ୍ୟାର ପ୍ରତିଶୋଧ ପାଇଁ ରାଷ୍ଟ୍ର ପାଇଁ ହତ୍ୟା ହିଁ ଏକ ନୀତି ଥିଲା ଏବଂ ତୃତୀୟ କାରଣ ହେଲା, ତତ୍‌କାଳୀନ ରାଷ୍ଟ୍ରଶକ୍ତି ନିଜର ସାର୍ବଭୌମତ୍ୱ ଅଧିକାରର ପ୍ରଦର୍ଶନ ପାଇଁ ମୃତ୍ୟୁଦଣ୍ଡକୁ ତା'ର ଏକ ଅସ୍ତ୍ର ବୋଲି କହୁଥିଲା।

ବର୍ତ୍ତମାନର ଏଇ ଆଧୁନିକ ସଭ୍ୟ 'ନେସନ ଷ୍ଟେଟ୍' ଅତୀତର ସେଇ ପୁରୁଣା ସାମନ୍ତବାଦୀ ରାଷ୍ଟ୍ର ବ୍ୟବସ୍ଥା ଠାରୁ ସଂପୂର୍ଣ୍ଣ ପୃଥକ। ଏଠି ଜୀବନକୁ ଏବେ ଏକ ବିରଳ ସୃଷ୍ଟି ବୋଲି ଗଣାଯାଏ। ସୁତରାଂ ମୃତ୍ୟୁଦଣ୍ଡର ଯେ ଏଠି ଆଉ ସ୍ଥାନ ନାହିଁ, ଫାଶୀ ବ୍ୟବସ୍ଥାକୁ ବିରୁଦ୍ଧ କରୁଥିବା ପ୍ରବକ୍ତାମାନେ ଯୁକ୍ତି ଦର୍ଶାନ୍ତି। ସେମାନେ ଏକଥା ବି କହିଦିଅନ୍ତି - ଶାସ୍ତି କେବଳ ଅନୁଶୋଚନା ପାଇଁ ସୁଯୋଗ ଦେଇଥାଏ। ମୃତ୍ୟୁଦଣ୍ଡରେ କିନ୍ତୁ କୌଣସି ଅନୁଶୋଚନା ପାଇଁ ଅବସର ନଥାଏ ଏବଂ ସବୁଠାରୁ ବଡ଼କଥା ହେଲା, ଯଦି ଜଣେ ବିନା ଦୋଷରେ ଫାଶୀଦଣ୍ଡ ପାଇଯାଏ, ଏହା ଆହୁରି ଭୟଙ୍କର ହୋଇଥାଏ। ଏକ ସର୍ବେକ୍ଷଣ ଅନୁସାରେ ବ୍ରିଟେନରେ ପ୍ରାୟ ଏକ ହଜାର ଲୋକ ବିନା ଦୋଷରେ ମୃତ୍ୟୁଦଣ୍ଡ ପାଇ ସାରିଛନ୍ତି। ୨୦୦୯ ମସିହାରେ ଭାରତର ମାନ୍ୟବର ସୁପ୍ରିମ୍‌କୋର୍ଟ ନିଜେ ସ୍ୱୀକାର କରିଛନ୍ତି, ଗତ ପନ୍ଦର ବର୍ଷ ଭିତରେ ଏ ପର୍ଯ୍ୟନ୍ତ ୧୫ ଜଣ ଲୋକଙ୍କୁ ଭୁଲ୍‌ରେ ଫାଶୀ ଦଆଯାଇଛି । ସୁତରାଂ କୋର୍ଟଙ୍କ ଏହି ସ୍ୱୀକାରୋକ୍ତି ସୂଚାଇ ଦିଏ, ମୃତ୍ୟୁଦଣ୍ଡରେ ଦଣ୍ଡିତ ହୋଇ ଏମାନେ ଫାଶୀ ପାଇନଥିଲେ, ଏବେ ବି ଏମାନେ ବଂଚି ରହିଥାଆନ୍ତେ । ଏଥିରେ ଧନଞ୍ଜୟ ଚାଟାର୍ଜୀ ରହିଛି ।

କୋର୍ଟଙ୍କ ରାୟରେ ବେଳେବେଳେ ଭୁଲ୍ ରହିବା ସ୍ୱାଭାବିକ । କାରଣ ବିଚାରପତି ବି ମଣିଷ । ଏମିତି ମଧ୍ୟ ହୁଏ, ଏକା ପ୍ରକାର ଅପରାଧ ପାଇଁ ଜଣେ ଅପରାଧୀ ଫାଶୀ ପାଉଥିଲା ବେଳେ ଅନ୍ୟ ଜଣେ ଆଜୀବନ କାରାଦଣ୍ଡ ପାଇଥାଏ ।

ମୃତ୍ୟୁଦଣ୍ଡକୁ ବିରୋଧ କରିବା ଅବସରରେ ଏହାର ପ୍ରବକ୍ତାମାନେ ଏକ ରାଜନୈତିକ ତତ୍ତ୍ୱର ଉପସ୍ଥାପନା କରନ୍ତି । କହନ୍ତି, ଯେତେବେଳେ ଏଠି ସମାଜ ଏବଂ ରାଷ୍ଟ୍ର ଗଠନ ପାଇଁ ସାମାଜିକ ଚୁକ୍ତି ବା ସୋସିଆଲ କଂଟ୍ରାକ୍ଟ ତିଆରି ହୋଇଥିଲା, ସେତେବେଳେ ବ୍ୟକ୍ତିଟି ତାର ଜୀବନକୁ ରାଷ୍ଟ୍ରକୁ ସମର୍ପିତ କରିନଥିଲା । ସେଥିପାଇଁ ଜୀବନ ଉପରେ ରାଷ୍ଟ୍ରଶକ୍ତିର କିଛି ଅଧିକାର ନାହିଁ । ଫାଶୀ ତେଣୁ ଜରୁରୀ ନୁହେଁ।

ଅନ୍ୟପକ୍ଷରେ ମୃତ୍ୟୁଦଣ୍ଡ ସପକ୍ଷରେ ବି ମତ ଆସେ। ଏହାର ସମର୍ଥନରେ ଥିବା କିଛି ପତ୍ରକାର ତଥା ଆଇନଜୀବୀଙ୍କ ସହ କିଛି ବିଦ୍ୱାନ ଗୋଷ୍ଠୀ ମତ ଦେଇ କହି ଦିଅନ୍ତି, ଜଣେ ଦୁର୍ଦ୍ଧାନ୍ତ ପେଶାଦାର ନିର୍ଦ୍ଦିଷ୍ଟ ହତ୍ୟାକାରୀକୁ ଜେଲରେ ବଞ୍ଚେଇ ରଖିବାର କିଛି ମାନେ ନାହିଁ। ଦୁଷ୍ଟ ବ୍ରଣକୁ ଠିକ୍ ସମୟରେ କାଟି ନଦେଲେ ତାହା ହୁଏତ ପରବର୍ତ୍ତୀ ସମୟରେ କ୍ୟାନସରଟିଏ ହୋଇଯାଇପାରେ। ଆଝାର ମାସୁଦଙ୍କୁ ଜେଲରେ ବାନ୍ଧି ନରଖି ଫାଶୀ ଦେଇ ଦେଇଥିଲେ, କାଠମାଣ୍ଡୁରେ ବିମାନ ଅପହରଣ ଏବଂ ଭାରତୀୟ ସଂସଦ ଉପରେ ଆକ୍ରମଣ ପରି ଘଟଣା ଘଟି ନଥାନ୍ତା।

ମୃତ୍ୟୁଦଣ୍ଡ ସପକ୍ଷ ଏବଂ ବିପକ୍ଷରେ ଯୁକ୍ତି ଏବେ ଅନେକ। ମେମନର ମୃତ୍ୟୁଦଣ୍ଡ ପରେ ଏହା ବେଶି ଆଲୋଚନାର ପ୍ରସଙ୍ଗ ହୋଇପଡ଼ିଥିଲା। ଭାରତର କୌଣସି ରାଜ୍ୟ କିନ୍ତୁ ମୃତ୍ୟୁଦଣ୍ଡ ଉଚ୍ଛେଦର ସପକ୍ଷରେ ନାହାନ୍ତି ଏବଂ ଏ ଦେଶର ଆଇନ ଆୟୋଗ ବି ମୃତ୍ୟୁଦଣ୍ଡକୁ ଉଚ୍ଛେଦ ନକରି ଫାଶୀ ପରିବର୍ତ୍ତେ ଅନ୍ୟ ଏକ ମେଥଡ଼ର ପ୍ରୟୋଗ ପାଇଁ ମତ ଦେଇ ଦେଲେଣି। ଏହା ହୁଏତ ମୃତ୍ୟୁ ପାଇଁ ବିଷ ଇଂଜେକ୍ସନର ବ୍ୟବସ୍ଥା କରା ଯାଇପାରେ।

ଏ ଲେଖକ କିନ୍ତୁ ମୃତ୍ୟୁ ଦଣ୍ଡକୁ ଏକ ଅମାନବୀୟ ଘଟଣା ବୋଲି ଉଲ୍ଲେଖ କରେ। ସାର୍ବଭୌମତ୍ୱର ଏହା ଏକ ମିଛ ମହିମାଗାନ କରୁଛି ବୋଲି ଭାବେ। ଅପରାଧ ଶାସ୍ତ୍ରରୁ ଏପରି ତଥାକଥିତ ପ୍ରଭାବଶାଳୀ ଡ଼ିଟରେଂଟକୁ ଉଚ୍ଛେଦ କରିବା ତେଣୁ ଦରକାର। କାରଣ ହତ୍ୟା ପାଇଁ ହତ୍ୟାର ଶାସ୍ତି ଥିଲେ ବି ପ୍ରତିଦିନ ହତ୍ୟା ଏଠି ସଂଘଠିତ ହୁଏ।



# ନାଗରିକ ସମାଜ

ସଂପ୍ରତି ମାଓବାଦୀଙ୍କ ବଢନ୍ତା ହିଂସା ପରେ ଭାରତୀୟ ନାଗରିକ ସମାଜ ଅର୍ଥାତ୍ ସିଭିଲ ସୋସାଇଟି କେମିତି ଏକ ସଂକଟରେ ପଡିଯାଇଛି । ଏଇ ସମାଜକୁ ଲୋକ ଅବିଶ୍ୱାସ କରୁଛନ୍ତି । ଅଭିଯୋଗ ହେଉଛି, ଏହା ମାଓବାଦୀଙ୍କୁ ସମର୍ଥନ କରୁଛି ଏବଂ ବୌଦ୍ଧିକ ସାହାଯ୍ୟ ଯୋଗାଉଛି । ଅନେକ ତେଣୁ ଭାରତୀୟ ନାଗରିକ ସମାଜକୁ ନିଷେଧ କରିବାକୁ ଦାବି କଲେଣି । ଯେକୌଣସି ଗଣତାନ୍ତ୍ରିକ ରାଷ୍ଟ୍ରରେ ଏଇ ନାଗରିକ ସମାଜ ବେଶ ଏକ ବଳିଷ୍ଠ ଗୋଷ୍ଠୀ । ଏଥିରେ ସାମାଜିକ କର୍ମକର୍ତ୍ତା, ସ୍ୱେଚ୍ଛାସେବୀ ସଂସ୍ଥା, ମାନବିକ ଅଧିକାର ଗୋଷ୍ଠୀ, ଲେଖକ ଏବଂ ବୁଦ୍ଧିଜୀବୀମାନେ ଥାଆନ୍ତି । ଗଣତନ୍ତ୍ରରେ ଯେହେତୁ ସ୍ୱାଧୀନ ଭାବେ ମତବ୍ୟକ୍ତ କରିବାର ଅଧିକାର ଅଛି, ସେଥିପାଇଁ ନାଗରିକ ସମାଜର ମହତ୍ତ୍ୱ ଏଠି ବେଶି ଥାଏ । ଏକଛତ୍ରବାଦୀ ଶାସନ ଥିବା ରାଷ୍ଟ୍ରମାନଙ୍କରେ କିନ୍ତୁ ନାଗରିକ ସମାଜ ନଥାଏ । ଯଦି ବା ଥାଏ, ଏହା ସେତେ ପ୍ରଭାବଶାଳୀ ହୋଇନଥାଏ ।

ଭାରତର ଏଇ ନାଗରିକ ସମାଜ ଖୁବ୍ କ୍ରିୟାଶୀଳ । ଏଠି ଏହା ଏକ ସ୍ୱତନ୍ତ୍ର ରାଜନୈତିକ ସଂସ୍କୃତି ଭାବେ ପ୍ରଭାବ ବିସ୍ତାର କରିଛି । ମାନବିକ ଅଧିକାର, ଆତଙ୍କବାଦୀ ହିଂସା କିମ୍ବା ଯେକୌଣସି ସାମାଜିକ ଅଘଟଣ ଯୋଗୁଁ ଅନ୍ୟାୟର କଥା ଉଠିଲେ ଏଇ ସମାଜ ତାର ପ୍ରତିକ୍ରିୟା ପ୍ରକାଶ କରେ । ରାଜରାସ୍ତାକୁ ଆସି ନ୍ୟାୟ ଦାବି କରେ । ଛବିଶ ନଭେମ୍ବର ମୁମ୍ବାଇ ଆତଙ୍କବାଦୀ ଆକ୍ରମଣ ବେଳେ ଏଇ ସମାଜ ଆତଙ୍କବାଦ ବିରୁଦ୍ଧରେ ଭାରତ କଠୋର ହେବାକୁ ଦାବି କରିଥିଲା । ଜେସିକା ଲାଲ ହତ୍ୟା ଘଟଣାରେ ଦୋଷୀକୁ ଦଣ୍ଡ ଦେଇ ମୃତ ଜେସିକାକୁ ନ୍ୟାୟ ଦେବାକୁ ଏମାନେ ଏକ ଚାପର ବାତାବରଣ ବି ସୃଷ୍ଟି କରିଦେଇଥିଲେ । କିନ୍ତୁ ବର୍ତ୍ତମାନ ଯେଉଁ ଅଭିଯୋଗ ଆସୁଛି ଯେ, ଭାରତୀୟ ନାଗରିକ ସମାଜ ମାଓବାଦୀଙ୍କ ହିଂସାକୁ ବାହାବା ଦେଇ ଆଦର୍ଶଗତ ସମର୍ଥନ ଯୋଗାଇ ଦେଉଛି ,ସେଥିପାଇଁ ଏଇ ସମାଜରେ ସମ୍ଭବତଃ ଏକ କଳଙ୍କ ଲାଗିଗଲାଣି ।

ସତ କଥା ହେଲା, ଏଇ କିଛି ବର୍ଷ ଧରି ଭାରତରେ ମାଓବାଦୀଙ୍କ ହିଂସା ବଢ଼ିଛି । ଏହାକୁ ଅନେକ ଲାଲ ଆତଙ୍କର ନାଁ ଦେଲେଣି । ମାଓବାଦୀମାନେ ଏବେ ଆଉ କେବଳ ପୋଲିସ ବାହିନୀ ଏବଂ ସୁରକ୍ଷା କର୍ମୀକୁ ହତ୍ୟା କରୁନାହାନ୍ତି । ଏମାନେ ସାଧାରଣ ନିରୀହ ନାଗରିକମାନଙ୍କୁ ବି ହତ୍ୟା କରୁଛନ୍ତି । ଏଇ କିଛି ବର୍ଷ ତଳେ ଛତିଶଗଡର ଦାନ୍ତେୱାଡାରେ ମାଓବାଦୀଙ୍କ ଆକ୍ରମଣରେ ବସ ଯାତ୍ରୀମାନେ ମୃତ୍ୟୁବରଣ କଲେ ଏବଂ ଗତ ୨୦୧୦ ମସିହାରେ ହାୱଡା-ମୁମ୍ବାଇ ଜ୍ଞାନେଶ୍ୱରୀ ଏକ୍ସପ୍ରେସ ଟ୍ରେନରେ ଯାଉଥିବା ଶତାଧିକ ଯାତ୍ରୀଙ୍କର ଦୁର୍ଘଟଣା ଯୋଗୁ ଅକାଳ ମୃତ୍ୟୁ ହେଲା । ଏହାର ପ୍ରାଥମିକ କାରଣରେ ମାଓବାଦୀ ହିଂସା ଦାୟୀ ବୋଲି କୁହାଯାଉଛି ।

ସାଧାରଣ ଜନତା ମାଓବାଦ ଏବଂ ଗଣତନ୍ତ୍ର ଭିତରେ ପାର୍ଥକ୍ୟ କ'ଣ ବୁଝନ୍ତି ନାହିଁ । ପ୍ରଚଳିତ ଶାସନ ପଦ୍ଧତିର ବିଲୟ ପରେ ମାଓବାଦୀଙ୍କ ଶାସନ ଚାଲି ଆସିଲେ ଯେ କିପରି ଘିଅ ମହୁରେ ଏ ଦେଶ ଭାସିବ, ସେଥିପାଇଁ ଜାଣିବାକୁ ବି ଚାହେଁନି । କିନ୍ତୁ ଚଳନ୍ତା ଟ୍ରେନରେ ଛୋଟ ପିଲାଟିକୁ କୋଳରେ ଧରି ସିଟ୍ ଉପରେ ଶୋଇଥିବା ମା' ଯେ ଏସବୁ ଶାସନର ଅଭ୍ୟୁଦୟ ଏବଂ ବିଲୟ ପାଇଁ କେଉଁଠି ପ୍ରତିବନ୍ଧକ ସୃଷ୍ଟି କରୁଛି ଏବଂ ସେଥିପାଇଁ ତାକୁ ହତ୍ୟା କରାଯିବ, ଏ ପ୍ରଶ୍ନ ଏବେ ସାଧାରଣ ନାଗରିକଟି କରୁଛି ।

ସଂପ୍ରତି ଏ ପ୍ରଶ୍ନ ବି ହେଉଛନ୍ତି ଏଇ ମାଓବାଦୀ ଲାଲ ଆତଙ୍କ ପାଇଁ ଭାରତୀୟ ନାଗରିକ ସମାଜ କ'ଣ ଦାୟୀ ? ପ୍ରକୃତରେ ସ୍ୱାଧୀନ ଗଣତାନ୍ତ୍ରିକ ଭାରତରେ ନାଗରିକ ସମାଜର ଏବେ ଭୂମିକା କ'ଣ ? ଏ ସବୁ ପ୍ରଶ୍ନ ପାଇଁ ସାମାଜିକ କର୍ମକର୍ତ୍ତା ତଥା ମାନବିକ ଅଧିକାର ଗୋଷ୍ଠୀମାନେ ଉତ୍ତର ବି ରଖନ୍ତି । ସେମାନେ ସ୍ପଷ୍ଟ କରିଦିଅନ୍ତି, ଭାରତୀୟ ନାଗରିକ ସମାଜ ହିଂସାକୁ ମୋଟେ ସମର୍ଥନ କରେ ନାହିଁ । ଯେକୌଣସି ଅମାନବୀୟ ହିଂସାକୁ ଏମାନେ ନିନ୍ଦା କରନ୍ତି । ସେ ମାଓବାଦୀଙ୍କ ହିଂସା ହେଉ ବା ସୁରକ୍ଷା ବଳଙ୍କ କୃତ୍ରିମ ଏନ୍‌କାଉଣ୍ଟର ହେଉ । ଏ ସବୁ ହିଂସାରେ ଏଠି କେବଳ ଜଣେ ମଣିଷଟିଏ ହିଁ ମରିଥାଏ ।

ଆହୁରି ଏପରି ସ୍ପଷ୍ଟୀକରଣ ଆସେ, ହୋଇପାରେ ମାଓବାଦୀ ହିଂସାକୁ ସମର୍ଥନ କରୁଥିବା ଏଠି କିଛି ସାମାଜିକ କର୍ମକର୍ତ୍ତା ଥାଇପାରନ୍ତି । ଏମାନେ ତାଙ୍କର ହଠାତ୍ ପରିଚୟ ସୃଷ୍ଟି କରିବା ପାଇଁ ହୁଏତ କିଛି ମାଓ ସପକ୍ଷବାଦୀ ପଦକ୍ଷେପ ନେଇପାରନ୍ତି ।

ଏହା ସାଂପ୍ରତିକ ସାମାଜିକ ବ୍ୟବସ୍ଥାର ପ୍ରତିଫଳନ ମାତ୍ର । ଏଠି କୌଣସି ସମାଜ ଏପରିକି ରାଜନୈତିକ ସମାଜରେ ଗୋଟିଏ ମତପୋଷଣ କରୁଥିବା ସବୁ ଲୋକ ନଥାନ୍ତି । ଭିନ୍ନ ଅଭିବ୍ୟକ୍ତ ଦେଉଥିବା ଲୋକ ବି ଥାଆନ୍ତି ସୁତରାଂ ମାଓବାଦୀ ହିଂସାକୁ ସମର୍ଥନ କରି ପ୍ରତ୍ୟକ୍ଷ ତଥା ପରୋକ୍ଷରେ ସାହାଯ୍ୟ ଯୋଗାଇ ଦେଉଥିବା ନାଗରିକ ସମାଜର କିଛି ସାମାଜିକ କର୍ମକର୍ତ୍ତାଙ୍କ ବିରୋଧରେ ଆଇନ ପ୍ରୟୋଗ କରାଯାଇପାରେ । ଏ ଦେଶରେ ଏପରି ଆଇନର ବି ଅଭାବ ନାହିଁ । କିନ୍ତୁ ସାମୂହିକ ଭାବେ ଭାରତୀୟ ନାଗରିକ ସମାଜ ଭାରତରେ ମାଓହିଂସାକୁ ସମର୍ଥନ କରୁନଥିଲେ ବି ମାଓବାଦୀର ଅଭ୍ୟୁଥାନର କଥା କୁହେ । ମୂଳ କାରଣର ସମାଧାନ ନହେବା ପର୍ଯ୍ୟନ୍ତ ମାଓହିଂସାକୁ ରୋକିବା କଷ୍ଟ ବୋଲି ଏପରି ଆଶଙ୍କା ପ୍ରକାଶ କରେ ।

ଏହା ସ୍ୱୀକାର୍ଯ୍ୟ ଯେ, ଭାରତୀୟ ନାଗରିକ ସମାଜର ସାମାଜିକ କର୍ମକର୍ତ୍ତାମାନେ ସରକାରଙ୍କ ବାହାରେ ରହି ସାଧାରଣ ଲୋକଙ୍କ ସହ ସିଧାସଳଖ ମିଶନ୍ତି । ଲୋକଙ୍କ ଅଭାବ ଅନାଟନ ଏବଂ ଦାରିଦ୍ର୍ୟକୁ ଖୁବ୍ ନିକଟରୁ ଏମାନେ ଦେଖନ୍ତି । ଅନେକ ସାମାଜିକ ପ୍ରସଙ୍ଗ ଏମାନେ ଉଠାନ୍ତି ଯାହା ସରକାରୀ ଏଜେଣ୍ଡାରେ ନଥାଏ । ଅନେକ ଅଧିକାର ସଂପର୍କରେ ଏମାନେ ସାଧାରଣ ଲୋକଙ୍କୁ ସମର୍ଥନ କରିଦିଅନ୍ତି ଏବଂ ଦାବି ହାସଲ ନିମନ୍ତେ ଗଣତାନ୍ତ୍ରିକ ଆନ୍ଦୋଳନ ପାଇଁ ଏମାନେ ଅନେକ କ୍ଷେତ୍ରରେ ବାଟ ବି ଦେଖାନ୍ତି । ଯେପର୍ଯ୍ୟନ୍ତ କୌଣସି ଗଣତାନ୍ତ୍ରିକ ଆନ୍ଦୋଳନ ସାମାଜିକ ବିଭାଜନ କିମ୍ବା ହିଂସା ସୃଷ୍ଟି ନ କରିଛି ସେ ପର୍ଯ୍ୟନ୍ତ ଏହା ଅବୈଧ ବା ବେଆଇନ ନୁହେଁ ବୋଲି ଭାରତୀୟ ନାଗରିକ ସମାଜ ଯୁକ୍ତି ଦର୍ଶାଏ ।

ବିକାଶ ଏବଂ ବିସ୍ଥାପନ ପ୍ରସଙ୍ଗ ନେଇ ଗଢିଉଠିଥିବା ଜନ ଆନ୍ଦୋଳନକୁ ଏମାନେ ସମର୍ଥନ କରନ୍ତି । ବିକାଶ ତଥା ବିସ୍ଥାପନ ସଂପର୍କରେ ଭାରତୀୟ ନାଗରିକ ସମାଜର ମତ ନିଆରା । ଏମାନେ ସ୍ପଷ୍ଟ କରି କହନ୍ତି, ବିକାଶ ଅର୍ଥ କେବଳ ଆର୍ଥିକ ଅଭିବୃଦ୍ଧି ନୁହେଁ । ଯେ ପର୍ଯ୍ୟନ୍ତ ଅଭିବୃଦ୍ଧିର ଉତ୍ତମ ବଣ୍ଟନ ନହୋଇପାରିଛି, ସେ ପର୍ଯ୍ୟନ୍ତ ସାମଗ୍ରିକ ବିକାଶ ଆସେନି ଏବଂ ଯେପର୍ଯ୍ୟନ୍ତ ଆର୍ଥିକ ଅଭିବୃଦ୍ଧିର ଲାଭ ସମାଜର ସର୍ବନିମ୍ନ ସ୍ତରରେ ଥିବା ଲୋକଟି ପାଖରେ ପହଞ୍ଚି ନପାରିଛି, ସେ ପର୍ଯ୍ୟନ୍ତ ସମାଜର ସମୂହ ଉନ୍ନତି ହୁଏନି । ଗତ ଦୁଇ ଦଶନ୍ଧି ଭିତରେ ଭାରତରେ ଆର୍ଥିକ ଅଭିବୃଦ୍ଧି ଘଟିଛି, ଏହା ସତ । କିନ୍ତୁ ଏଇ ଅଭିବୃଦ୍ଧି ଏଠି କିଛି ଲୋକଙ୍କ ପାଖରେ ଠୁଳ

ହୋଇ ରହିଯାଇଛି । ସେଥିପାଇଁ ଧନୀ ଆହୁରି ଧନୀ ହୋଇଛି । କୋଟିପତି ଅରବପତି ହୋଇଛି । କିନ୍ତୁ ଆଶ୍ଚର୍ଯ୍ୟ ଯେ ପ୍ରତି ଗଣନାରେ ଭାରତରେ ଗରିବଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ଦାରିଦ୍ର୍ୟ ବୃଦ୍ଧି କରିବା ମଧ୍ୟଏକ ସାମାଜିକ ଅଘଟଣ, ଏ କଥା ନାଗରିକ ସମାଜରେ କାର୍ଯ୍ୟକ୍ରମରେ ଥିବା କର୍ମକର୍ତ୍ତାମାନେ ଅଭିଯୋଗ ମଧ୍ୟ ଆଣନ୍ତି । ଏହା ବି ଏକ ପ୍ରକାର ହିଂସା । ଏ ହିଂସା ହୁଏତ ସିଧା ସଳଖ କୌଣସି ହିଂସା ନହୋଇପାରେ । ଏହା ରାଷ୍ଟ୍ର ତିଆରି କରିଥିବା ଏକ ହିଂସା । ଅନ୍ୟ କଥାରେ କହିଲେ ଏହା ଏକ ଷ୍ଟ୍ରକ୍‌ଚରଡ ଭାଓଲେନ୍‌ସ । ଗରିବୀ ଯୋଗୁ ଅନାହାର ମୃତ୍ୟୁ, ଚିକିତ୍ସା ଅଭାବରୁ ମୃତ୍ୟୁ, ପୁଷ୍ଟିସାର ଖାଦ୍ୟ ନପାଇ ମା' ଏବଂ ଶିଶୁର ପ୍ରସବକାଳୀନ ମୃତ୍ୟୁ ଏଇ ପ୍ରସ୍ତୁତି କରା ହିଂସା ଭିତରେ ସାମିଲ । ଏହାକୁ ଭୋକିଲା ମଣିଷ ବି ପ୍ରତିବାଦ କରେ । ଏହି ପ୍ରତିବାଦ ଆପେ ଆପେ ହୋଇଥାଏ ।

ବିକାଶ ଆଳରେ ହେଉଥିବା ବିସ୍ଥାପନର ଦୁଃଖ କଥା ବି ଭାରତୀୟ ନାଗରିକ ସମାଜ ତାଙ୍କ ଏଜେଣ୍ଡାରେ ରଖେ । ଜବରଦସ୍ତ ବିସ୍ଥାପିତ ହେବାକୁ କୌଣସି ବ୍ୟକ୍ତି କେବେ ବି ଚାହେଁନା । ଶହ ଶହ ବର୍ଷର ଭିଟାମାଟି ଛାଡି ଅନ୍ୟତ୍ର ବସବାସ କରିବାକୁ ତାର କେବେ ଇଚ୍ଛା ନଥାଏ । ବିସ୍ଥାପନ ବି ଏକ ଏକକ ଘଟଣା ନୁହେଁ । ଏହାର ପ୍ରଭାବ ସୁଦୂର ପ୍ରସାରୀ ହୋଇଥାଏ । ବିସ୍ଥାପିତଟି କେବଳ ବାସଗୃହ ହରାଏ ନାହିଁ । ଜୀବିକା ନିର୍ବାହର ସ୍ଥାୟୀ ସାଧନ ହରାଏ । ସାମାଜିକ ସଂପର୍କ ଏବଂ ସଂସ୍କୃତିକୁ ଚିରଦିନ ପାଇଁ ଶେଷ କରିଦିଏ । ଆଉ ଉତ୍ତମ ପୁନଃଥଇଥାନ  ନାଁରେ ବିସ୍ଥାପିତଟିକୁ ତାର ନୂଆଣିଆ ପତ୍ର ଛପର ଘର ବଦଳରେ ଯେଉଁ ନୂଆ ପକ୍‌କା ଘରର ସ୍ୱପ୍ନ ଦେଖାଇ ଦିଆଯାଇଥାଏ, ପ୍ରାକୃତିକ ଜଙ୍ଗଲ ଏବଂ ନଦୀ ବଦଳରେ ତାର ପିଲାଙ୍କ ପାଇଁ ପାର୍କର ଯେଉଁ ପ୍ରତିଶ୍ରୁତି ଦିଆଯାଇଥାଏ, ଏହା କେତେ ଦୂର ବାସ୍ତବରେ ସଫଳ ହୋଇଛି, ଏହାର କେବେ ସମୀକ୍ଷା କରାଯାଏନି । ଏହାର ବିଚାର ହିଁ ନାଗରିକ ସମାଜର ଏଜେଣ୍ଡା । ଏଇ ଏଜେଣ୍ଡା ବି ମାଓବାଦୀଙ୍କ କାର୍ଯ୍ୟସୂଚୀରେ ଅଛି । ଜଙ୍ଗଲ ଓ ଆଦିବାସୀଙ୍କ ସୁରକ୍ଷା କଥା ମାଓବାଦୀମାନେ ବି କହନ୍ତି । ଏଜେଣ୍ଡା ଏକ ହୋଇଗଲେ ଯେ ମାଓବାଦୀ ଏବଂ ନାଗରିକ ସମାଜ ଏକ ଏବଂ ଅଭିନ୍ନ ଏହା ଏକ ବିଭ୍ରାନ୍ତିକର ଚିନ୍ତା ।

ଏ ସବୁ ନିଜ ସପକ୍ଷରେ ନାଗରିକ ସମାଜର ସଫେଇ । ସୁତାରଂ ଶେଷକଥା

ହେଲା, ଭାରତୀୟ ଗଣତନ୍ତ୍ର ଏବଂ ଏହାର ପରିଚାଳାନାରେ ଥିବା ତ୍ରୁଟିକୁ ଆଲୋଚନା ଏବଂ ପାରସ୍ପରିକ କଥାବାର୍ତ୍ତାରେ ହିଁ ସମାଧାନ କରି ହେବ । ନାଗରିକ ସମାଜରେ ଥିବା ବୁଦ୍ଧିଜୀବୀ, ଲେଖକ ସାମାଜିକ କର୍ମକର୍ତ୍ତା ଯେଉଁମାନେ ଏହାକୁ ନକଲି ଗଣତନ୍ତ୍ର ବୋଲି ସଂବୋଧନ କରନ୍ତି, ସେମାନେ ନିଶ୍ଚିତ ଠିକ୍ କରୁ ନାହାନ୍ତି । କାରଣ ହେଉଛି, ଗଣତନ୍ତ୍ର ହିଁ ଏକମାତ୍ର ଶାସନ ପଦ୍ଧତି ଯେଉଁଥିରେ ସାମଗ୍ରିକ ବିକାଶ ସମ୍ଭବ । ଏହା 'ଗ୍ରେଟେଷ୍ଟ ଗୁଡ୍ ଫର ଦି ଗ୍ରେଟେଷ୍ଟ ନମ୍ବର'ର ଦର୍ଶନ । ଗଣତନ୍ତ୍ର ହିଁ ଏକ ଦୀର୍ଘସ୍ଥାୟୀ ଶାସନ ନୀତି । ବିପ୍ଳବରୁ ପୃଥିବୀରେ ଋଷ ସମେତ ଯେଉଁଠି ଅଣଗଣତାନ୍ତ୍ରିକ ଶାସନ ଦିନେ ଆସିଥିଲା, ସେଠି ସେ ଶାସନ ଆଉ ନାହିଁ । ସାମ୍ୟବାଦର ଖୋଳପା ଭିତରେ ଚୀନରେ ପୁଞ୍ଜିବାଦ ଏବେ ବଞ୍ଚିଛି ଏବଂ ବଢୁଛି ।

ଏଣୁ ଭାରତର ଜନକଲ୍ୟାଣକାରୀ ଗଣତାନ୍ତ୍ରିକ ସରକାର ନାଗରିକ ସମାଜର ଚିନ୍ତା ବି ବୁଝିବା ଦରକାର । କାରଣ ଯେଉଁମାନେ ଏକ ଗଣତାନ୍ତ୍ରିକ ରାଷ୍ଟ୍ରକୁ ବେଶି ସୁରକ୍ଷା ଦିଅନ୍ତି, ସେମାନଙ୍କ ଭିତରେ ଏଇ ନାଗରିକ ସମାଜ ହିଁ ଅନ୍ୟତମ । ଏହି ପ୍ରସଙ୍ଗରେ ଅଧିକ ବିତର୍କ ହେବା ଦରକାର ।



# ନୋ ସ୍ମୋକିଙ୍ଗ୍

ସାଧାରଣ ସ୍ଥାନରେ ଏବେ ଧୂମପାନ କଡାକଡି ନିଷେଧ ହୋଇଛି । ଏହି ନିଷେଧାଜ୍ଞା ସମସ୍ତଙ୍କ ପାଇଁ । ରାଜନେତାଙ୍କଠାରୁ ଆରମ୍ଭ କରି ଅଭିନେତା ଏବଂ ସାଧାରଣ ଜନତା କେହି ଏଥିରୁ ବାଦ ପଡିନାହାନ୍ତି ।

ସାଧାରଣ ସ୍ଥାନ କହିଲେ, ଯେଉଁଠି ଲୋକଙ୍କ କାମ ଚାଲେ । କାମ ପାଇଁ ଲୋକେ ଯେଉଁଠି ଏକାଠି ହୁଅନ୍ତି । ସେ ଶିକ୍ଷାୟତନ, ଡାକ୍ତରଖାନା, ବସ୍ ଷ୍ଟାଣ୍ଡ କିମ୍ବା ସରକାରୀ ଅଫିସ, ଦପ୍ତର ବି ହୋଇପାରେ । ଅଫିସରେ କର୍ମଚାରୀଟିଏ ସିଗାରେଟ ଖାଇଲା ବେଳେ ଧରାହେଲେ ଏବେ ଜୋରିମାନା ଦେବାକୁ ପଡୁଛି । ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ହେଉଛି । ଭାରତର ଜାତୀୟ ତମାଖୁ ନିରାକରଣ ସଂସ୍ଥା ସିନେମା ତାରକା ଶାହାରୁଖ ଖାଁଙ୍କ ବିରୋଧରେ ମୋକଦ୍ଦମାଟିଏ ବି କରି ଦେଇଥିଲେ । ଶାହାରୁଖଙ୍କର ଦୋଷ ହେଲା, ସେ ଏକ ଟି -୨୦ କ୍ରିକେଟ ମ୍ୟାଚ ଚାଲିଥିବା ବେଳେ ଦର୍ଶକ ଗ୍ୟାଲେରିରେ ବସି ସାଧାରଣ ଲୋକଙ୍କ ଉପସ୍ଥିତିରେ ସିଗାରେଟ ଟାଣୁଥିଲେ । ଏ ଦୃଶ୍ୟ ଟିଭି ସିଧାପ୍ରସାରଣରେ ଦେଖାଯାଉଥିଲା । କୁହାଯାଏ, ଶାହାରୁଖ ଜଣେ ଚେନ୍ ସ୍ମୋକର ।

ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟ ମଧ୍ୟ ସବୁବେଳେ ନିରବିଚ୍ଛିନ୍ନ ଭାବେ ସିଗାରେଟ ଟାଣନ୍ତି । ଏପରିକି ରାଇଟରସ୍ ବିଲ୍ଡିଂରେ ନିଜ ଅଫିସ କକ୍ଷରେ ସେ କୁଆଡେ ସିଗାରେଟ ଖାଆନ୍ତି ବୋଲି ଅଭିଯୋଗ ଆସୁଥିଲା । ଅନେକ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ସିଗାରେଟ ଖିଆରେ ଅଭ୍ୟସ୍ତ । ଧୂମପାନ ଦେହ ପ୍ରତି କ୍ଷତିକାରକ, ଏମିତି ସ୍ଲୋଗାନ ନିଜେ ସିଗାରେଟ ଖୋଳ ଉପରେ ଲେଖି ଦେଇଥିଲେ ବି ନିଜେ କିନ୍ତୁ ସିଗାରେଟ ଛାଡି ପାରିନାହାଁନ୍ତି । ଇଂଲଣ୍ଡର ଉଇନଷ୍ଟନ୍ ଚର୍ଚ୍ଚିଲଙ୍କୁ ବିନା 'ସିଗାର' ରେ କିଏ କେବେ ଦେଖିନଥିଲା । ଚର୍ଚ୍ଚିଲ ସବୁବେଳେ ସିଗାରେଟ ଖାଉଥିଲେ । ସେ ବି ଜଣେ ଚେନ୍ ସ୍ମୋକର ଥିଲେ ।

ସିନେମା ଏବଂ ଟିଭିରେ ଧୂମପାନ ଦୃଶ୍ୟ ପ୍ରଦର୍ଶିତ ନକରିବାକୁ ଭାରତର ସ୍ୱାସ୍ଥ୍ୟ ମନ୍ତ୍ରାଳୟ ନିର୍ଦ୍ଦେଶ ଦେଇଛନ୍ତି । ଏହାର କାରଣରେ କୁହାଯାଇଛି, ୧୮ ବୟସରୁ କମ୍ ବର୍ଷର ପିଲାମାନେ ଭାରତରେ ସିଗାରେଟ ଖାଆନ୍ତି । ଏମାନେ ସିନେମା ତାରକାଙ୍କୁ ନିଜର ଆଦର୍ଶ ବୋଲି ଭାବନ୍ତି । ସୁତରାଂ ସିନେମା ଏବଂ ଟିଭିରେ ଧୂମପାନ ଦୃଶ୍ୟ

ତେଣୁ ବନ୍ଦ ହେବା ଉଚିତ କାରଣ ସିଗାରେଟ ଟାଣୁଥିବା ଚିତ୍ରତାରକାଙ୍କୁ ଦେଖି ପିଲାମାନେ ପ୍ରଭାବିତ ହୋଇପାରନ୍ତି ।

ଏହା ସତ, ଏବେ ମଧ୍ୟ ସିଗାରେଟ ଖିଆକୁ ପୁରୁଷ ପଣିଆରେ ଏକ ପରିପ୍ରକାଶ ବୋଲି ଅନେକ ଲୋକ ଧରନ୍ତି । ଏହା ତାଙ୍କର ଅହଂ ବା ଇଗୋ ପରିଚାଳନାର ଏକ ଦିଗ ବୋଲି ଭାବନ୍ତି । ସିଗାରେଟ ଟାଣିଦେଲେ କୁଆଡେ ଦାମ୍ଭିକତା ଆସିଯାଏ ଏବଂ ପୁରୁଷାର୍ଥର ପ୍ରତିଫଳନ ଘଟେ, ଏହା ଅନେକଙ୍କର ଏଠି ଧାରଣା । ଏ ଧାରଣା ପ୍ରକୃତରେ ଏକ ସ୍ଥାନାନ୍ତରିତ ଧାରଣା । ଏଥିରେ ସେମିତି କିଛି ଶକ୍ତ ଆଧାର ନାହିଁ । ଏହା ଏକ ପୁରୁଣା ଦୃଷ୍ଟିଭଙ୍ଗୀର ପ୍ରସଙ୍ଗ ହୋଇପାରେ । ଆଶ୍ଚର୍ଯ୍ୟ ଯେ, ସ୍ୱାସ୍ଥ୍ୟ ସଚେତନତା ସତ୍ତ୍ୱେ ବି ଏଠି ସିଗାରେଟ ସେବନ ସହ ପୁରୁଷାର୍ଥ ସମ୍ପର୍କ ନେଇ ଏକ କୁତ୍ସିତ ଭାବନାଟିଏ ଅନେକଙ୍କ ପାଖରେ ଏବେ ମଧ୍ୟ ବଞ୍ଚି ରହିଛି ।

ନୋ ସ୍ମୋକିଙ୍ଗ ନାଁରେ ଏକ ହିନ୍ଦୀ ସିନେମା ଅଛି । ଏ ସିନେମାରେ ନାୟକ ହେଉଛନ୍ତି ଜନ ଆବ୍ରାହମ୍ । ସିନେମାରେ ତାଙ୍କ ଡାକ ନାଁ 'କେ' । ତାଙ୍କ ବିପକ୍ଷରେ ଯେ ନାୟିକା ଅଛନ୍ତି ସେ ହେଉଛନ୍ତି ଆୟେଶା ଟାକିଆ । ଫିଲ୍ମରେ ଆୟେଶାଙ୍କ ନାଁ 'ଅଲି' । କେ ଆଉ ଅଲି ସ୍ୱାମୀ ସ୍ତ୍ରୀ... ।

ଆବ୍ରାହମ ଏହି ସିନେମାରେ ଜଣେ ଚେନ ସ୍ମୋକର ଭାବେ ଅଭିନୟ କରନ୍ତି । ସବୁବେଳେ ସେ ସିଗାରେଟ ଟାଣନ୍ତି । ଏପରିକି ନିଜ ଶୟନ କକ୍ଷରେ ମଧ୍ୟ । ସିଗାରେଟ ଛାଡିବାକୁ ତାଙ୍କୁ କିଏ ପ୍ରଶ୍ନ କଲେ କେ ଉତ୍ତର ଦିଅନ୍ତି, ସେ ସବୁ ତ୍ୟାଗ କରିପାରିବେ, କିନ୍ତୁ ସିଗାରେଟ୍ ନୁହେଁ । ସିଗାରେଟ ତାଙ୍କର ଦାମ୍ଭିକତାର ଚିହ୍ନ । ତାଙ୍କ ପୌରୁଷର ପରିପ୍ରକାଶର ଏହା ଏକ ମାଧ୍ୟମ ।

ତାଙ୍କ ସ୍ତ୍ରୀ ଅଲି ମଧ୍ୟ ସିଗାରେଟ ଖିଆ ନେଇ 'କେ'ଙ୍କ ସହ ଅନେକ ଥର କଳି କରନ୍ତି । ସିଗାରେଟ ନଛାଡିଲେ ସେ (ଅଲି) ତାଙ୍କୁ (କେଙ୍କୁ) ଛାଡପତ୍ର ଦେଇଚାଲିଯିବେ ବୋଲି ଧମକ ଦିଅନ୍ତି । ଅଥଚ ପୁରୁଷ ଦାମ୍ଭିକତାର ଏକ ବସାବନ୍ଧା ଆତ୍ମପ୍ରବଚନାକୁ ନେଇ କେ ନିଜ ସ୍ତ୍ରୀ କୁ ନିର୍ଯାତନା ଦିଅନ୍ତି ଏବଂ ପୁଣି ବି ସିଗାରେଟ ଟାଣନ୍ତି । ତଥାପି ବେଳେବେଳେ ଆତ୍ମନିରୀକ୍ଷଣ କରନ୍ତି କେ । ଏହି ସିଗାରେଟ ଅଭ୍ୟାସ ଯୋଗୁ ତାଙ୍କ ପ୍ରିୟ ପତ୍ନୀ ଅଲି ତାଙ୍କୁ ଛାଡି ଚାଲିଯିବନି ତ ? ନିଜକୁ ନିଜେ ସେ ପ୍ରଶ୍ନ କରନ୍ତି ... ।

'କେ' ଏ ବଦଭ୍ୟାସ ଛାଡିବାକୁ ମୁମ୍ବାଇ ବସ୍ତିରେ ରହୁଥିବା ଏକ ବାବାଙ୍କ ପାଖକୁ ଯାଆନ୍ତି । ବାବା କହନ୍ତି, ସେ ଚମତ୍କାରିତା ଜାଣନ୍ତି । ସିଗାରେଟ ଅଭ୍ୟାସ ଛଡାଇବା ତାଙ୍କ ପାଇଁ ବଡ କଥା ନୁହେଁ ।

କେ ରହନ୍ତି ବସ୍ତିରେ । ସିଗାରେଟ ଖିଆ ତାଙ୍କର କମେ ନାହିଁ । ଅଥଚ ସେ ଅପରାଧୀର ଦୁନିଆରେ ଫସି ଯାଆନ୍ତି । ପୁରୁଷ ଦାମ୍ଭିକତା ତାଙ୍କର ଅନ୍ୟ ଏକ ମୋଡ ନେଇଯାଏ ।

'ନୋ ସ୍ମୋକିଙ୍ଗ୍'ରେ ସିଗାରେଟ ପାନକୁ ସବୁ ନିଶା ସେବନର ଏକ ପ୍ରତୀକ ଭାବେ ଦର୍ଶାଯାଇଛି । କୁହାଯାଇଛି, ସିଗାରେଟ ଖିଆରେ କିଛି ପୁରୁଷାର୍ଥ ନଥାଏ । କେବଳ ଅମାପ ବିପଦ ହିଁ ଥାଏ । ସଂପ୍ରତି କାନାଡାର 'ଟରୋଣ୍ଟୋ'ରେ ଥିବା ସେଣ୍ଟର ଫର ଗ୍ଲୋବାଲ ରିସର୍ଚ୍ଚ ଉଭୟ କାନାଡା ଏବଂ ଭାରତର କିଛି ଡାକ୍ତରଙ୍କୁ ନେଇ ଯୁବ ଅପମୃତ୍ୟୁ ଉପରେ ଏକ ସର୍ବେକ୍ଷଣ କରିଥିଲା । ଏ ସମ୍ପର୍କରେ ଏକ ରିପୋର୍ଟ ନିଉ ଇଂଲଣ୍ଡ ଜର୍ଣ୍ଣାଲ ଅଫ୍ ମେଡିସିନ୍‌ରେ ପ୍ରକାଶିତ ହୋଇଛି । ଏହି ରିପୋର୍ଟର ସାରାଂଶ 'ଦି ଟେଲିଗ୍ରାଫ'ରେ ପ୍ରକାଶ ପାଇଛି । ଭାରତର ଯୁବ ମୃତ୍ୟୁକୁ ନେଇ ଏ ରିପୋର୍ଟରେ ଉଲ୍ଲେଖିତ ଥିବା କିଛି ତଥ୍ୟକୁ ଏଇଠି ଏ ଆଲୋଚନାକୁ ଆଣିବାକୁ ଇଚ୍ଛା ।

ସର୍ଭେ କୁହେ, ୨୦୨୦ ମସିହା ସୁଦ୍ଧା ଧୂମପାନ ଯୋଗୁ ଭାରତରେ ଯେଉଁ ଅପମୃତ୍ୟୁ ହେବ, ସେ ମୃତ୍ୟୁର ସଂଖ୍ୟା ହେବ ୯ଲକ୍ଷ ୩୫ ହଜାର । ସେଥିରୁ ପୁରୁଷଙ୍କ ସଂଖ୍ୟା ହେବ ୫ଲକ୍ଷ ୭୯ ହଜାର ଏବଂ ଅବଶିଷ୍ଟ ମହିଳା ହେବେ । ଏମାନେ ସମସ୍ତେ ୩୦ ବର୍ଷରୁ ୬୯ ବର୍ଷ ବୟସରେ ହୋଇଥିବେ । ସର୍ବେକ୍ଷଣରେ ଏ କଥା ବି ଅଛି, ଯେଉଁ ପୁରୁଷମାନେ ସିଗାରେଟ ଖାଆନ୍ତି ସେମାନଙ୍କର ବୟସ ୧୦ ବର୍ଷ କମିଯାଏ ଏବଂ ବିଡି ଖାଇଲେ ଏହି ହ୍ରାସ ୬ ବର୍ଷ ହୁଏ । ଦୈନିକ ଏକରୁ ସାତ ସିଗାରେଟ ପାନ କଲେ ଜୀବନ ପାଇଁ ଦୁଇଗୁଣ ଅଧିକ ବିପଦ ଥାଏ ଏବଂ ଏହାଠାରୁ ଅଧିକ ସିଗାରେଟ ହେଲେ ବିପଦ ତିନି ଗୁଣ ହୁଏ । ମହିଳାମାନେ ସିଗାରେଟ କିମ୍ବା ବିଡି ଖାଇଲେ ସେମାନେ ସେମାନଙ୍କର ବଞ୍ଚିବାର ବୟସ ୮ ବର୍ଷ କମାଇ ଦିଅନ୍ତି । ଗର୍ଭବତୀ ମହିଳାଙ୍କ ପ୍ରତି ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଧୂମପାନ ବିପଦ ଆଣିଥାଏ ।

ଧୂମପାନରେ ସେମିତି କିଛି ସୁରକ୍ଷିତ ସ୍ତର ନାହିଁ । ସିଗାରେଟ ଦିନକୁ ଗୋଟିଏ ଖାଇଲେ ଯେତିକି କ୍ଷତି କରାଏ, ଗୋଟିଏ ପ୍ୟାକେଟ ସେବନ କଲେ ସେହି ପରିମାଣର କ୍ଷତି ହୁଏ । ଧୂମପାନକାରୀଙ୍କର ଫୁସଫୁସରେ କ୍ୟାନସର ହୁଏ । ସହରୀ ସେବନକାରୀଙ୍କ ହୃଦଘାତ ହୁଏ ଏବଂ ଗ୍ରାମାଞ୍ଚଳରେ ଧୂମପାନ କରୁଥିବା ବ୍ୟକ୍ତିମାନେ ଅଧିକ ସଂଖ୍ୟାରେ ଯକ୍ଷ୍ମା ରୋଗରେ ପୀଡ଼ିତ ହୁଅନ୍ତି । ଭାରତରେ ପ୍ରାୟ ବାର କୋଟି ଲୋକ ସିଗାରେଟ ପାନ କରନ୍ତି ଏବଂ ସିଗାରେଟ ଖୋଳ ଉପରେ ଲେଖା ଯାଇଥିବା କୌଣସି ଚେତାବନୀ ଏ ପର୍ଯ୍ୟନ୍ତ ସେମିତି କିଛି ଆଖିଦୃଶିଆ ପ୍ରଭାବ ପକାଇପାରିନଥିବା

କଥା ସର୍ବେକ୍ଷଣ ରିର୍ପୋଟରେ ଉଲ୍ଲେଖ ଅଛି ।

ଭାରତରେ ଉଭୟ ଶିକ୍ଷିତ ଏବଂ ଅଶିକ୍ଷିତ ବ୍ୟକ୍ତି ଧୂମପାନ କରନ୍ତି ଏବଂ ଧୂମପାନ ନିଷେଧ ନେଇ ଅନେକ ପ୍ରଚାର ସତ୍ତ୍ୱେ ବି ଭାରତରେ ମାତ୍ର ଦୁଇ ପ୍ରତିଶତ ଲୋକ ସିଗାରେଟ ଖିଆ ଛାଡିଛନ୍ତି ।

ସର୍ବେକ୍ଷଣ ରିପୋର୍ଟରେ ଅନ୍ୟ ଯେଉଁ ତଥ୍ୟଟି ଉଲ୍ଲେଖ ଅଛି ତାହା ଏଠି ପ୍ରଣିଧାନଯୋଗ୍ୟ । ସିଗାରେଟ ଟାଣୁଥିବା ବ୍ୟକ୍ତି ଅପେକ୍ଷା ପାଖରେ ବସି ସିଗାରେଟ ଧୂଆଁ ନେଉଥିବା ବ୍ୟକ୍ତିଙ୍କ ପ୍ରତି ଏହି ନିଷ୍କ୍ରିୟ ଧୂମପାନ ବେଶି ହାନୀକାରକ । ସିଗାରେଟ ଖାଉଥିବା ଅଭିଭାବକଙ୍କ ପାଖରେ ଥିବା ଛୋଟ ପିଲାମାନେ ନିମୋନିଆରେ ପଡନ୍ତି ।

ଗ୍ଲୋବାଲ ରିସର୍ଚ୍ଚ ସେଣ୍ଟରର ଏହି ରିପୋର୍ଟ ପ୍ରକୃତରେ ଏବେ ଭାରତ ସରକାରଙ୍କୁ ସଜାଗ ହୋଇଯିବାକୁ ଏକ ଆହ୍ୱାନ ଦେଇଛି । ଠିକ୍ ସମୟରେ ତମାଖୁ ବ୍ୟବହାର ଏବଂ ଧୂମପାନର ନିରାକରଣ ନହେଲେ ଭାରତରେ ଅପମୃତ୍ୟୁ ସଂଖ୍ୟା ବଢିଯାଇପାରେ ।

ହଁ, ଧୂମପାନକାରୀମାନେ ସରକାରୀ ନିଷ୍ପତ୍ତିକୁ ବିରୋଧ କରିବା କଥା ଖବରକୁ ମଧ୍ୟ ଆସିଲାଣି । ସେମାନେ କହନ୍ତି, ଧୂମପାନ କରିବା ଏକ ବ୍ୟକ୍ତିଗତ ଅଧିକାର । ଏହା ବ୍ୟକ୍ତିର ପସନ୍ଦ ଏବଂ ଅପସନ୍ଦର ପ୍ରସଙ୍ଗ । ଏହି ଅଧିକାରକୁ ନିଷେଧ କିମ୍ବା ସଂକୁଚିତ କରିବା କୌଣସି ରାଷ୍ଟ୍ରର କ୍ଷମତା ପରିସରଭୁକ୍ତ ନୁହେଁ । ଏହା ଅସମ୍ବିଧାନିକ ଏବଂ ଅଗଣତାନ୍ତ୍ରିକ ବି । ସେମାନେ ଏହା ମଧ୍ୟ କହନ୍ତି, ସବୁ ବଦଅଭ୍ୟାସକୁ ଯଦି ଅପରାଧ ବୋଲି ଧରିନିଆଯାଏ ଭାରତରେ ପୋଲିସ ଷ୍ଟେଟର ଆଉ ସୀମା ରହିବନି । ପୋଲିସ ରାଷ୍ଟ୍ର କୌଣସି ଏକ ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତି ବିପଦ ।

ଧୂମପାନକାରୀଙ୍କ ଯୁକ୍ତି ଯାହା ହେଉନା କାହିଁକି, ଦେଶର ନାଗରିକମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ନେବା, ଗୋଟିଏ ଜନମଙ୍ଗଳ ରାଷ୍ଟ୍ରର ଦାୟିତ୍ୱ । ଏହା ମଧ୍ୟ ଏକ ସାମାଜିକ ନ୍ୟାୟ ଏବଂ ଜୀବନ ପ୍ରତି ଅଧିକାରର କଥା । ଏହା ସଂବିଧାନ ସ୍ୱୀକୃତ । ଯଦି ସିଗାରେଟଟିଏ ଟାଣି ଦେଲେ ଦାମ୍ଭିକତାର ପରିପ୍ରକାଶ ଘଟେ ଏବଂ ସିନେମା ଥିଏଟରରେ କଳାତ୍ମକ ଭାବନା ପ୍ରକାଶିତ ହୋଇଯାଏ, ଏହା ଜୀବନ ପ୍ରତି ଅଧିକାର ଠାରୁ ଊର୍ଦ୍ଧ୍ୱରେ ନୁହେଁ । ଧୂଆଁ ପିଇ ବଞ୍ଚିବାରେ ବାସ୍ତବରେ ଜୀବନ ନଥାଏ । କେବଳ ମୃତ୍ୟୁ ହିଁ ଥାଏ । ନୋ ସ୍ମୋକିଙ୍ଗ୍ ପ୍ଲିଜ୍ ... ।



# ନୂଆ ଜମିଦାର

**ଭା**ରତରେ ସଂପ୍ରତି ନୂଆ ବା ନବ୍ୟ ଜମିଦାରମାନଙ୍କର ଅଭ୍ୟୁଦୟ ହୋଇଛି । ଇଂରାଜୀରେ ଏମାନଙ୍କୁ କୁହାଯାଉଛି ନିଓ ଜମିଦାର । ବଡ଼ ବଡ ଧନୀ କର୍ପୋରେଟ ହାଉସ୍ ଏଇ ଜମିଦାର ହେବାକୁ ପ୍ରତିଯୋଗିତାରେ ଅଛନ୍ତି । ଏମାନଙ୍କ ଭିତରେ ସାମିଲ ଅଛନ୍ତି ବେଦାନ୍ତ, ପୋସ୍କୋ, ଜିନ୍ଦଲ, ମିତଲ, ଅମ୍ବାନି ଏପରି ଅନେକ । ପୃଥିବୀର ଯେକୌଣସି ଦେଶରେ ବି ଏମାନେ ଜମିଦାରୀ ପତିଆରା ଜମାଇପାରନ୍ତି । କାରଣ ବର୍ତ୍ତମାନ ଏହା ଜଗତିକରଣର ଯୁଗ ।

ଜମିଦାର ଶବ୍ଦ ମଧ୍ୟଯୁଗୀୟ ସାମନ୍ତବାଦୀ ପ୍ରଥାର ଏକ ଅଂଶ । ଏଇ ଜମିଦାରଙ୍କ ପାଖରେ ଅମାପ ଭୂ-ସଂପତ୍ତି ଥାଏ । ହଜାର ହଜାର ଏକର ଜମିର ସେମାନେ ମାଲିକ । କୃଷି ଅର୍ଥନୀତିରେ ସେମାନେ ହିଁ ଧନୀ । ରାଜ୍ୟ ଶାସନରେ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ବି ରହିଥାଏ ।

ସ୍ୱାଧୀନତା ପୂର୍ବରୁ ଭାରତରେ ଜମିଦାରୀ ପ୍ରଥା ଥିଲା । ଶହ ଶହ ଏକର ଜମିର ଜମିଦାରମାନେ ମାଲିକ ଥିଲେ । ଭାରତର ଭୂ-ସଂପତ୍ତି ମାତ୍ର କେତେଜଣ ଧନୀ ଜମିଦାରଙ୍କ ପାଖରେ ଥିଲା ଏବଂ ଭାରତରେ ଅଧିକାଂଶ ଥିଲେ ଜମିହୀନ ।

ସ୍ୱାଧୀନ ଭାରତରେ ଜମିଦାରୀ ପ୍ରଥା ଏବେ ଆଉ ନାହିଁ । ବିଭିନ୍ନ ସମୟରେ ଭୂ-ସଂସ୍କାର ନିୟମ ହୋଇ ଜମିଦାରଙ୍କ ଠାରୁ ବଳକା ଜମି କାଢ଼ି ନିଆଯାଇଛି । ତଥାପି ବି ଏକ ସର୍ବେକ୍ଷଣ ଅନୁସାରେ, ଭାରତରେ ମାତ୍ର କୋଡିଏ ପ୍ରତିଶତ ଲୋକ ହେଉଛନ୍ତି ଜମି ମାଲିକ ଏବଂ ଅନ୍ୟ ଅଶି ପ୍ରତିଶତ ଲୋକ ଭୂମିହୀନ... ।

ଭାରତରେ ଆର୍ଥିକ ଉଦାରୀକରଣ ଏବଂ ଜଗତିକରଣ ଯୁଗ ଆରମ୍ଭ ହେବାପରେ ଏ ଦେଶର ଅର୍ଥନୀତି ଏବଂ ରାଜନୀତିରେ କିଛି ସାଆନ୍ତମାନେ ସୃଷ୍ଟି ହୋଇଛନ୍ତି । ଏମାନେ ଉଭୟ ଅର୍ଥନୀତି ଏବଂ ରାଜନୀତିକୁ ନିୟନ୍ତ୍ରଣ କରୁଛନ୍ତି ।

ଗଣତନ୍ତ୍ର ଯେ ଭିନ୍ନ ଏକ ପୁଞ୍ଜିବାଦକୁ ଜନ୍ମ ଦେଇପାରେ, ଏହା ଏଠି ଅନନ୍ୟ ଘଟଣା । ଉଦାରୀକରଣ ପରେ ଭାରତରେ ଧନୀମାନେ ବେଶି ଧନୀ ହୋଇଛନ୍ତି । କୋଟି କୋଟି ଟଙ୍କା ସଂପତ୍ତିର ମାଲିକ ହୋଇଯାଇଛନ୍ତି । ପ୍ରକାରନ୍ତରେ କିନ୍ତୁ ଏଠି ଗରିବଙ୍କ ସଂଖ୍ୟା ବଢ଼ିଛି । ଦାରିଦ୍ର୍ୟ ବୃଦ୍ଧି ପାଇଛି । ବ୍ୟକ୍ତିର କ୍ରୟ ଶକ୍ତି ହ୍ରାସ ପାଇଛି । ଏବେ ମଧ୍ୟ ଏ ଦେଶରେ ୫୦ ପ୍ରତିଶତରୁ ଅଧିକ ଲୋକ ଦୈନିକ ୨୦ ଟଙ୍କା ଖର୍ଚ୍ଚ କରିବାକୁ ପାଆନ୍ତି ନାହିଁ । ଆର୍ଥିକ ଅଭିବୃଦ୍ଧି ହୋଇଛି, ଏହା ସତ, ହେଲେ ଏ ଅଭିବୃଦ୍ଧି ଯୋଗୁ କିନ୍ତୁ ଧନୀଙ୍କ ପାଖରେ ସଂପତ୍ତି ଠୁଳ ହୋଇଛି ।

ଏ ଦେଶ  ବର୍ତ୍ତମାନ ଦୁଇ ଭାଗରେ ବିଭକ୍ତ । ଗୋଟିଏ ଇଣ୍ଡିଆ  ଏବଂ ଅନ୍ୟଟି ଭାରତ । ଭାରତରେ ବେଶି ଗରିବ ଲୋକ ରହନ୍ତି । ଏମାନେ କୃଷି ଏବଂ ଦୈନିକ ମଜୁରୀ ଉପରେ ନିର୍ଭର କରନ୍ତି ଏବଂ ଇଣ୍ଡିଆରେ ଟାଟା, ଅମ୍ବାନୀ ପରି ଧନୀମାନେ ରହନ୍ତି, ଯେଉଁମାନେ ତାଙ୍କ ସିଇଓମାନଙ୍କୁ ବାର୍ଷିକ କୋଟିଏ ଟଙ୍କା ବେତନ ଦେଇଥାନ୍ତି ।

ଧନୀମାନଙ୍କ ସଂପ୍ରତି ନଜର ପଡିଛି ଜମି ଉପରେ । ସେମାନେ ଜାଣନ୍ତି, ଆଉ କିଛି ବର୍ଷ ପରେ ଜମି ସବୁଠାରୁ ମୂଲ୍ୟବାନ ସଂପତ୍ତି ହୋଇଯିବ । କାରଣ ଏଠି ଜନ ସଂଖ୍ୟା ବଢୁଛି । ଜମି କିନ୍ତୁ ସ୍ଥିର । ବେଦାନ୍ତରୁ ପୋସ୍କୋ ପର୍ଯ୍ୟନ୍ତ ଜମି ନେଇ ଏବେ ଯେଉଁ ସଂଗ୍ରାମ ଚାଲିଛି କାଳକ୍ରମେ ଏପରି ଜମି ଯୁଦ୍ଧ ଆହୁରି ତୀବ୍ର ହେଇଯିବ ।

କର୍ପୋରେଟ ହାଉସ୍ ତେଣୁ ଏବେ ଜମି କିଣୁଛନ୍ତି ଏବଂ ଜମି କିଣା ପାଇଁ ଏମାନେ ଶିଳ୍ପାୟନର କାରଣ ଦେଉଛନ୍ତି । ଖଣିଜ ସଂପଦକୁ ନେଇ ଶିଳ୍ପ ଗଢିଦେଲେ ଯେ ସଂପୂର୍ଣ୍ଣ ବିକାଶ ଘଟିଯିବ ଏହା ଏଠି ସଂପ୍ରତି ରାଷ୍ଟ୍ରର ନୀତି ନିର୍ଦ୍ଧାରକମାନଙ୍କର ବି ଧାରଣା । ମୁକ୍ତ ଅର୍ଥନୀତିର ପଣ୍ଡିତମାନେ ମଧ୍ୟ ରାଷ୍ଟ୍ର ଶାସକମାନଙ୍କୁ ଏଇ ପରାମର୍ଶ ଦିଅନ୍ତି ।

ସବୁଠାରୁ ବଡ କଥା ହେଲା, ଧନୀ କମ୍ପାନୀମାନଙ୍କ ପାଇଁ ରାଜ୍ୟ ସରକାରମାନେ ନିଜେ ଜମି ଅଧିଗ୍ରହଣ କରୁଛନ୍ତି । ପାଣି, ଖଣି, ବିଜୁଳି ଯୋଗାଇ ଦେଉଛନ୍ତି । ସ୍ୱତନ୍ତ୍ର ଅର୍ଥନୈତିକ ଜୋନମାନ ଘୋଷଣା କରୁଛନ୍ତି । ଟିକସ ଛାଡ କରୁଛନ୍ତି । ଯଦି ଦରକାର ହେଉଛି, ଗରିବ ଜମି ମାଲିକଙ୍କଠାରୁ ଜମି ଗ୍ରହଣ କରିବାକୁ ରାଜ୍ୟ ସରକାର ବଳ ପ୍ରୟୋଗ  କରୁଛନ୍ତି ଏବଂ ଏଇ ବଳ ପ୍ରୟୋଗରେ ଯଦି

ଗରିବ ଜମି ମାଲିକର ହତ୍ୟା ହୋଇଯାଏ, କିଛି ଯାଏ ଆସେ ନାହିଁ। ନୂଆ ଜମିଦାରଙ୍କ ସ୍ୱାର୍ଥ ପାଇଁ ରାଷ୍ଟ୍ରଶକ୍ତି ଯେପରି ବ୍ୟସ୍ତ ହୋଇପଡିଛି, ଏହା ହିଁ ବିଡମ୍ବନା । ଏଇ ବିଡମ୍ବନା ଅତି ନିଷ୍ଠୁର ।

ବେଦାନ୍ତ ଏକ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାକୁ ପୁରୀ ପାଖରେ ଦଶ ହଜାର ଏକର ସ୍ଥାନ ମାଗଥିଲା । ରାଜ୍ୟର ନୀତି ନିର୍ଦ୍ଧାରକମାନେ ମୂଳଚାଲ କରି,ଏହାକୁ ଆଠ ହଜାର ଏକରରେ ସୀମିତ ରଖିଲେ । ଏ ଜମି ସବୁ ଥିଲା ସବୁଜ ଚାଷଜମି । ସମୁଦ୍ରକୂଳର ବାଲୁକା ପ୍ରାନ୍ତର । ବିଶ୍ୱସ୍ତରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ସମ୍ମୋହନ ସମ୍ଭବତଃ ଆମ ପ୍ରଶାସକ ତଥା ଶାସକମାନଙ୍କୁ ସମ୍ମୋହିତ କରିଦେଇଥିଲା।

ଆଠ ହଜାର ଏକରର ଭୂ-ସଂପତ୍ତି କିଛି କମ୍ ସଂପତ୍ତି ନୁହେଁ। ଏ ଜମିର ଦୈର୍ଘ୍ୟ, ପ୍ରସ୍ଥ କେତେ କିଲୋମିଟର ହେବ, ଏ ଲେଖକ ହିସାବ କରିବାକୁ ଅକ୍ଷମ । ମାତ୍ର କେତେ ଶହ କୋଟି ଟଙ୍କାରେ ଯେ କିଲୋମିଟର କିଲୋମିଟର ବ୍ୟାପି ଜମିର ମାଲିକାନା ସ୍ୱତ୍ତ୍ୱ ମିଳିପାରୁଛି, ଏହା ହିଁ ଆଶ୍ଚର୍ଯ୍ୟ । ଏହା ଆମ ତଥାକଥିତ ବିକାଶର ସ୍ୱରୂପ ।

ପୃଥିବୀର ପ୍ରାୟ ଅଧିକାଂଶ ବଡ ବଡ ବିଶ୍ୱବିଦ୍ୟାଳୟ ବହୁତ କମ୍ ଜମି ଉପରେ ପ୍ରତିଷ୍ଠିତ । ଭୁବନେଶ୍ୱର ଠାରେ ଥିବା 'କିଟସ୍' ବିଶ୍ୱବିଦ୍ୟାଳୟକୁ ପୃଥିବୀର ନୋବେଲ ଲରେଟମାନେ ପରିଦର୍ଶକ ପ୍ରଫେସର ଭାବେ ଆସୁଛନ୍ତି । ବେଦାନ୍ତ ଦଶ ହଜାର ଏକର ଜମି ମାଗିବାରେ ତା'ର ଏକ ନିଓ ଜମିଦାର ହେବାର ପ୍ରବୃତ୍ତି ଅଛି କି ନା, ଆମେ କେବେ ବିଶ୍ଳେଷଣ କରିଥିଲେ କି ବୋଲି ପ୍ରଶ୍ନ ଆସେ...।

ଓଡିଶାରେ ଇସ୍ପାତ କାରଖାନା ପାଇଁ ଦକ୍ଷିଣ କୋରିଆର କଂପାନୀ ପୋସ୍କୋ ମାଗିଥିଲା ପ୍ରାୟ ୫ହଜାର ଏକର ଜମି । ଏ ଜମି ଜଗତସିଂହପୁରର ସମୁଦ୍ର କୂଳକୁ ଲାଗିଛି । ଏଥିରେ ଶହ ଶହ ପାନ ବରଜ ଅଛି । ଝାଉଁ ଜଙ୍ଗଲ ରହିଛି । ଧାନ ଚାଷ ବି ଏଥିରେ ହେଉଛି । ଶିଳ୍ପ ପ୍ରତିଷ୍ଠା ପାଇଁ ଏତେ ଜମି କ'ଣ ହେବ, ଆମେ ବୋଧେ କେବେ ପ୍ରଶ୍ନ କରିନୁ, ଏଇଥିପାଇଁ ଯେ, ପୋସ୍କୋ ଏକ କୋରିଆ ବିଦେଶୀ କମ୍ପାନୀ । ଓଡିଶାର ଏକ ପ୍ରକଳ୍ପରେ ସେ ପ୍ରାୟ ୫୧ ହଜାର କୋଟି ଟଙ୍କା ବିନିଯୋଗ କରିବ । ନିଯୁକ୍ତିର ସୁଅ ଏଠି ଛୁଟିବ । ଲୋକଙ୍କର ଆର୍ଥିକ ଅଭିବୃଦ୍ଧି ଘଟିବ । ପୋସ୍କୋର ପ୍ରବର୍ତ୍ତକମାନେ ଏପରି ସ୍ୱପ୍ନ ଆମକୁ ଦେଖେଇଥିଲେ।

ଜାପାନର ଆୟତନ ବହୁତ କମ୍ । ଏହାର ଜମି ବେଶି ନାହିଁ । ତଥାପି ସେ ଏକ ଶିଳ୍ପୋନ୍ନତ ଦେଶ । ଦକ୍ଷିଣ କୋରିଆରେ ମଧ୍ୟ ସେଇ ଏକା ଅବସ୍ଥା । ଜମି ସେଠି ମିଳୁନି । ବିଶ୍ୱ ଶିଳ୍ପ ଜଗତରେ କୋରିଆ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିସାରିଛି । କମ୍ ଜମିରେ ଯେ ଶିଳ୍ପ ଓ ପ୍ରକଳ୍ପ କରିହେବ, ଜାପାନ ଓ କୋରିଆ ପୃଥିବୀକୁ ଶିଖାଇଛନ୍ତି ।

ଲୋକସଂଖ୍ୟା ତୁଳନାରେ ଭାରତ ବି ବହୁତ ବଡ ଦେଶ ନୁହେଁ । ଶହେ ଏକୋଇଶି କୋଟି ଲୋକଙ୍କ ପାଇଁ ଏଠି ଅଛି ମାତ୍ର ୩୩ ଲକ୍ଷ ବର୍ଗ କି.ମି । ଇଏ ଭାରତର କ୍ଷେତ୍ରଫଳ । ଏଥିରେ ପାହାଡ ଏବଂ ନଦୀ ମଧ୍ୟ ଅଛି । ଭାରତର କ୍ଷେତ୍ରଫଳ ଋଷ, ଆମେରିକା, ଚୀନ, ବ୍ରାଜିଲ ଏବଂ କାନାଡା ତୁଳନାରେ କମ୍ । ସେଠି ଲୋକ ସଂଖ୍ୟା କମ୍, ଜାଗା ବେଶି । ପ୍ରକଳ୍ପ ପାଇଁ ହଜାର ହଜାର ଏକର ଜମି ଦେଇଦେଲେ ବି ସେଠି କିଛି ଫରକ ପଡେନି । ଭାରତରେ କିନ୍ତୁ ଏହାର ପ୍ରଭାବ ପଡୁଛି । ପଡିବା ବି ସ୍ୱଭାବିକ ।

ପୃଥିବୀର ଏଇ ନୂଆ ଜମିଦାରଙ୍କ ଆଖି ପଡିଛି ଆଦିବାସୀ ଅଞ୍ଚଳରେ । କାରଣ ହେଉଛି, ଏଠି ଖଣିଜ ସମ୍ପଦ ଓ ଜଙ୍ଗଲ ସଂପଦ ଅଛି । ହଜାର ହଜାର ଏକର ଜମି ଖାଲି ପଡିଛି । ବିକାଶ ପାଇଁ ବି ଆମେ ଆମ ଖଣି ଏବଂ ଜମି ବିକି ଦେଉଛୁ ଜମିଦାରଙ୍କୁ । ଇଏ ପୁଣି ଜମିଦାରଙ୍କ ଚାହିଦା ମୁତାବକ । ଶହ ଶହ ବର୍ଷ ଧରି ରହୁଥିବା ଆଦିବାସୀଙ୍କ ବିରୋଧୀ ସ୍ୱରକୁ ଆମ ନୀତିନିର୍ଦ୍ଧାରକମାନେ ଶୁଣିପାରନ୍ତି ନାହିଁ । ଆଦିବାସୀଙ୍କ ଦୋଷ ହେଲା, ସେମାନେ ଏପରି ଅଞ୍ଚଳରେ ରହନ୍ତି ଯେଉଁଠି ପ୍ରଗତି ପାଇଁ ଖଣିଜ ସଂପଦ ରହିଛି । ଦୋଷ ତ ନୁହଁ, ଏହା ଯେପରି ତାଙ୍କର ପାପ ।

ଜମି ଦଖଲ ବେଳେ ଆଦିବାସୀଙ୍କ ପ୍ରତିଶ୍ରୁତି ଦିଆଯାଏ, ପ୍ରକଳ୍ପ ହେଲେ ତାଙ୍କୁ ନିଯୁକ୍ତି ମିଳିବ । ଶିକ୍ଷା, ସ୍ୱାସ୍ଥ୍ୟରେ ତାଙ୍କର ଉନ୍ନତି ଆସିବ । ବଞ୍ଚିବା ତାଙ୍କର ସୁଖମୟ ହେଇଯିବ । ପ୍ରକଳ୍ପ ପରେ କିନ୍ତୁ ନୂଆ ଜମିଦାର ଏ ସବୁ ଭୁଲିଯାଏ । ସରକାର ଘୋଷଣା କରିଥିବା ସ୍ୱତନ୍ତ୍ର ଜୋନ୍ ଭିତରେ ସେ ସୁରକ୍ଷିତ ହୋଇରହେ । ପ୍ରତିବାଦର ଶବ୍ଦ ତାହା ପାଖରେ ପହଞ୍ଚିପାରେ ନାହିଁ ଏବଂ କୃଷି ତଥା ଜଙ୍ଗଲ ଉପରେ ପାରମ୍ପରିକ ଭାବେ ନିର୍ଭର କରି ଚଳୁଥିବା ଗରିବ ଆଦିବାସୀଟି ଶେଷରେ ଦିନ ମଜୁରିଆର ଜୀବନଯାପନ କରିବାକୁ ବାଧ୍ୟ ହୁଏ । ପ୍ରତିଦିନ ସକାଳୁ ନିଜକୁ ପଣ୍ୟ ଦ୍ରବ୍ୟ ଭାବେ

ବିକି ଦେବାକୁ ରାସ୍ତା କଡରେ ଛିଡା ହୁଏ । ଇଏ କିଛି ନୂଆ କଥା ନୁହେଁ । ମଧ୍ୟଯୁଗୀୟ ଜମିଦାରୀ ବ୍ୟବସ୍ଥାରେ ମଧ୍ୟ ଜମିହୀନ ପ୍ରଜାଙ୍କ ଅବସ୍ଥା ଠିକ୍ ଏଇଆ ହିଁ ଥିଲା... ।

ଜଗତସିଂହପୁର ଢିଙ୍କିଆରେ ଛୋଟ ପିଲାମାନେ ଖରା ଏବଂ ବର୍ଷାରେ ବସି ପୋସ୍କୋ ପାଇଁ ଜମି ଅଧିଗ୍ରହଣକୁ ବିରୁଦ୍ଧ କଲେ । ଏପରି କାହିଁକି ବୋଲି ପ୍ରଶ୍ନ କଲେ, ଉତ୍ତର ମିଳିଲା - ନିଜ ଜମି ଏବଂ ଭିଟାମାଟି ନଦେବା ପାଇଁ ପୋସ୍କୋ ବିରୋଧୀ ସଂଗ୍ରାମରେ ସେମାନେ ତାଙ୍କ ବଡମାନଙ୍କୁ ସାହାଯ୍ୟ କରୁଛନ୍ତି । ନିଜ ଭବିଷ୍ୟତ ପାଇଁ ବି ଲଢୁଛନ୍ତି । ପାନ, ମୀନ, ଧାନ ହେଉଛି ତାଙ୍କର ବଞ୍ଚିବା ପାଇଁ ସ୍ଥାୟୀ ପନ୍ଥା । ଜମି ଏବଂ ପାନବରଜ ବିକି ଦେଇ ସେଥିରୁ ପାଉଥିବା କିଛି ଟଙ୍କାର କ୍ଷତି ପୂରଣ ହୁଏତ କିଛି ଦିନ ପରେ ଶେଷ ହୋଇଯିବ । ତା'ପରେ ସେମାନେ ବଞ୍ଚିବେ କିପରି, ଏପରି ପାଲଟା ପ୍ରଶ୍ନ ସେମାନେ ବି କରୁଥିଲେ ।

ଆଶ୍ଚର୍ଯ୍ୟ ଯେ, ଭାରତରେ ଗଣତନ୍ତ୍ର ଏବଂ ଗଣତାନ୍ତ୍ରିକ ପୁଞ୍ଜିବାଦରୁ ଏ ଦେଶକୁ କେବଳ ନୂଆ ଏକ ସାମନ୍ତବାଦୀ ଅର୍ଥନୀତି ଏଠି ଏବେ ଆସିନି । ରାଜନୀତିରେ ମଧ୍ୟ ଏଇ ସାମନ୍ତବାଦ ଆସିଲାଣି । କୁହାଯାଏ, ଭାରତର ରାଜନୀତି ଏଠି ମାତ୍ର ଚାରିଶହ ରାଜନୈତିକ ପରିବାର ଭିତରେ ସୀମାବଦ୍ଧ ହୋଇରହିଛି ।

ଜମିଦାରୀ ସାମନ୍ତବାଦରେ କେବଳ ଅର୍ଥ ସର୍ବସ୍ୱ ହୋଇଥାଏ । ଅର୍ଥର ବଳକୁ ସର୍ବଶ୍ରେଷ୍ଠ ବଳ ବୋଲି ଧରାଯାଇଥାଏ । ପ୍ରତିଭାର ମୂଲ୍ୟ ଏଠି କମ୍ ଥାଏ...। ଇଏ ଏବେ ଆମ ଭାରତ ପାଇଁ ପ୍ରଯୁଜ୍ୟ ।

ଆଶଙ୍କା ହୁଏ, ଭାରତରେ ଆର୍ଥିକ ଏବଂ ରାଜନୈତିକ ଜମିଦାରୀ ଯେତେ ବଢିଚାଲିବ, ଏହା ସେତେ ସାମାଜିକ ଅସ୍ଥିରତାକୁ ଜନ୍ମ ଦେବ । ଦୁର୍ବଳର ବଞ୍ଚିବା ନେଇ ପ୍ରଶ୍ନ ଆସିବ । ଭାରତ ବର୍ଷ ଏହାକୁ ସେତେବେଳେ ସହ୍ୟ କରିପାରିବ କି ନା ଏହା ଏବେ ଏକ ବଡ ପ୍ରଶ୍ନବାଚୀ ।

ସୁତରାଂ ଦୁଇଟି ସମାନ୍ତରାଳ ଅର୍ଥନୀତି ସୃଷ୍ଟି କରୁଥିବା ଏଇ ନୂଆ ଜମିଦାରଙ୍କ ପାଇଁ ଏବେ ସତର୍କ ରହିବା ଜରୁରୀ । ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବି ଦିନେ ଏଠି ନିଜ ଲାଭ ପଇସାରୁ ଚା ବଗିଚା କିଣିଥିଲା ଏବଂ ପରେ ଯାହା ଘଟିଗଲା, ଏହା ଭାରତର ଇତିହାସ... ।



# ପଛୁଆ ପାଇଁ ପ୍ରତିଯୋଗିତା

ଓଡିଶାର କନ୍ଧମାଳ ଦଙ୍ଗାରେ ସାରା ଭାରତରେ ପ୍ରଶ୍ନଟିଏ ଆସିଥିଲା ,ଏହି ଦଙ୍ଗାର କାରଣ କେବଳ ଧାର୍ମିକ ଅସହିଷ୍ଣୁତା ନା ଅନ୍ୟ କିଛି ? ସାଂଗଠନିକ କାର୍ଯ୍ୟରେ ଏ ଲେଖକ ଓଡିଶା ବାହାରକୁ ଗଲାବେଳେ ଅନେକ ବନ୍ଧୁ ବି ଏଇ ପ୍ରଶ୍ନ କରିଥିଲେ, 'ହ୍ୱାଟ୍ ଇଜ୍ ବିୟଣ୍ଡ କନ୍ଧମାଳ ?' କନ୍ଧମାଳ ଛଡା ଆଉ କିଛି ଅଛି କି ?

ପ୍ରକୃତରେ କନ୍ଧମାଳ ଏକ ଘଟଣା ନୁହେଁ । ଏହା ଏକ ବୃହତ ଘଟଣା ପ୍ରବାହର ପ୍ରତିଫଳନ ମାତ୍ର । ଏହି ପ୍ରବାହର ମୂଳ ଆଧାର ହେଉଛି ପଛୁଆ ବା ବ୍ୟାକ୍ୱାର୍ଡ ହେବା ପାଇଁ ଏଠି ଚାଲିଥିବା ତୀବ୍ର ପ୍ରତିଯୋଗିତା । ଏହି ପ୍ରତିଯୋଗିତାର ପ୍ରତିଯୋଗୀ କୌଣସି ବ୍ୟକ୍ତି କିମ୍ବା ଶ୍ରେଣୀ ନୁହଁନ୍ତି । ଜାତି ଆଉ ଜାତିକୁ ନେଇ ଏଠି ପ୍ରତିଯୋଗିତା ଚାଲିଛି ଏବଂ ବଡ କଥା ହେଲା, ଏଠାରେ ରାଜନୈତିକ ଶ୍ରେଣୀ ଏ ପ୍ରକାର ପ୍ରତିଯୋଗିତାକୁ ବାହାବା ଦେଉଛନ୍ତି ।

ଭାରତର ସ୍ୱାଧୀନତା ପୂର୍ବରୁ ନୀଚ ଜାତି ହେବାକୁ ଏଠି ପ୍ରତିଯୋଗିତା ନ ଥିଲା । ନିଜକୁ ଅନୁନ୍ନତ କିମ୍ବା ଅସ୍ପୃଶ୍ୟ କହିବାକୁ ଲାଜ ଲାଗୁଥିଲା ଏବଂ ପଛୁଆ ଜାତିକୁ ନେଇ ହୀନମନ୍ୟତାର ଏକ କମ୍ପ୍ଲେକ୍ସ ଥିଲା ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତରେ ଆରମ୍ଭ ହୋଇଥିବା ସଂସ୍କୃତିକରଣ ବା ସାଂକ୍ରିଟିଜାଇସେନ୍‌ର କାରଣ ଥିଲା ଏଇ ହୀନମନ୍ୟତା ଭାବ । ସଂସ୍କୃତିକରଣ ଅର୍ଥ ହେଲା, ନୀଚ ଜାତିର ଲୋକମାନେ ଉଚ୍ଚ ଜାତିର ଚାଲିଚଳନ, ଅଭ୍ୟାସ ଏବଂ ପୂଜାନୀତିକୁ ଶିଖିବାକୁ ଚାହିଁଲେ । ସେତେବେଳେ ଜାତି ଜାତି ଭିତରେ ସାମାଜିକ ସ୍ଥିତିର ପରିବର୍ତ୍ତନ ପାଇଁ ଯେଉଁ ପ୍ରତିଯୋଗିତା ଆସିଲା ସେଇଟା କେବଳ ଉଚ୍ଚ ଜାତି ହେବାକୁ ପ୍ରତିଯୋଗିତା ଥିଲା । ଖାସ୍ ସେଥିପାଇଁ ୧୯୦୧ ରୁ ୧୯୩୧ ଭିତରେ ହୋଇଥିବା ଚାରୋଟି ଜାତିଭିତ୍ତିକ ଜନଗଣନାରେ ଅନେକ ପଛୁଆ ଜାତି ଉଚ୍ଚ ଜାତିରେ ନିଜକୁ ପଞ୍ଜୀକୃତ କରି ନେଇଥିଲେ ।

ସ୍ୱାଧୀନତା ପରେ କିନ୍ତୁ କିଛି ଜାତି ଭିତରେ ଥିବା ସାମାଜିକ ସ୍ଥିତିର ଯେଉଁ ପରିବର୍ତ୍ତନ ହେଲା ତାହା ସ୍ୱାଧୀନତା ପୂର୍ବର ପରିବର୍ତ୍ତନ ଠାରୁ ଥିଲା ଭିନ୍ନ । ଏହି

ପରିବର୍ତ୍ତନର କାରଣ ଥିଲା, ଜାତିଭିତ୍ତିକ ସଂରକ୍ଷଣ ବ୍ୟବସ୍ଥା । ସଂରକ୍ଷଣ ନେଇ ଯୁକ୍ତି ହେଲା, ଏ ଦେଶରେ ସଂପତ୍ତି ସୀମିତ ଏବଂ ଏଇ ସୀମିତ ସଂପତ୍ତିକୁ ସମ ତଥା ଆନୁପାତିକ ଭାବେ ବାଣ୍ଟି ଦେବାର ଦାୟିତ୍ୱ ହେଉଛି ରାଷ୍ଟ୍ରର । ହଜାର ହଜାର ବର୍ଷ ଧରି ନିଷ୍ପେସିତ ହୋଇଥିବା ଦଳିତମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେବା ବି ଉଚିତ । ଏଥିରେ କେବଳ ସମତାପୂର୍ଣ୍ଣ ତଥା ଭଦ୍ର ସମାଜଟିଏ ଗଠିତ ହୋଇପାରିବ । ଏ ଯୁକ୍ତିଟି ବଳିଷ୍ଠ ଥିଲା ।

ଭାରତର ସମ୍ବିଧାନରେ ସଂରକ୍ଷଣ ମାତ୍ର ଦଶବର୍ଷ ରହିବ ବୋଲି ଲେଖା ଥିଲା । ଅର୍ଥାତ୍ ୧୯୬୦ ମସିହା ସୁଦ୍ଧା ଏହା ଉଠିଯିବା କଥା । କିନ୍ତୁ ରାଜନେତାମାନେ ଏହାକୁ ଏକ ନିର୍ବାଚନ ଜିତିବାର ଅସ୍ତ୍ର ବୋଲି ଭାବିନେଲେ ଏବଂ ଏହାକୁ ନେଇ କିଛି ପପୁଲିଷ୍ଟ ବା ଜନପ୍ରିୟ ପ୍ରସଙ୍ଗ ସୃଷ୍ଟି ହେଲା । ସତ କଥା ହେଲା ଏ ଦେଶର ସଂରକ୍ଷଣ ଏକ ଲୋଭନୀୟ ବ୍ୟବସ୍ଥା । ଏଥିରେ ସଂରକ୍ଷିତମାନଙ୍କ ପାଇଁ ସରକାରୀ ଦପ୍ତରରେ ଚାକିରି ସହଜରେ ମିଳିଯାଏ । ଶିକ୍ଷାନୁଷ୍ଠାନରେ ନାଁ ଲେଖା ସହଜ ହୁଏ । ସାମାଜିକ ତଥା ଆର୍ଥିକ ସୁବିଧା ଏଥିରେ ବେଶି । ସୁବିଧା ପାଇଁ ମେଧା ଏଥିରେ ଏକ ଗୌଣ ଆବଶ୍ୟକତା । ସୁତରାଂ ପଛୁଆପଣ ଏକ ହୀନମନ୍ୟତାର ପ୍ରଶ୍ନ ସହ ସଂପୃକ୍ତ ହୋଇଥିଲେ ବି ଭାରତ ବର୍ଷରେ ଅନେକ ଉଚ୍ଚ ଜାତିର ଲୋକେ ପଛୁଆ ହେବାକୁ ପ୍ରତିଯୋଗିତା ଆରମ୍ଭ କରିଦେଇଥିଲେ ଏବଂ ସଂରକ୍ଷଣରେ ଭୋଟ ପାଇବାର ଗନ୍ଧ ପାଇପାରିଥିବା ରାଜନେତାମାନେ ଏଇ ସଂରକ୍ଷଣକୁ ପ୍ରତି ଦଶ ବର୍ଷରେ ନବୀକରଣ କରି ଚାଲିଲେ । ସେ ନବୀକରଣ ପ୍ରକ୍ରିୟା ଏବେ ବି ଚାଲିଛି ।

ପ୍ରତିଯୋଗିତାର କିଛି ଲକ୍ଷଣ ରହିଛି । ସେ ଲକ୍ଷଣ ହେଲା, କୌଣସି ଏକ ପ୍ରତିଯୋଗିତାକୁ ନିରୁପିତ ସୀମା ଭିତରେ ବାନ୍ଧି ରଖିବା ସବୁ ସମୟରେ ସହଜ ହୋଇନଥାଏ । ବେଳେବେଳେ ହାରିଯିବାର ଆଶଙ୍କା ଆସିଲେ ହିଂସା ସୃଷ୍ଟି ହୁଏ । କିଛି ଉଚ୍ଚ ଜାତିର ଲୋକେ ନୀଚ ଜାତିକୁ ପଶି ଆସିଲେ, ନୀଚ ଜାତିଟି ତାର ସୀମା ସୁରକ୍ଷିତ ରଖିବାକୁ ଶକ୍ତ ଭାବେ ଏକାଠି ହୋଇଯାଏ । ଏଇଥିପାଇଁ ଯେ ନିଜ ସ୍ଥାନକୁ ଅନ୍ୟକୁ ଛାଡିଦେଲେ ନିଜେ ପାଇଥିବା ସୁବିଧା ଅନ୍ୟ ସହ ବାଣ୍ଟି ଦେବା ସହ ସମାନ ବୋଲି ଅନେକଙ୍କର ଧାରଣା । ଏଇ ଧାରଣା ଏବେ ସାମାଜିକ ଅସ୍ଥିରତାର କାରଣ ।

ପଛୁଆ ହେବାକୁ ଚାଲିଥିବା ପ୍ରତିଯୋଗିତାର ସଂପ୍ରତି ଶିକାର ହୋଇଛନ୍ତି କନ୍ଧମାଳର ପାଣ ଏବଂ କନ୍ଧମାନେ । କନ୍ଧମାଳର ପାଣ ସଂପ୍ରଦାୟ ଏକ ଅନୁସୂଚିତ

ଜାତି । ଏମାନେ ସମସ୍ତେ ପ୍ରାୟ ଶିକ୍ଷିତ ଏବଂ ସଂଗଠିତ । ଆର୍ଥିକ କ୍ଷେତ୍ରରେ ଏମାନେ କନ୍ଧଙ୍କ ଠାରୁ ସମୃଦ୍ଧ ଏବଂ ଅଧିକାଂଶ ପାଣ ହେଉଛନ୍ତି ଧର୍ମାନ୍ତରୀକରଣ ହୋଇଥିବା ଖ୍ରୀଷ୍ଟିୟାନ୍ ।

ଧର୍ମାନ୍ତରୀକରଣ ଖ୍ରୀଷ୍ଟିୟାନ୍ ପାଣଙ୍କର ଅସନ୍ତୋଷ ହେଲା, ଭାରତର ଜାତି ଭିତ୍ତିକ ସଂରକ୍ଷଣ ଆଇନ ଏମାନଙ୍କ ପ୍ରତି ଅନୁକୂଳ ହେଉନି । ଆଇନରେ ଅଛି, ଅନୁସୂଚିତ ଜାତିର ବ୍ୟକ୍ତିଟି ଧର୍ମ ପରିବର୍ତ୍ତନ କରି ଅନ୍ୟ ଧର୍ମକୁ ଚାଲିଗଲେ ସେ ସଂରକ୍ଷଣ ସୁବିଧାରୁ ବଞ୍ଚିତ ହୁଏ । ଆଦିବାସୀଙ୍କ ପ୍ରତି କିନ୍ତୁ ଏ କଟକଣା ନାହିଁ । ପାଣମାନେ ତେଣୁ 'କୁଇ ଭାଷା' କହୁଥିବା ଆଦିବାସୀ ହେବାକୁ ଚାହାଁନ୍ତି । କେତେକ ଏ ସଂପର୍କରେ କୁଆଡେ ଜାତି ସାର୍ଟିଫିକେଟ ପାଇ ସାରିଛନ୍ତି ।

ପାଣଙ୍କର ଏ ପ୍ରତିଯୋଗିତାକୁ କନ୍ଧମାନେ ବିରୁଦ୍ଧ କରୁଛନ୍ତି । ପ୍ରତିଯୋଗିତାର କ୍ଷେତ୍ର ବ୍ୟାପକ କରିବାକୁ କୌଣସି ଜାତି କେବେ ଇଚ୍ଛା କରେନି । ଏହା ଏକ ସ୍ୱାଭାବିକ ପ୍ରକ୍ରିୟା । ସ୍ୱିଡେନର ଜଣେ ବିଖ୍ୟାତ ନୃତତ୍ତ୍ୱବିତ୍ ଷ୍ଟିଫେନ୍ ମୋଲୁଣ୍ଡଙ୍କ ଏକ ଚମତ୍କାର ବହି ପଢ଼ିବାକୁ ଏ ଲେଖକ ଏବେ ସୁଯୋଗ ପାଇଲା । ବହିର ନାଁ ହେଉଛି 'ଫାଷ୍ଟ ଉଇ ଆର ପିପୁଲ' । ଭାରତର ଉତ୍ତରପ୍ରଦେଶରେ ଥିବା କୋରିସ୍ ନାମକ ଏକ ଜାତିର ସାମାଜିକ ସ୍ଥିତି କିପରି ବାରମ୍ବାର ପରିବର୍ତ୍ତିତ ହେଉଛି ତାର ବର୍ଣ୍ଣନା ମୋଲୁଣ୍ଡ ସାହେବ ଏଥିରେ କରିଛନ୍ତି ।

କୋରସ୍‌ମାନେ ପ୍ରଥମେ ଏକ ଅସ୍ପୃଶ୍ୟ ଦଳିତ ଜାତି ଥିଲେ । ନିଜ ଜାତିର ସାମାଜିକ ସ୍ଥିତି ନେଇ ସେମାନେ ଖୁସି ନଥିଲେ । ଅସ୍ପୃଶ୍ୟତା ତାଙ୍କ ପାଇଁ ଏକ ସାମାଜିକ କଳଙ୍କ ଥିଲା । କୋରସ୍ ଜାତିର ନେତାମାନେ ଆବେଦନ କରି ଜାତି ଭିତ୍ତିକ ଜନଗଣନାରେ ଉଚ୍ଚ ଜାତି ହୋଇଯାଇଥିଲେ ।

ସ୍ୱାଧୀନତା ପରେ କିନ୍ତୁ ଏ ଜାତିର ନୂଆ ପିଢ଼ିର ନେତାମାନେ ନିଜ ଜାତିର ସ୍ଥିତି ପରିବର୍ତ୍ତନକୁ ପସନ୍ଦ କଲେନି । ଦଳିତ ନହେବା ଯୋଗୁ ଯେ ସେମାନଙ୍କୁ ଅନେକ ଆର୍ଥିକ ସୁବିଧା ହରାଇବାକୁ ପଡୁଛି, ସେମାନେ ଯୁକ୍ତି କଲେ । କୋରିସ୍ ଏବେ ଆଉ ଓବିସି ଭିତରେ ନାହାନ୍ତି । ସେମାନେ ଏବେ ଅନୁସୂଚିତ ଜାତି ବା ସିଡୁଲଡ୍ କାଷ୍ଟ ।

ପଛୁଆ ହେବାକୁ ଚାଲିଥିବା ପ୍ରତିଯୋଗିତାରେ କୋରିସ କେବଳ ଏଠି ଏକମାତ୍ର ଜାତି ନୁହେଁ । ଅନେକ ଉଚ୍ଚ ଜାତି ଏବେ ତଳକୁ ଖସି ଯିବାକୁ ସଂପ୍ରତି ଲାଇନରେ ଅଛନ୍ତି ।

ରାଜସ୍ଥାନର 'ଗୁଜ୍ଜର' ଆନ୍ଦୋଳନ କଥା ଏ ଆଲୋଚନାକୁ ଏଇଠି ଅଣାଯାଇପାରେ । ଗୁଜ୍ଜରମାନେ ଅନ୍ୟାନ୍ୟ ପଛୁଆ ବର୍ଗ ବା ଓବିସି । ସେମାନେ ଏବେ ଆଦିବାସୀ ହେବାକୁ ଦାବି କରୁଛନ୍ତି । ଏଥିପାଇଁ ସେମାନେ ରାସ୍ତାରୋକ କରୁଛନ୍ତି ଏବଂ ଆନ୍ଦୋଳନ କଲାବେଳେ ହିଂସ୍ର ବି ହୋଇଯାଉଛନ୍ତି । ଯଦିଓ ଓବିସି ପାଇଁ ସଂରକ୍ଷଣ ଏଠି ଅଛି, ରାଜସ୍ଥାନର ଗୁଜ୍ଜରମାନେ କିନ୍ତୁ ଓବିସିରେ ତାଲିକାରେ ଥିବା ଏଠାରେ ଜାଠଙ୍କ ସହ ପ୍ରତିଯୋଗିତା କରିବାକୁ ଚାହାନ୍ତି ନାହିଁ । ଜାଠ୍‌ମାନେ ଗୁଜ୍ଜରଙ୍କ ଠାରୁ ସମୃଦ୍ଧ ଓ ଶିକ୍ଷିତ । ଆଦିବାସୀ ହୋଇଗଲେ ପ୍ରତିଯୋଗିତାର କ୍ଷେତ୍ର ତାଙ୍କ ପାଇଁ ସହଜ ହୋଇଯିବ ବୋଲି ଗୁଜ୍ଜରଙ୍କର ବିଶ୍ୱାସ ।

ଗୁଜ୍ଜରଙ୍କ ଏଇ ଆନ୍ଦୋଳନକୁ ପ୍ରତିରୋଧ କରନ୍ତି ରାଜସ୍ଥାନର ମୀନା ସଂପ୍ରଦାୟର ଆଦିବାସୀ । ମୀନା ଗୁଜ୍ଜରଙ୍କ ଠାରୁ କମ୍ ଶିକ୍ଷିତ ଏବଂ କମ୍ ସଂଗଠିତ । ଗୁଜ୍ଜରମାନେ ଆଦିବାସୀ ହୋଇଗଲେ ମୀନାମାନେ ତାଙ୍କ ସହ ପ୍ରତିଯୋଗିତା କରିପାରିବେ ନାହିଁ ବୋଲି ମୀନାଙ୍କର ଭୟ ଆସୁଛି ।

ସୁତରାଂ ଭାରତର ବିଭିନ୍ନ ରାଜ୍ୟରେ ବର୍ତ୍ତମାନ ହେଉଥିବା ଜାଠ, ଗୁଜ୍ଜର, ମୀନା, ପଟେଲ, କନ୍ଧ ଏବଂ ପାଣ ଭିତରେ ବିବାଦ ତଥା ହିଂସ୍ର ଅଶାନ୍ତି କେବଳ ପଛୁଆ ଜାତି ହେବା ପାଇଁ ଉଦ୍ଦିଷ୍ଟ ପ୍ରତିଯୋଗିତାରୁ ହିଁ ସୃଷ୍ଟି । ନିଜକୁ ଛୋଟ କରିଦେଲେ ଯଦି ଆର୍ଥିକ ତଥା ସାମାଜିକ ସୁବିଧା ମିଳୁଛି, ବଡ ଜାତିର ଏକ ମିଛ ଆତ୍ମମର୍ଯ୍ୟାଦା ଉପରେ ଭରସା ରଖି ଭୋକରେ ବଞ୍ଚି ରହିବାର ମାନେ କ'ଣ, ଏପରି ପ୍ରଶ୍ନ ମଧ୍ୟ ଆସେ ।

ଆଶ୍ଚର୍ଯ୍ୟ କଥା ହେଲା, ଭାରତ ବର୍ଷରେ କିଛି ସଂଖ୍ୟାଲଘୁ ଧାର୍ମିକ ଗୋଷ୍ଠୀ ମଧ୍ୟ ସଂରକ୍ଷଣ ପାଇଁ ପଛୁଆ ବର୍ଗ ହେବାକୁ ଦାବି କଲାଣି । ଏ ସଂପ୍ରଦାୟ ଦିନେ ଭାରତ ବର୍ଷକୁ ଶାସନ କରୁଥିଲେ । ଏଥିରେ ଖ୍ରୀଷ୍ଟିୟାନ ଏବଂ ମୁସଲମାନ ସଂପୃକ୍ତ । ଜାତି ଯାଉ ପଛେ ପେଟ ପୁରୁ, ଏହା ଏବେ ପ୍ରାୟ ସବୁ ଜାତିର ସ୍ଲୋଗାନ । କିନ୍ତୁ ଜାତି ଗଲେବି ପେଟ ପୁରୁଛି କି ନା, ଏହା ମଧ୍ୟ ଏକ ବିବାଦୀୟ ବିଷୟ ।

ନିଜ ପ୍ରତିଯୋଗିତାର ସ୍ଥାନ ଅନ୍ୟକୁ ଛାଡି ନଦେବାର ଯେଉଁ କଥାଟି ଏବେ ବିଚାରକୁ ଆସିଛି, ସେ ହେଉଛି ଆଦିବାସୀଙ୍କର ସଚେତନତା ହାରରେ ବୃଦ୍ଧି । ଆଦିବାସୀଙ୍କ ସଂସ୍କୃତି ଭିନ୍ନ, ଭାଷା ଭିନ୍ନ, ପୂଜା ପାଇଁ ଦିଅଁ ଦେବତା ବି ଭିନ୍ନ । ଅନେକ ଆଦିବାସୀ ହିନ୍ଦୁ ବି ନୁହନ୍ତି । ସ୍ୱାଧୀନତା ପୂର୍ବରୁ ଏମାନଙ୍କ ସଂସ୍କୃତିକୁ ଗ୍ରହଣ କରି ଯଦି

କିଏ ବାହାରୁ ପଶି ଆସୁଥିଲା ଏମାନେ ତାଙ୍କୁ ସହଜରେ ଛାଡି ଦେଉଥିଲେ । ବର୍ତ୍ତମାନ କିନ୍ତୁ ପରିସ୍ଥିତି ନିଆରା । ଆଦିବାସୀମାନେ ସମାଜର ମୁଖ୍ୟ ସ୍ରୋତରେ ଏବେ ମିଶି ସାରିଲେଣି । ଏମାନଙ୍କ ଭିତରେ ଡାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ପ୍ରଶାସନିକ ସେବାର ଅଧିକାରୀ ତଥା ପ୍ରଭାବଶାଳୀ ରାଜନେତାମାନେ ଅଛନ୍ତି । ଭାରତରେ ଅନ୍ୟ ଜାତିର ମଧ୍ୟବର୍ଗଙ୍କ ପରି ଆଦିବାସୀଙ୍କ ଭିତରେ ବି ମଧ୍ୟବର୍ଗଟିଏ ସୃଷ୍ଟି ହୋଇଗଲାଣି । ଏମାନେ ସଂପ୍ରତି ନିଜ ସ୍ୱାର୍ଥ ପ୍ରତି ବେଶ୍ ସଚେତନ ଏବଂ ନିଜ ପରିଚୟ ତଥା ସଂସ୍କୃତିର ସୁରକ୍ଷା ପାଇଁ ବେଶ୍ ଯତ୍ନବାନ । ସୁତରାଂ ସରଳ ଆଦିବାସୀଙ୍କ ସ୍ୱାର୍ଥକୁ ବାହାରୁ ଆସି କିଏ ଦଖଲ କରି ନେଇଯିବାର ବେଳ ଆଉ ନାହିଁ । ଏହାର ପ୍ରତିରୋଧ ହେବ, ହେଉଛି, ଏହା ସ୍ୱାଭାବିକ ।

ଶେଷକଥା ହେଲା, ଭାରତର ଜାତି ଭିତ୍ତିକ ସଂରକ୍ଷଣ ବ୍ୟବସ୍ଥା ସଂପ୍ରତି ଏକ ଭୟଙ୍କର ଅସୁରଟିଏ ହୋଇଯାଇଛି । ଏ ଅସୁର ଆଉ ବୋତଲ ଭିତରେ ନାହିଁ । ଏହା ବାହାରକୁ ଚାଲି ଆସିଛି । ଏହାକୁ ନିୟନ୍ତ୍ରଣରେ ରଖିବା ଏବେ ଦରକାର । ଓବିସିର ସ୍ୱଚ୍ଛଳ ବର୍ଗ ବା କ୍ରିମି ଲେୟାର ତତ୍ତ୍ୱ ବି ଜାତି ଏବଂ ଜନଜାତି ଭିତରେ ଆସିବା ଉଚିତ । ନଚେତ ପଛୁଆବର୍ଗ ପାଇଁ ପ୍ରତିଯୋଗିତାରେ ଅନେକ କନ୍ଧମାଳ ଏଠି ସୃଷ୍ଟି ହେଉଥିବ । ରାଜସ୍ଥାନର ମୀନା ଗୁଜ୍ଜର ଆନ୍ଦୋଳନ ଚାଲୁଥିବ । ଗୁଜୁରାଟର ଧନୀ ପଟେଲମାନେ ପଛୁଆ ବର୍ଗରେ ସାମିଲ ହେବାକୁ ହିଂସାତ୍ମକ ବିଦ୍ରୋହ କରୁଥିବେ । ସ୍ୱାଧୀନତାର ଛଅ ଦଶନ୍ଧି ପରେ ବି ଆମେ ଏଠି ବ୍ୟାକ୍‌ୱାର୍ଡ ବା ପଛୁଆପଣ ନିମନ୍ତେ ପ୍ରତିଯୋଗିତା କରୁଛୁ, ଏହା ହିଁ ଆଶ୍ଚର୍ଯ୍ୟ ।

❑❑❑

# ପଦ ମର୍ଯ୍ୟାଦା

**କୌ**ଣସି ଏକ ସାମ୍ବିଧାନିକ ଉଚ୍ଚ ପଦବିରେ ନିଯୁକ୍ତି ଯଦି ରାଜନୀତିରୁ ଉର୍ଦ୍ଧ୍ୱରେ ନ ରୁହେ ସେତେବେଳେ ସେ ନିଯୁକ୍ତି ନେଇ ସନ୍ଦେହ ସୃଷ୍ଟି ହୁଏ । ଶାସନ ସେବେ ପ୍ରଭାବିତ ହୁଏ । ସମସ୍ତ ସାମ୍ବିଧାନିକ ପଦାଧିକାରୀ ଯେ ସବୁ ସନ୍ଦେହରୁ ଉର୍ଦ୍ଧ୍ୱରେ ରୁହନ୍ତୁ, ଏହା ସାଧାରଣ ଜନତା ଚାହେଁ-ଠିକ୍ ଯେମିତି ସିଜରଙ୍କ ସ୍ତ୍ରୀ ପରି ।

ଏଇ କିଛି ବର୍ଷ ହେଲା ପ୍ରାୟ କିଛି ସାମ୍ବିଧାନିକ ଏବଂ ଷ୍ଟାଚୁଟାରୀ ଅନୁଷ୍ଠାନର ଉଚ୍ଚ ପଦବୀର ନିଯୁକ୍ତି ବେଳେ କିଛି ନା କିଛି ବିବାଦ ଦେଖାଦେଉଛି । ପକ୍ଷପାତିତାର ଅଭିଯୋଗ ଆସୁଛି । ଦକ୍ଷତା ଅପେକ୍ଷା ଅନୁଗତ୍ୟକୁ ବେଶି ପ୍ରାଧାନ୍ୟ ଦିଆଯାଉଛି, ଏପରି ପ୍ରଶ୍ନ ମଧ୍ୟ ହେଉଛି । ଏଇ ଯେପରି ଭାରତର ମୁଖ୍ୟ ଭିଜିଲାନ୍ସ କମିଶନର ପିଜେ ଥୋମାସ୍‌ଙ୍କ ନିଯୁକ୍ତି ନେଇ ଚର୍ଚ୍ଚା ଗତ ୟୁପିଏ ଶାସନ ବେଳେ ଚାଲିଥିଲା ।

ଭାରତର ସତର୍କତା ଆୟୋଗ ବା ଭିଜିଲାନ୍ସ କମିଶନ ଏ ଦେଶର ଏକ ଗୁରୁତ୍ୱପୂର୍ଣ୍ଣ ଦୁର୍ନୀତି ନିବାରଣ ସଂସ୍ଥା । ପ୍ରଶାସନିକ ଦୁର୍ନୀତି ରୋକିବାରେ ଏ ଆୟୋଗର ଭୂମିକା ସାଂପ୍ରତିକ ସମୟରେ ବେଶ୍ ବ୍ୟାପକ ହୋଇଯାଇଛି । ବ୍ୟାପକ ହୋଇଯାଇଛି ଏଥିପାଇଁ ଯେ ଭାରତୀୟ ଅମଲାତନ୍ତ୍ରରେ ଦୁର୍ନୀତି ଏବେ ପ୍ରାୟ ଯେମିତି ଶେଷ ସୀମାରେ ପହଞ୍ଚି ଯାଇଛି । ପିଅନ ଠାରୁ ମୁଖ୍ୟ ଶାସନ ସଚିବଙ୍କ ପର୍ଯ୍ୟନ୍ତ ଅନେକ ଦୁର୍ନୀତିରେ ସଂପ୍ରତି ଲିପ୍ତ । ଏଇ କିଛି ବର୍ଷ ତଳେ ଉତ୍ତରପ୍ରଦେଶର ମୁଖ୍ୟ ଶାସନ ସଚିବ ନୀରା ଯାଦବଙ୍କୁ ଦୁର୍ନୀତି ଅଭିଯୋଗରେ ଚାରିବର୍ଷ ଜେଲଦଣ୍ଡ ମିଳିଲା । ନୀରା ଦଣ୍ଡ କଥା ଶୁଣୁ ଶୁଣୁ କୋର୍ଟ ରୁମ୍‌ରେ କଇଁ କଇଁ ହୋଇ କାନ୍ଦିଲେ । ଜଣେ ମୁଖ୍ୟ ଶାସନ ସଚିବଙ୍କୁ ଦୁର୍ନୀତିଦୋଷରେ ଜେଲ ଶାସ୍ତି ମିଳିବା ଆଧୁନିକ ଭାରତ ଇତିହାସରେ ସମ୍ଭବତଃ ପ୍ରଥମ ଘଟଣା । ଶ୍ରୀମତୀ ଯାଦବ ଚାକିରିରୁ ସ୍ୱେଚ୍ଛାକୃତ ଅବସର ନେଇ ଭାରତୀୟ ଜନତା ପାର୍ଟିରେ ଯୋଗଦେଇଥିଲେ । ଏ ଖବର ଗଣମାଧ୍ୟମରେ ଆସିଥିଲା ।

ସୁତରାଂ ବର୍ତ୍ତମାନର ପରିଦୃଶ୍ୟରେ ଭାରତର ମୁଖ୍ୟ ଭିଜିଲାନ୍ସ କମିଶନର ପଦବୀ ଏକ ପ୍ରଭାବଶାଳୀ ପଦବି । ଏଇ ପଦବିକୁ ନେଇ ଯଦି ତିଳେ ମାତ୍ର ସନ୍ଦେହ ରହେ ଦୁର୍ନୀତି ନିବାରଣ ପାଇଁ ଏହା ଶୁଭଙ୍କର ନୁହେଁ । ଭାରତର ସିଭିସି ଭାବେ ପିଜି ଥୋମାସଙ୍କ ଚାରିପଟେ ଥିବା ସନ୍ଦେହ ବଳୟର କିଛି କଥା ଏ ଆଲୋଚନାକୁ ଅଣାଯାଇପାରେ ।

ସିଭିସି ହେବା ପୂର୍ବରୁ ଥୋମାସ୍ ସାହେବ କେନ୍ଦ୍ର ଟେଲିକମ୍ ବିଭାଗର ସଚିବ ଥିଲେ । ସେ ଜଣେ କେରଳ କ୍ୟାଡରର ଆଇଏଏସ୍ । କେରଳରେ ଥିବା ବେଳେ ଥୋମାସଙ୍କ ବିରୁଦ୍ଧରେ ଦୁନୀତି ଅଭିଯୋଗ ଥିଲା । ପାମୋଲିନ୍ ତେଲ ଦୁର୍ନୀତିରେ ଥୋମାସ୍‌ଙ୍କ ନାଁ ଥିଲା । ତାଙ୍କ ବିରୁଦ୍ଧରେ ଅଭିଯୋଗ ଫର୍ଦ୍ଦ ବି ଦାଖଲ ହୋଇଥିଲା । ସେ ସେତେବେଳେ କେରଳର ଖାଦ୍ୟ ଏବଂ ଯୋଗାଣ ବିଭାଗର ସଚିବ ଥିଲେ । କେ.କରୁଣାକରନ ଥିଲେ କେରଳର ମୁଖ୍ୟମନ୍ତ୍ରୀ । ଇଏ ୧୯୯୧-୯୨ ମସିହାର କଥା । ତତ୍କାଳୀନ ମୁଖ୍ୟମନ୍ତ୍ରୀ କରୁଣାକରନଙ୍କୁ ଅଭିଯୁକ୍ତ କରି ଚାର୍ଜସିଟ୍ ବି କରାଯାଇଥିଲା ।

୨୦୦୫ ମସିହାରେ କେରଳର କଂଗ୍ରେସ ସରକାର ପାମୋଲିନ୍ ଦୁର୍ନୀତିରେ ଥିବା ଉଭୟ ଥୋମାସ୍ ଏବଂ କରୁଣାକରନ୍‌ଙ୍କ ଅଭିଯୋଗ ଫର୍ଦ୍ଦକୁ ପ୍ରତ୍ୟାହାର କରିନେଇଥିଲେ ଏବଂ ପରବର୍ତ୍ତୀ ବାମପନ୍ଥୀ ସରକାର କିନ୍ତୁ ଏଇ ପ୍ରତ୍ୟାହାରକୁ ନାକଚ କରି ପୁଣି କେଶ୍ ଚାଲିବାକୁ ଅନୁମତି ଦେଇଦେଇଥିଲେ । ଯାହା ଜଣାଯାଏ, ଥୋମାସ୍‌ଙ୍କ ନିଯୁକ୍ତି ବେଳକୁ ତାଙ୍କ ବିରୋଧରେ ଥିବା ଚାର୍ଜସିଟ୍‌ର ପୂରା ମୀମାଂସା ହୋଇନଥିଲା ।

ଗଣମାଧ୍ୟମରେ ଏପରି ଖବର ଆସେ ଯେ, ଥୋମାସ୍‌ଙ୍କ ସିଭିସି ନିଯୁକ୍ତି ବେଳେ ତିନି ଜଣିଆ ନିଯୁକ୍ତି କମିଟିରେ ଥିବା ଅନ୍ୟତମ ସଦସ୍ୟ ତଥା ଲୋକସଭାର ତତ୍କାଳୀନ ବିରୋଧୀ ଦଳର ନେତ୍ରୀ ସୁଷମା ସ୍ୱରାଜ ଆପତ୍ତି ଉଠାଇଥିଲେ ଏବଂ ଆପତ୍ତିକୁ ଗ୍ରହଣ ନକରି କମିଟିର ଅନ୍ୟ ଦୁଇ ସଦସ୍ୟ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଏବଂ ଗୃହମନ୍ତ୍ରୀ ପି. ଚିଦାମ୍ବରମ୍ ସିଭିସି ଭାବେ ପିଜେ ଥୋମାସ୍‌ଙ୍କୁ ନିଯୁକ୍ତି ଦେଇ ଦେଇଥିଲେ ।

ଟୁ-ଜି ସ୍ପେକ୍‌ଟ୍ରମ ଦୁର୍ନୀତି କଥା ବିଚାର କଲାବେଳେ ଭାରତର ମାନ୍ୟବର ସୁପ୍ରିମକୋର୍ଟ ସିଭିସି ଥୋମାସ୍‌ଙ୍କର ଉତ୍କୃଷ୍ଟ ସର୍ଭିସ ରେକର୍ଡ ନେଇ ପ୍ରଶ୍ନ ଉଠାଇଥିଲେ । ସେ ପ୍ରଶ୍ନ ଥିଲା, ଥୋମାସଙ୍କ ବିରୋଧରେ ଚାର୍ଜସିଟ୍ ବିଚାରାଧୀନ ଥିବାବେଳେ ସେ ସିଭିସି ଭାବେ ଟେଲିଫୋନ ଦୁର୍ନୀତିର ପ୍ରଭାବଶାଳୀ ଢଙ୍ଗରେ ତଦନ୍ତ କରିବେ କିପରି ?

ଟୁ-ଜି ସ୍ପେକ୍ଟ୍ରମ ଦୁର୍ନୀତିକୁ ଭାରତ ବର୍ଷର ଏକ ଭୟଙ୍କର ଆର୍ଥିକ ଅନିୟମିତତା ଭାବେ ଧରାଯାଏ । ଏଇ ଅନିୟମିତତାରେ କେନ୍ଦ୍ର ସରକାରଙ୍କର ଆନୁମାନିକ ରାଜସ୍ୱ କ୍ଷତି ହୋଇଛି ଏକଲକ୍ଷ ଛଅସ୍ତରୀ ହଜାର କୋଟି ଟଙ୍କା । ୨୦୦୮ ମସିହାରେ ଟୁ-ଜି ସ୍ପେକ୍‌ଟ୍ରମକୁ ୨୦୦୧ ମସିହା ଦରରେ ବିକ୍ରି କରାଯାଇଛି । ଏହା ଭାରତର

ସିଏଜିଙ୍କ ରିପୋର୍ଟ ଅଛି । ସୁତରାଂ ଏହି ଟେଲିକମ୍ ଆବଣ୍ଟନରେ ଠିକାଦାରଙ୍କୁ ନିଶ୍ଚିତ ଅନୁକମ୍ପା ଦେଖାଯାଇଛି ବୋଲି ସନ୍ଦେହ ଆସିଛି । ଏଇ ଅନୁକମ୍ପା ଯେ ମାଗଣାରେ ଦେଖାଯାଇନଥିବ ଏହା ହିଁ ଏବେ ବିଚାର ସାପେକ୍ଷ । ଏସବୁ କଥା ଯେ, ଏ ରାଜା ଟେଲିକମ ମନ୍ତ୍ରୀ ଥିବାବେଳେ ହୋଇଛି, ଏହା ଅଭିଯୋଗ ବି ହୁଏ । ରାଜା ଆଉ ମନ୍ତ୍ରୀ ପଦରେ ନାହାନ୍ତି । ଅନ୍ୟ କେଉଁ ପଦାଧିକାରୀ ଏଇ ମହାଦୁର୍ନୀତି ସହ ସଂପୃକ୍ତ ଅଛନ୍ତି ଏହାର ତଦନ୍ତ ଚାଲିଛି । କାରଣରେ ଏହା କୁହାଯାଏ, ବଡମାଛ ମୁଣ୍ଡ ଆଡୁ ପୋଚା ହୁଏ ।

ସାମ୍ବିଧାନିକ ଉଚ୍ଚ ପଦବୀରେ ନିଯୁକ୍ତି ନେଇ ପ୍ରଶ୍ନବାଚୀ କେବଳ ପି.ଜେ. ଥୋମାସ୍‌ଙ୍କ ପାଇଁ ହୋଇଥିବା ପ୍ରଥମ ପ୍ରଶ୍ନ ନୁହେଁ । ୨୦୦୯ ଜାନୁୟାରୀରେ ଯେତେବେଳେ ନବୀନ ଚାୱ୍ଲାଙ୍କର ମୁଖ୍ୟ ନିର୍ବାଚନ ଆୟୁକ୍ତ ଭାବେ ନିଯୁକ୍ତି କଥା ଉଠିଲା, ସେତେବେଳେ ତାଙ୍କ ବିରୋଧରେ ଏପରି ଆପତ୍ତି ଆସିଥିଲା । ଏ ଆପତ୍ତି ଉଠାଇଥିଲେ ତତ୍କାଳୀନ ଅନ୍ୟତମ ନିର୍ବାଚନ କମିଶନର, ଏନ୍. ଗୋପାଳ ସ୍ୱାମୀ । ଏନ୍. ଗୋପାଳସ୍ୱାମୀ ରାଷ୍ଟ୍ରପତି ପ୍ରତିଭା ପାଟିଲଙ୍କୁ ଚିଠି ଲେଖି ଜଣାଇଦେଲେ, ନବୀନ ଚାୱ୍ଲା ବିଚାରରେ ପକ୍ଷପାତିତା କରନ୍ତି । ତାଙ୍କର ରାଜନୈତିକ ନିରପେକ୍ଷତା ନାହିଁ ଏବଂ ଅସଲ କଥା ହେଲା, ନବୀନଙ୍କର କଂଗ୍ରେସ ଦଳ ପ୍ରତି ଆନୁଗତ୍ୟ ରହିଛି ।

ଏନ୍. ଗୋପାଳ ସ୍ୱାମୀ ନବୀନ ଚାୱ୍ଲାଙ୍କ ବିରୁଦ୍ଧରେ ଏପରି ଅଭିଯୋଗ ଆଣିଲାବେଳେ ସେ ନିଜେ ମଧ୍ୟ ଅଭିଯୋଗ ମୁକ୍ତ ନଥିଲେ । ଆପତ୍ତି ଥିଲା, ଗୋପାଳ ସ୍ୱାମୀ ବି ବିଜେପି ନେତା ଲାଲକୃଷ୍ଣ ଆଡ୍‌ଭାନୀଙ୍କ ନିଜ ଲୋକ । ଉଲ୍ଲେଖ ଥାଉ କି ଏନ୍. ଗୋପାଳ ସ୍ୱାମୀ ଏବଂ ନବୀନ ଚାୱ୍ଲାଙ୍କ ସଂପର୍କରେ ଏ ସବୁ କଥା ସେତେବେଳେ ବିଭିନ୍ନ ଗଣମାଧ୍ୟମରେ ଆସିଥିଲା ।

ଟି.ଏନ୍. ଶେଷାନ ଭାରତର ମୁଖ୍ୟ ନିର୍ବାଚନ କମିଶନର ନିଯୁକ୍ତି ନେଇ ଏପରି ବିବାଦ ଏଠି ନଥିଲା । କିନ୍ତୁ ଶେଷାନଙ୍କ ଆକ୍ରମଣାତ୍ମକ ପରିଚାଳନା ଦେଖି ସେବେର କେନ୍ଦ୍ର ସରକାର ଭାରତର ମୁଖ୍ୟ ନିର୍ବାଚନ କମିଶନରଙ୍କୁ ସଂକୁଚିତ କରିବାକୁ ଯାଇ ଭାରତର ନିର୍ବାଚନ ଆୟୋଗକୁ ତିନି ଜଣ ସଦସ୍ୟ ବିଶିଷ୍ଟ ଆୟୋଗ କରିଦେଲେ ଏବଂ ଆଶ୍ଚର୍ଯ୍ୟର କଥା ହେଲା, ଭାରତର ନ୍ୟାୟାଳୟ ଏପରିକି ଉଚ୍ଚ ତଥା ଉଚ୍ଚତମ ନ୍ୟାୟାଳୟରେ ନିଯୁକ୍ତ ବିଚାରପତିଙ୍କ ସାଧୁତା ନେଇ ମଧ୍ୟ ପ୍ରଶ୍ନ ଉଠିଲାଣି । ନିଜେ କୋର୍ଟ ମଧ୍ୟ ନିଜ ବିଚାରପତିଙ୍କ ସର୍ଭିସ ଟ୍ରାକ ରେକର୍ଡର ଆଭ୍ୟନ୍ତରୀଣ ସମୀକ୍ଷା କଲେଣି ।

'ଆଉଟ ଷ୍ଟାଣ୍ଡିଙ୍ଗ' ସର୍ଭିସ ରେକର୍ଡ ବା ଉତ୍କୃଷ୍ଟ ଚାକିରି ଜୀବନ କହିଲେ କେବଳ ସାଧୁତା ଏହାର ଏକମାତ୍ର ଆବଶ୍ୟକତା ନୁହେଁ । ଉତ୍କୃଷ୍ଟ ହେବାକୁ ହେଲେ

ଜଣଙ୍କର ଗଣତାନ୍ତ୍ରିକ ପ୍ରତିଶ୍ରୁତିବଦ୍ଧତା ଥିବା ଦରକାର । ଖାଲି ଏତିକି ନୁହେଁ, ସାମାଜିକ ଦର୍ଶନ ସହ ପୂର୍ବ ଆଚରଣ ଏବଂ ଚରିତ୍ର ଉତ୍ତମ ରହିବା ମଧ୍ୟ ଉଚିତ । ବିଭିନ୍ନ ସମୟରେ ବିଭିନ୍ନ କମିଟି ସାଧୁ ବ୍ୟକ୍ତିତ୍ୱ ଏବଂ ଅଦ୍ୱିତୀୟ ଚାକିରି ଜୀବନର ଏପରି ବାଖ୍ୟା ଦେଇଛନ୍ତି । କାରଣ ହେଉଛି, ସାମ୍ବିଧାନିକ ଉଚ୍ଚ ପଦବୀରେ ଅଧିଷ୍ଠିତ ବ୍ୟକ୍ତି ଭାରତୀୟଙ୍କ ପାଇଁ ଏକ ମଡେଲ ହୋଇଥାଆନ୍ତି । ନୀତି ଆଦର୍ଶର କଥା କହି ଅନ୍ୟ ଅନୁଷ୍ଠାନମାନଙ୍କୁ ଏମାନେ ତାଗିଦ କରିଥାନ୍ତି ଏବଂ ଜାତି ସଂରକ୍ଷଣ, ରାଜ୍ୟ ରାଜ୍ୟ ଭିତରେ ଜଳ ଜମି ବିବାଦକୁ ନେଇ ନିଜର ରାୟ ଦେଇଥାନ୍ତି । ସୁତରାଂ ଏଇ ପଦବୀରେ ଥିବା ବ୍ୟକ୍ତିଙ୍କର ରାଜନୈତିକ ନିରପେକ୍ଷତା ନଥିଲେ ତାଙ୍କ ନିଷ୍ପତ୍ତି ନେଇ ସାଧାରଣରେ ପ୍ରଶ୍ନ ଆସିବା ସ୍ୱଭାବିକ ।

ଚାକିରିରୁ ଅବସର ନେବାପରେ ବି କିଛି ସାମ୍ବିଧାନିକ ଉଚ୍ଚ ପଦାଧିକାରୀ ନିର୍ଦ୍ଦିଷ୍ଟ ରାଜନୈତିକ ଦଳରେ ଯୋଗ ଦେଉଛନ୍ତି । ଏଇ ଯେମିତି ପୂର୍ବତନ ସିଏଜି ଟି. ଏନ୍ ଚତୁର୍ବେଦୀ ଅବସର ନେବାପରେ ଭାରତୀୟ ଜନତା ପାର୍ଟିରେ ଯୋଗ ଦେଇ ରାଜ୍ୟସଭା ସଭ୍ୟ ହେଲେ । ଚତୁର୍ବେଦୀଙ୍କ ସମୟରେ ବୋଫରସ୍ ରିପୋର୍ଟ୍ ଆସିଥିଲା । ବୋଫର୍ସ୍ ଅଡିଟ୍ ନେଇ କଂଗ୍ରେସ ଦଳ ଅପଦସ୍ତ ହୋଇଥିଲା । ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ର ଅବସର ନେବା ପରେ କଂଗ୍ରେସରେ ଯୋଗ ଦେଇ ରାଜ୍ୟସଭାକୁ ଯାଇଥିଲେ ଏବଂ ପୂର୍ବତନ ମୁଖ୍ୟ ନିର୍ବାଚନ କମିଶନର ଏସ୍.ଏସ୍.ଗିଲ୍ କଂଗ୍ରେସ ତରଫରୁ ୟୁପିଏ ସରକାରରେ ମନ୍ତ୍ରୀ ଥିଲେ ।

ଅବସର ପରେ ସାମ୍ବିଧାନିକ ପଦାଧିକାରୀମାନେ ରାଜନୀତିରେ ଯୋଗ ଦେବା ବେଆଇନ ନୁହେଁ । କିନ୍ତୁ ବେଳେବେଳେ କିଛି ବ୍ୟକ୍ତି ଏଇ ପଦାଧିକାରୀମାନଙ୍କର ରାଜନୈତିକ ଜୀବନକୁ ଆଧାର କରି ଅତୀତର ଏମାନଙ୍କର ନିଷ୍ପତ୍ତି ପ୍ରତି ଅଙ୍ଗୁଳି ଉଠାଇ ଥାଆନ୍ତି ।

ଶାସନର ସ୍ୱଚ୍ଛତା ପାଇ ତେଣୁ ସାମ୍ବିଧାନିକ ପଦବୀରେ ସମସ୍ତ ନିଯୁକ୍ତି ସନ୍ଦେହମୁକ୍ତ ହେବା ଦରକାର । ଭାରତରେ ସାଧୁ, ସ୍ୱଚ୍ଛ ଏବଂ ଗଣତନ୍ତ୍ରରେ ବିଶ୍ୱାସ ରଖିଥିବା ଯୋଗ୍ୟ ପ୍ରଶାସନିକ ଅଧିକାରୀଙ୍କ ଅଭାବ ନାହିଁ ।

ପଦବୀରେ ତେଣୁ ମର୍ଯ୍ୟାଦା ରହୁ । ସନ୍ଦେହ ନ ରହୁ । ସିଜରଙ୍କ ସ୍ତ୍ରୀଙ୍କ ପାଇଁ ବି ସେକ୍ସପିୟର ଏଇ ପରାମର୍ଶ ଦେଇଥିଲେ ।



# ପାରିବାରିକ ହିଂସା

ପରିବାରରେ ହିଂସା ଏକ ସମ୍ବେଦନଶୀଳ ପ୍ରସଙ୍ଗ । ଏହି ପ୍ରସଙ୍ଗ ଏବେ ବୈକୁଣ୍ଠପୁରର ନାଁ ନେଇଥିବା ଘରକୁ ଭାଙ୍ଗୁଛି ।

ଏଇ କିଛି ଦିନ ତଳେ ଜଣେ ବନ୍ଧୁ ଅଭିଯୋଗ ଆଣି କହିଲେ, ଘରୋଇ ହିଂସା ଆଇନ କେବଳ ପୁରୁଷଙ୍କୁ ଦଣ୍ଡ ଦେବା ପାଇଁ ଉଦ୍ଦିଷ୍ଟ । ଘର କଲେ ତ କଳି ରହିବ । ଟିକିଏ ଟିକିଏ କଥାରେ ଥାନା ଫାଣ୍ଡି ହେବା ପାରିବାରିକ ଶାନ୍ତି ନିମନ୍ତେ ଠିକ୍ ନୁହେଁ । ଭାରତବର୍ଷରେ ହଜାର ହଜାର ବର୍ଷର ଏ ଲୋଭନୀୟ ପରିବାର ପ୍ରଥାକୁ ବିଦେଶୀ ସଭ୍ୟତାର ପ୍ରଭାବରେ ଭାଙ୍ଗିଦେବାକୁ ଯେମିତି ଚକ୍ରାନ୍ତ ଚାଲିଛି ।

ଏପରି ଅଭିଯୋଗ ମଧ୍ୟ ଅନ୍ୟ କୋଣରୁ ଆସୁଥିବ । ପ୍ରକୃତରେ କିନ୍ତୁ ଘରୋଇ ହିଂସା ଆଇନର ଉଦ୍ଦେଶ୍ୟ ଭିନ୍ନ । ଆଇନର ଉଦ୍ଦେଶ୍ୟ ହେଲା, ମହିଳାଙ୍କୁ ସୁରକ୍ଷା ଦେବା । ପୁରୁଷଙ୍କୁ ଦଣ୍ଡ ଦେବା ନୁହେଁ । ଏ ଆଇନ ଏବେ ଘରୋଇ ହିଂସା ପାଇଁ ସ୍ୱତନ୍ତ୍ର ଭାବେ ତିଆରି ହୋଇଛି । ଘରୋଇ ହିଂସାକୁ ଏହା ଏକ ସ୍ୱତନ୍ତ୍ର ଅପରାଧ ଭାବେ ଗ୍ରହଣ କରିଛି । ଆଇନ କୁହେ, ଘରୋଇ ହିଂସା ଏକ ଦେୱାନୀ ମକଦ୍ଦମାର ଅନ୍ତର୍ଭୁକ୍ତ । ଅଥଚ ଯଦି ଘର କଳି ଥାନାକୁ ଯାଏ, ଭାରତୀୟ ପିଙ୍ଗଳ କୋଡ ଅନୁଯାୟୀ ଏଥିପାଇଁ ଦଣ୍ଡ ବିଧାନ ହେବ ।

ଘରୋଇ ହିଂସାର କାରଣ ଏବଂ ଏହାର କର୍ତ୍ତା ଖୋଜିବା ପୂର୍ବରୁ ଏ ହିଂସା ସମ୍ପର୍କରେ ସମ୍ୟକ୍ ସୂଚନାଟି ଦେଇ ଦେବାକୁ ଇଚ୍ଛା । ଘରୋଇ ହିଂସା କହିଲେ ସାଧାରଣତଃ ଏହା ମହିଳାଙ୍କ ବିରୁଦ୍ଧରେ ହେଉଥିବା ହିଂସାକୁ ହିଁ ବୁଝାଏ । ୧୯୭୦ ଦଶକରେ ନାରୀବାଦୀମାନେ ଏହାର ଏପରି ନାମକରଣ କରିଥିଲେ ଏବଂ ଘରୋଇ ହିଂସାକୁ ଏକ ଧର୍ତ୍ତବ୍ୟ ଅପରାଧରେ ସାମିଲ କରିବାକୁ ଦାବି ଉଠିଥିଲେ । କାରଣ ଥିଲା, ପୋଲିସ ଘର କଳିକୁ ସେବେ ଏକ ଅପରାଧ ଭାବେ ଗ୍ରହଣ କରୁନଥିଲେ । ପାରିବାରିକ କଳିକୁ ଏକ ଘରୋଇ ବ୍ୟକ୍ତିଗତ ଘଟଣା କହି ପୋଲିସ ଛାଡିଦେଉଥିଲେ ଏବଂ ଏହି କଳି ଘର ଭିତରେ ତୁଟିବା ଉଚିତ ବୋଲି ଉପଦେଶ ଦେଉଥିଲେ ।

ଘର କଳି ଘରେ ଛିଣ୍ଡୁ ଏପରି ଏକ ମିଥ୍‌କୁ ପାରିବାରିକ ହିଂସା ଆଇନ୍ ପ୍ରତ୍ୟାଖ୍ୟାନ କରି ଦେଇଛି ଏବଂ କେଉଁ କେଉଁ ଘରୋଇ ଅପରାଧ ଏବଂ ହିଂସା ଧାର୍ଯ୍ୟବ୍ୟ ଅପରାଧ ହେବ ସେଥିନେଇ ଏକ ଲମ୍ବା ତାଲିକା ଦିଆଯାଇଛି ।

ଘରୋଇ ହିଂସାକୁ ଏଥିରେ ଚାରି ଭାଗରେ ବିଭକ୍ତ କରାଯାଇଛି – ଦୈହିକ, ବାଚନିକ, ଆର୍ଥିକ ଏବଂ ଯୌନଭିତ୍ତିକ । ଏହା କେବଳ ସ୍ତ୍ରୀ ମାନଙ୍କ ପାଇଁ ନୁହେଁ । ଏହି ଆଇନ ମା, ଝିଅ ଭଉଣୀ  ନିମନ୍ତେ ମଧ୍ୟ ପ୍ରଯୁଜ୍ୟ ।

ଦୈହିକ ହିଂସାରେ ଅଛି – ଘରେ ସ୍ତ୍ରୀ ବା ମହିଳାକୁ ବାଡେଇବା, ଚାପୁଡା ମାରିବା, ଗୋଇଠା ମାରିବା, କାମୁଡିବା, ମୁଥ ମାରିବା, ଠେଲାପେଲା କରିବା ଏବଂ ଅନ୍ୟ ଯେକୌଣସି ଉପାୟରେ ଦୈହିକ ଯନ୍ତ୍ରଣା ଦେବା ବା ଦେହରେ କ୍ଷତ ସୃଷ୍ଟି କରିବା ।

ବାଚନିକ ବା ଭର୍ବାଲ୍ ହିଂସା ହେଉଛି – ସ୍ତ୍ରୀକୁ ଗାଳି କରିବା, ଚରିତ୍ର ସଂହାର କରିବା, ପୁତ୍ର ସନ୍ତାନଟିଏ ଜନ୍ମ କରୁ ନାହିଁ କହି ଦୋଷାରୋପ କରିବା, ସ୍ତ୍ରୀ ବା ପିଲାକୁ ପାଠ ପଢିବାକୁ ଛାଡିନଦେବା, ସ୍ତ୍ରୀ କୁ ଚାକିରି କରିବାକୁ ବାରଣ  କରିବା, ଚାକିରି କରୁଥିଲେ ଚାକିରି ଛାଡିବାକୁ ତାକୁ ବାଧ କରିବା, ସମ୍ପର୍କୀୟଙ୍କ ସହ ସାକ୍ଷାତ କରିବାକୁ ମହିଳାଙ୍କୁ ଅନୁମତି ନ ଦେବା ଏବଂ ଝିଅର ଇଚ୍ଛା ବିରୁଦ୍ଧରେ ଅନ୍ୟତ୍ର ତାକୁ ବିବାହ ଦେବା ।

ଆର୍ଥିକ ହିଂସା  କିନ୍ତୁ ନିଆରା । ଏଥିରେ ଅଛି, ସ୍ତ୍ରୀ ପିଲାଙ୍କୁ ଚଳିବାକୁ ଟଙ୍କା ନ ଦେବା, ସ୍ତ୍ରୀର ସବୁ ଦରମା ମାସ ଆରମ୍ଭରେ ନେଇଯିବା, ମନ ପସନ୍ଦର ଲୁଗା ଏବଂ ଗହଣା ପିନ୍ଧିବାକୁ ଝିଅ ଏବଂ ସ୍ତ୍ରୀଙ୍କୁ ମନା କରିବା ।

ଯୌନ ଭିତ୍ତିକ ହିଂସା ହେଉଛି, ସ୍ତ୍ରୀ ଇଚ୍ଛା ବିରୁଦ୍ଧରେ ତା' ସହ ଯୌନ ସମ୍ପର୍କ ରଖିବା, ଅଶ୍ଳୀଳ ସିଡି ବା ଫଟୋ ଦେଖିବାକୁ ସ୍ତ୍ରୀକୁ ବାଧ କରିବା ଏବଂ ଅପମାନିତ କିମ୍ବା ମର୍ଯ୍ୟଦାହାନୀ ହେବା ପରି ଯେକୌଣସି ଯୌନ କର୍ମରେ ଲିପ୍ତ ହେବାକୁ ସ୍ତ୍ରୀକୁ ପ୍ରବର୍ତ୍ତାଇବା ।

ଉପର ବର୍ଣ୍ଣିତ ଯେ କୌଣସି ଗୋଟିଏ ହିଂସା ଘଟାଇଥିବା ବ୍ୟକ୍ତି ବିରୁଦ୍ଧରେ ପାରିବାରିକ ହିଂସା ଆଇନ ଅନୁଯାୟୀ ମକଦ୍ଦମା ରୁଜୁ ହୋଇପାରିବ ଏବଂ ଶାସ୍ତି ବିଧାନ ହେବ ।

ଘର କଳିର ସ୍ୱରୂପ ଏବଂ ଶେଷ ପରିଣତି ଜାଣିସାରିବା ପରେ ଘରୋଇ ହିଂସାରେ ସଂପୃକ୍ତ ଥିବା ଅନେକ ପୁରୁଷ ସମ୍ଭବତଃ ଛାନିଆ ହୋଇପଡିଛନ୍ତି ଏବଂ ପ୍ରକାଶ୍ୟରେ ଅଭିଯୋଗ ଆଣନ୍ତି ଯେ ଘର କଳି ନେଇ ପୁରୁଷଙ୍କ ପ୍ରତି ପକ୍ଷପାତିତା କରାଯାଇଛି ।

ଘର ଭିତରେ ଯେତେବେଳେ ହିଂସା ବା ନିର୍ଯାତନା ଘଟେ ସବୁ ସମୟରେ ପୁରୁଷଙ୍କୁ ଏଥିପାଇଁ ଦୋଷ ଦିଆଯାଏ । ଏପରି ଅଘଟଣ ଘଟିବାର ପ୍ରକୃତ କାରଣ କ'ଣ ଏହା ବୁଝିବାକୁ ଚେଷ୍ଟା ହୁଏ ନାହିଁ ବୋଲି ଅନେକ ପୁରୁଷ ଅଭିଯୋଗ ଆଣନ୍ତି ।

ଏ ସମ୍ପର୍କରେ ବିଖ୍ୟାତ ସମାଜ ବିଜ୍ଞାନୀ ରାମ ଆହୁଜାଙ୍କର ଏକ ସର୍ବେକ୍ଷଣ ଏ ଲେଖକର ନଜରକୁ ଆସିଥିଲା । ଆହୁଜାଙ୍କର ଏ ସର୍ଭେ ତାଙ୍କ ରଚିତ ସୋସାଇଟି ଇନ୍ ଇଣ୍ଡିଆ ପୁସ୍ତକରେ ଉଲ୍ଲେଖ ଅଛି । ସର୍ଭେରେ କେବଳ ପୀଡିତା ମହିଳାଙ୍କ ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ ହିଂସା ଘଟାଇଥିବା କିଛି ପୁରୁଷଙ୍କୁ ନିଜ ସ୍ତ୍ରୀକୁ ନିର୍ଯାତନା ଦେବାର କାରଣ କ'ଣ ବୋଲି ପ୍ରଶ୍ନ ପଚରାଯାଇଛି ।

ଅନେକ ଆକ୍ରମଣକାରୀ ପୁରୁଷ ମାନନ୍ତି, ସେମାନେ ତାଙ୍କ ସ୍ତ୍ରୀ ପ୍ରତି ଅସଦ୍ ବ୍ୟବହାର କରିଛନ୍ତି । କାରଣ ଥିଲା, ସ୍ତ୍ରୀମାନେ ତାଙ୍କର ଘର ଭିତରେ ପାରମ୍ପରିକ ପାରିବାରିକ ଶୃଙ୍ଖଳା ମାନୁନାହାନ୍ତି । ସାମାଜିକ ଭଦ୍ରତାକୁ ସେମାନେ ବେଖାତିର କରୁଛନ୍ତି । ଶୃଙ୍ଖଳା ଏବଂ ସାମାଜିକ ପାରାମିଟର ନଥିଲେ ଘର ଭାଙ୍ଗିଯିବା ସ୍ୱାଭାବିକ । ନିଜ ସ୍ତ୍ରୀ ପ୍ରତି ଖରାପ ବ୍ୟବହାର କରି ସେମାନେ ଅନୁତପ୍ତ ନୁହନ୍ତି ବୋଲି କିଛି ପୁରୁଷ ଆହୁଜାଙ୍କର ସର୍ବେକ୍ଷଣରେ ସ୍ୱୀକାର କରିଛନ୍ତି ।

ଅନେକ ପୁରୁଷ ପୁଣି ଦୁଃଖ କରି କହନ୍ତି, ତାଙ୍କ ସ୍ତ୍ରୀ ତାଙ୍କ ବାପା ମାଙ୍କୁ ଖରାପ ବ୍ୟବହାର ଦେଖାଏ । ଭାଇ ଭଉଣୀକୁ ହତାଦର କରେ । ଘରକୁ ଅବହେଳା କରେ । ଘରେ ଛୋଟ ଛୋଟ କଥା ନେଇ କଳି କରେ ।

ମହିଳାଙ୍କୁ ନିର୍ଯାତନା ଦେବାର କାରଣ ଖାଲି ଏତିକିରେ ଅଟକିଯାଏନି । ଅନେକ ପୁରୁଷ ଆହୁଜାଙ୍କ ସର୍ଭେରେ ସ୍ପଷ୍ଟ କରି କହନ୍ତି – ଅନ୍ୟ ପୁରୁଷ ସହ ତାଙ୍କ ସ୍ତ୍ରୀ ଅଯଥାରେ କଥା ହୁଏ । ଶତ୍ରୁମାନଙ୍କ ସହ ସମ୍ପର୍କ ରଖେ । ଘରକୁ ସମ୍ପର୍କୀୟମାନେ ଆସିଲେ ତାଙ୍କ ପ୍ରତି ରୁକ୍ଷ ବ୍ୟବହାର ଦେଖାଏ ।

ସ୍ତ୍ରୀମାନଙ୍କର ଏତାଦୃଶ ବ୍ୟବହାରରେ ସେମାନେ ଉତ୍ତେଜିତ ହୋଇ ଉଠନ୍ତି

ବୋଲି ପୁରୁଷମାନେ କାରଣ ଦର୍ଶାନ୍ତି । ଅସମ୍ଭାଳ କ୍ରୋଧ ଯୋଗୁଁ ଘରେ ଛୋଟ ଛୋଟ ଅଘଟଣ ତେଣୁ ଘଟିଯାଏ ।

ପୀଡିତ ସ୍ୱାମୀମାନଙ୍କର ଏକ ପାଲଟା ପ୍ରଶ୍ନ ବି ଥାଏ - ସ୍ତ୍ରୀମାନେ ସମାଜର ପାରମ୍ପରିକ ପରିଧି ଭିତରେ ଚଳିବା ଉଚିତ ନୁହେଁ କି ?

ହଁ ପାଠକ ବନ୍ଧୁ ! ଏପରି ପ୍ରଶ୍ନ ସ୍ପଷ୍ଟ ସୂଚନା ଦେଇଦିଏ, ଏବେ ମଧ୍ୟ ଏଠି ପରିବାରରେ ପୁରୁଷ ପ୍ରାଧାନ୍ୟ କମି ନାହିଁ । ସହମତିରେ ଯେଉଁ ସଂସାର ଚାଲିବା କଥା, ଅନେକ ଘରେ ତାହା ହେଉନାହିଁ । ଜଣେ ମହିଳା ନିଜ ପାଇଁ କିଛି ସ୍ୱାଧୀନତା ଚାହିଁଲେ ଯେ ସିଏ ଦୈହିକ ଯନ୍ତ୍ରଣାରେ ଶିକାର ହେବ ଏହା କେବଳ ସ୍ୱେଚ୍ଛାଚାରୀ ପୁରୁଷ ମାନସିକତାର ପ୍ରତିଫଳନ । ବର୍ତ୍ତମାନ ସମୟ ପାଇଁ ଏହା ଉପଯୁକ୍ତ ନୁହେଁ ।

ଏ ଆଲୋଚନାର ପ୍ରଥମ ଉଲ୍ଲେଖ ଥିଲା, ଘରୋଇ ହିଂସା ହେଉଛି ଲିଙ୍ଗଭିତ୍ତିକ ଅସମତାର ଏକ ବାହ୍ୟ ସଙ୍କେତ । ଏହି ଅସମତାରେ ପୁରୁଷର ପ୍ରାଧାନ୍ୟ ବେଶି, ଯେ ହେତୁ ପୁରୁଷ ଏବଂ ସ୍ତ୍ରୀ ଭିତରେ ଏକ ଅସମାନ କ୍ଷମତା ସମୀକରଣ ରହିଛି । ଏହା କ'ଣ ସତ ନୁହେଁ ଯେ କିଛି କାରଣ ନଥାଇ ମଦୁଆ ପୁରୁଷଟିଏ ତା'ର ସ୍ତ୍ରୀକୁ ବାଡାଏ; ସ୍ତ୍ରୀର ଗୁପ୍ତାଙ୍ଗରେ ଜଳନ୍ତା ସିଗାରେଟ୍‌ରେ ଚେଙ୍କ ଦିଏ; ଖାଇବାକୁ ନ ଦେଇ ସ୍ତ୍ରୀକୁ ଉପାସରେ ରଖେ ଏବଂ ବନ୍ଧୁଙ୍କ ଗହଣରେ ବ୍ଲୁ ଫିଲ୍ମ ଦେଖିବାକୁ ତାକୁ ବାଧ୍ୟ କରାଏ ।

ଅନେକ ନାରୀବାଦୀ ତେଣୁ ପୁରୁଷ ପ୍ରାଧାନ୍ୟ ଏଇ ଅସମତାକୁ ଭାଙ୍ଗିଦେବାକୁ କିଛି ନିରାକରଣର କଥା କହନ୍ତି । କହନ୍ତି, ପରିବାରକୁ ଭାଙ୍ଗି ଦିଆଯାଉ, ମହିଳାଙ୍କର ଗୃହିଣୀ ଭୂମିକାର ଅବସାନ ହେଉ, ଝିଅ ମା' ଠାରୁ ଶିଖିବା ଏବଂ ପୁଅ ବାପା ଠାରୁ ଶିଖିବା ଏଇ ପାରମ୍ପରିକ ବୃତ୍ତିକୁ ସମାପ୍ତ କରିଦିଆଯାଉ ଏବଂ ସନ୍ତାନ ଜନ୍ମ କରିବାର ଭୂମିକା କେବଳ ନାରୀମାନଙ୍କର ନ ହେଉ । କାରଣ ପୁରୁଷ ଏବଂ ସ୍ତ୍ରୀ ଭିତରେ ଥିବା ଜୈବିକ ତଥା ଶାରୀରିକ ଗଠନର ଅସମାନତାର ଫାଇଦା ପୁରୁଷମାନେ ନେଉଛନ୍ତି ।

ଭାରତୀୟ ପରିବାରର ସ୍ଥିତି ଏବଂ ସ୍ଥାୟିତ୍ୱ ନେଇ ବିପ୍ଳବଟିଏ ଏବେ ଆରମ୍ଭ ହୋଇଯାଇଛି । ଲିଙ୍ଗଭିତ୍ତିକ ଅସମାନତା ସଂପ୍ରତି ଲିଙ୍ଗଭିତ୍ତିକ ବିଭାଜନକୁ ଜନ୍ମ ଦେଇସାରିଲାଣି । ମୁକ୍ତ ଏବଂ ସହାବସ୍ଥାନ ପରସ୍ପର ପ୍ରତି ସଂପ୍ରତି ବିରୋଧୀ ହୋଇଯାଇଛନ୍ତି । ଭାରତୀୟ ସମାଜରେ ପୁରୁଷ ଏବଂ ସ୍ତ୍ରୀ ବର୍ତ୍ତମାନ ପ୍ରାୟ ଅଧା ଅଧା । ଏମାନେ ପରିବାର ଗଢନ୍ତି । ପରିବାର ହିଁ ଏକ ସୁସ୍ଥ ସମାଜର ମୂଳ ଏକକ ।

ହଁ, ପରିବାର ସୃଷ୍ଟିର ଏକ ଆଦ୍ୟ କାହାଣୀ କହି ଏ ଆଲୋଚନାକୁ ଏଠି ଶେଷ କରିବାକୁ ଇଚ୍ଛା । ପ୍ରାକ୍ ସାମାଜିକ ଅବସ୍ଥାରେ ଯେତେବେଳେ ପରିବାର ନଥିଲା, ସେତେବେଳେ ପ୍ରତ୍ୟେକ ମଣିଷ ଏଠାରେ ହିଂସ୍ର, ଦରିଦ୍ର ଏବଂ ନିଃସଙ୍ଗ ଥିଲା । ଦିନେ କୌଣସି ଏକ ସ୍ତ୍ରୀ ସହ ରାତ୍ରିଯାପନ କରି ପୁରୁଷଟିଏ ସକାଳୁ ସକାଳୁ ବାହାରକୁ ଚାଲିଯାଉଥାଏ । ସ୍ତ୍ରୀ ଟି ପଛରୁ ଡାକି କହିଲା, 'ଶୁଣୁଛ ! ତମେ ଯଦି ଆଜି ପୁଣି ସନ୍ଧ୍ୟାକୁ ମୋ ପାଖକୁ ଆସନ୍ତ ଏବଂ ମୋ ପାଇଁ କିଛି ଖାଦ୍ୟ ଆଣନ୍ତ ମୁଁ ଆଉ ବାହାରକୁ ଯାଆନ୍ତି ନାହିଁ । କଥା କ'ଣ କି, ମୋର ଏବେ ପିଲାଟିଏ ହୋଇଛି । କଥା କହିବା ଏବଂ ଚାଲିବା ସେ ଶିଖିଲାଣି । ଏହା ପୂର୍ବରୁ ମୋର ଆଉ ଗୋଟିଏ ପିଲା ଥିଲା । ଏମିତି ସେ ଚାଲି ଶିଖିଥିଲା, କଥା କହୁଥିଲା । ଥରେ ସନ୍ଧ୍ୟାର ଆସି ଦେଖେ ତ ସେ ଘରେ ନାହିଁ । ତାକୁ ବାଘ ଖାଇଯାଇଛି । ଏବେ ଯଦି ତୁମେ ମୋ ପାଇଁ ଖାଦ୍ୟ ଆଣନ୍ତ, ମୁଁ ଏ ପିଲାକୁ ଜଗି ରହନ୍ତି । ଅବଶ୍ୟ ଖାଦ୍ୟ ସଂଗ୍ରହ କିନ୍ତୁ ପାଳି କରି କରନ୍ତେ ।'

ପୁରୁଷ ସେ ଦିନ ସେ ସଂଧ୍ୟାରେ ସେ କୁଡିଆକୁ ଫେରିଥିଲା । ସ୍ତ୍ରୀର ଅନୁରୋଧ ରଖିଥିଲା । ଆଜିର ଏ ପରିବାର ସୃଷ୍ଟି ହୋଇଛି ସେଇଠୁ । ପରିବାରକୁ ପାରସ୍ପରିକ ସମ୍ମାନ ଏବଂ ସହମତିରେ ବାନ୍ଧି ରଖିବାକୁ ସେ ଦିନ ପୁରୁଷ ଏବଂ ସ୍ତ୍ରୀ ଭିତରେ ହୋଇଥିବା ଅଲିଖିତ ଚୁକ୍ତି ଏବେ ମଧ୍ୟ ବଳବତ୍ତର ଅଛି ।

ପରିବାର ତେଣୁ ଖେଳନା ନୁହେଁ । ଏହା ଏକ ଅଭଙ୍ଗା ଚୁକ୍ତି । ସହିବା ଶିଖ ।



# ପରିଚୟ ରାଜନୀତି

**ପ**ରିଚୟ ରାଜନୀତି ଏବେ ନୂଆ ଏକ ରାଜନୈତିକ ପ୍ରସଂଗ । ଇଂରାଜୀରେ ଏହାର ନାଁ ହେଲା ଆଇଡେଣ୍ଟିଟି ପଲିଟିକ୍ସ । ଦେଶରେ ଏ ପ୍ରକାର ରାଜନୀତି ସଂପ୍ରତି ପ୍ରବଳ । ଜାତି, ଧର୍ମ, ସ୍ଥାନୀୟତା ଏବଂ ଭାଷା ପରି କିଛି ଆବେଗିକ ପ୍ରସଙ୍ଗକୁ ନେଇ ରାଜନେତାମାନେ ଏଠି ନିଜର ନିଜତ୍ୱ ଜାହିର ପାଇଁ ବ୍ୟସ୍ତ ।

ପରିଚୟ ବା ଆଇଡେଣ୍ଟିଟି ହେଉଛି ଏକ ବ୍ୟକ୍ତିଗତ ଛାପ । ଏ ଛାପ ଏବଂ ଏ ଚିହ୍ନଟ ଜଣେ ବ୍ୟକ୍ତିକୁ ଏ ସମାଜ ହିଁ ଦେଇଥାଏ । ପରିଚୟ ବ୍ୟକ୍ତିଗତ ହେଲେ ବି ଏଥିରେ ସାମାଜିକ ସ୍ୱୀକୃତି ଥାଏ । ଜାତି, ଧର୍ମ, ଭାଷା ଏବଂ ସ୍ଥାନୀୟତାକୁ ଆଳ କରି ଜଣେ ପରିଚିତ ହୋଇଥାଏ । ସଂକ୍ଷିପ୍ତରେ କହିଲେ ପ୍ରତି ପରିଚୟର ମଧ୍ୟ ଏକ ସାମାଜିକ ଭୂମିକା ଥାଏ । ସେଇଥିପାଇଁ ନିଜ ଧର୍ମ ଜାତି ଅଞ୍ଚଳ ପାଇଁ ଖୋଲାଖୋଲି କହିବାକୁ ମହାନ କର୍ତ୍ତବ୍ୟ ବୋଲି ଅନେକ ଭାବନ୍ତି ।

ବର୍ତ୍ତମାନର ରାଜନୀତି ଏଇ ବ୍ୟକ୍ତିଗତ ପ୍ରକ୍ରିୟାକୁ ସାମଗ୍ରିକ କରି ସାରିଛି । ନିଜର ନିଜତ୍ୱ ଜାହିର କରିବା ନାଁରେ କିପରି ରାଜନୀତି କରିହେବ ତାର ଉପାୟ ଖୋଜାଯାଉଛି । ଏଇ ଯେମିତି ନିଜକୁ ହିନ୍ଦୁ ମୁସଲମାନ କହିବାରେ ଆମର ସଂକୋଚ ନାହିଁ । ବ୍ରାହ୍ମଣ ବା ଅବ୍ରାହ୍ମଣ ପରିଚୟ ଦେବାରେ ଲାଜ ନାହିଁ । ବିହାରୀ ଏବଂ ମରାଠୀ ନାଁରେ ବାଣ୍ଟି ହୋଇଯିବାରେ ଆମର ଦ୍ୱିଧା ନାହିଁ । ଆମେ ଯେ ଏଠି ସମସ୍ତେ ଭାରତୀୟ ଏହା ପଛ ସିଟ୍‌କୁ ଚାଲିଗଲାଣି । ପରିଚିତ ରାଜନୀତିର ଏଇଟା ହିଁ ବିଚ୍ୟୁତ ଦୁର୍ଗୁଣ ।

ପରିଚୟ ରାଜନୀତିର ଆଧାର ହେଉଛି ପରିଚୟ ସଙ୍କଟ ବା ଆଇଡିଣ୍ଟି କ୍ରାଇସିସ୍ । ଯେତେବେଳେ ଜଣେ ବ୍ୟକ୍ତି ନିଜର ସାମାଜିକ ଭୂମିକା କଣ ସ୍ପଷ୍ଟ ଜାଣିପାରେନି ଏବଂ ସାମାଜିକ ଗୁରୁତ୍ୱ ହରାଇଲା ପରି ସେ ଅନୁଭବ କରେ ସେତେବେଳେ ତାର ପରିଚୟ ଜନିତ ସଙ୍କଟ ଆସିଯାଇଥାଏ । ଏହାର ଉଦାହାରଣ ହେଉଛି କିଶୋର ଅବସ୍ଥା କଥା । ମାନବୀୟ ଦୈହିକ ପରିବର୍ତ୍ତନର ଏହା ଏକ

ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । କିଶୋରର ପରିଚୟ ସଙ୍କଟ ହେଲା, କିଶୋରଟିଏ ପିଲା ବା ଶିଶୁ ହୋଇପାରେନି କିମ୍ବା ଯୁବକ ହୋଇପାରେନି । ନିଜର ସାମାଜିକ ଭୂମିକା ଜାଣିବାକୁ ସେ ସମର୍ଥ ହୋଇନ୍‌ଥାଏ । ଏଇ ସଙ୍କଟକୁ ସଠିକ୍ ପରିଚାଳନା କରି ନପାରିଲେ ଏହା ଭୟଙ୍କର ବି ହୋଇଯାଏ । କିଶୋରମାନେ ନିଜର ପରିଚୟ ପାଇଁ ସହଜରେ ଏକାଠି ହୋଇଯାଆନ୍ତି । ଏହା ମନସ୍ତାତ୍ତ୍ୱିକ ବିଶ୍ଳେଷଣ ।

ଏଇ ତତ୍ତ୍ୱ ବି କହେ, ଭାରତୀୟ ରାଜନେତାମାନେ ନିଜର ନିଜତ୍ୱ ଭୂମିକା ଜାହିର ପାଇଁ କେମିତି ଆକ୍ରମଣାତ୍ମକ ହୋଇଗଲେଣି । ଏହା ଯେତିକି ମନୋବିଜ୍ଞାନଜନିତ ନୁହେଁ ତା'ଠାରୁ ଅଧିକ ସମାଜ ଶାସ୍ତ୍ରୀୟ । ଅଥଚ ଅସଲ କଥା ହେଲା, ଯେପର୍ଯ୍ୟନ୍ତ ଆନୁସଙ୍ଗିକ ସାମାଜିକ ପରିବର୍ତ୍ତନ ଆସିନାହିଁ, ସେପର୍ଯ୍ୟନ୍ତ ରାଜନୈତିକ ବ୍ୟବସ୍ଥାଟିଏ ତିଷ୍ଠି ରହିବା କଷ୍ଟ ହୋଇଥାଏ, ଏଇଟା ହିଁ ପରିଚୟ ରାଜନୀତିର ଆଧାର ।

ଭାରତର ଭୋଟ ବ୍ୟାଙ୍କ ରାଜନୀତି ହିଁ ଏଠି ପରିଚୟ ରାଜନୀତିକୁ ବେଶି ବାହାବା ଦେଉଛି । ଜାତି, ଧର୍ମ, ଅଞ୍ଚଳ ଏବଂ ଭାଷାକୁ ନେଇ କିଛି ଆବେଗିକ ସାମାଜିକ ପ୍ରସଙ୍ଗ ତିଆରି କରିପାରିଲେ ଏହା ଭୋଟ ବ୍ୟାଙ୍କ ରାଜନୀତି ପାଇଁ ସହଜ ଉଦ୍ୟମ ବୋଲି ଏଠି ନେତାମାନେ ଭାବୁଛନ୍ତି । କେବଳ ଦଳିତଙ୍କ ପ୍ରସଙ୍ଗ ଉଠାଇବାକୁ ଏଠି ରାଜନୈତିକ ଦଳ ଅଛନ୍ତି । ଏଠି ଧର୍ମ ଏବଂ ସ୍ଥାନୀୟତାକୁ ଆଳ କରି ରାଜନୀତି କରିବାରେ ରାଜନେତାମାନେ ଗୌରବ ଅନୁଭବ କରନ୍ତି । ମାୟାବତୀଙ୍କ ବହୁଜନ ସମାଜ ପାର୍ଟି ବିଶେଷକରି ଦଳିତଙ୍କ କଥା କହେ । ଭାରତୀୟ ଜନତା ପାର୍ଟି ତଥାକଥିତ ହିନ୍ଦୁ ରାଜନୈତିକ ଦଳ ଭାବେ ଏଠି ଜଣା । ରାଜ୍ ଠାକରେ ଏବଂ ବାଳ ଠାକରେ ମରାଠୀ ମାନଙ୍କର କଥା କହି ମହାରାଷ୍ଟ୍ରରେ ଭୂମିପୁତ୍ରର ପରିଚୟ ହିଁ ଖୋଜିଛନ୍ତି । ଏଥିରେ ଯେ କେବଳ ସାମାଜିକ ବିଭାଜନ ଅଛି, ଏ ନେତାମାନେ ଜାଣନ୍ତି । ତଥାପି କିନ୍ତୁ ପ୍ରଶ୍ନ କଲେ ଏମାନେ ଉତ୍ତର ଦିଅନ୍ତି, ନିଜ ପରିଚୟ ପାଇଁ ଲଢେଇ କରିବାର ଏଇଟା ହିଁ ଏକମାତ୍ର ବାଟ ।

ସତକଥା ହେଲା ଆବେଗକୁ ଶୋଷଣ କରିପାରିଲେ ଭୋଟ ଜିତିବା ସହଜ । ଏକକ ବ୍ୟକ୍ତିମାନଙ୍କୁ ଏକତ୍ର କରିଦେବାର ପରିଚୟଗତ ଅବେଗ ହିଁ ଏକ ଭଲ ମାଧ୍ୟମ ଏବଂ ଭୋଟ ପାଇଲେ ହିଁ ଏଠି କ୍ଷମତା ଉପଭୋଗ କରିହୁଏ ।

ପରିଚୟ ରାଜନୀତି ସପକ୍ଷରେ ଆହୁରି ବି କିଛି ଯୁକ୍ତି ଆସେ । ଏ ଯୁକ୍ତି ଠିକ୍ ଏମିତି – ଭାରତୀୟ ସମାଜରେ ଅସମତା ଅଛି । ସାମାଜିକ ନ୍ୟାୟର ଅଭାବ ରହିଛି । ଏଇ ସାମ୍ୟ ତଥା ନ୍ୟାୟ ପ୍ରସଙ୍ଗକୁ ରାଜନୈତିକ ଦଳଟିଏ ଉତ୍‌ଥାପନ କରିବା ଉଦ୍ୟମକୁ ସଂକୀର୍ଣ୍ଣ ରାଜନୀତି କହିବା ଅନୁଚିତ । ଏହା ବି ପରିଚୟ ରାଜନୀତି ନୁହେଁ । ନିଜ ଜାତି, ଧର୍ମ, ସଂପ୍ରଦାୟ ଅଞ୍ଚଳ ଏବଂ ଭାଷା ପାଇଁ ନିର୍ଦ୍ଦିଷ୍ଟ ଭାବେ ସଂଗ୍ରାମ ନକଲେ ଏ ସବୁର ପ୍ରଗତି ହେବା ଯେ ଅସମ୍ଭବ ଏମାନେ ଯୁକ୍ତି ବି ଦର୍ଶାନ୍ତି । ଏ ଯୁକ୍ତିରେ ଅନ୍ୟ କଥାଟି ବି ଥାଏ । ଭାରତୀୟ ସମାଜରେ ସଂପତ୍ତି ସୀମିତ ଏବଂ ଏଇ ସଂପତ୍ତିକୁ ବାଣ୍ଟି ନେବାକୁ ପ୍ରତିଯୋଗୀଙ୍କ ସଂଖ୍ୟା ଅସଂଖ୍ୟ । ଏହାର ତେଣୁ ସମ ତଥା ଆନୁପାତିକ ବଣ୍ଟନ ହେବା ଦରକାର । ନଚେତ ସାମାଜିକ ଏବଂ ଆର୍ଥିକ ଅଭିବୃଦ୍ଧିରେ ସନ୍ତୁଳନ ରହିବ ନାହିଁ ।

ଏ ଯୁକ୍ତି ଶୁଣି ମନେହୁଏ ସେଇଥିପାଇଁ ବୋଧେ ପରିଚୟ ରାଜନୀତିର ପ୍ରବକ୍ତାମାନେ ସଂରକ୍ଷଣ ତଥା କୋଟା ଉପରେ ନିର୍ଭର କରନ୍ତି । ଶିକ୍ଷାନୁଷ୍ଠାନରେ ନାଁ ଲେଖା, ଚାକିରି ଏବଂ ଗଣତାନ୍ତ୍ରିକ ଅନୁଷ୍ଠାନମାନଙ୍କରେ ପ୍ରତିନିଧିତ୍ୱ ସବୁ ଏଇ ଉପାୟରେ ହେଉ ବୋଲି ସେମାନେ ଜିଦ୍ ଧରନ୍ତି ଏବଂ ଏଇ ଜିଦ୍ ଯେ ସାଧାରଣ ଲୋକଙ୍କର ଅଭିଯୋଗରୁ ସୃଷ୍ଟି ସେମାନେ ଏହା ବୁଝାନ୍ତି । ବାସ୍ତବରେ ସବୁ ଅଭିଯୋଗର ତାଲିକା ରାଜନେତାମାନେ ନିଜର ପରିଚୟ ରାଜନୀତି ପାଇଁ ହିଁ କରନ୍ତି ।

ବିଡମ୍ବନା ଯେ ସ୍ୱାଧୀନତାର ଛଅ ଦଶନ୍ଧି ପରେ ବି ଆମେ ଆମର ସଂକୀର୍ଣ୍ଣ ପରିଚୟ ପାଇଁ ଲଢେଇ କରୁଛୁ । ଭାଷା, ସ୍ଥାନୀୟତା, ଜାତି ଆଉ ଧର୍ମକୁ ଆଧାରକରି ପରସ୍ପରକୁ ବାଣ୍ଟୁଛୁ । ବିହାରୀ, ମରାଠୀର ଆଳ ଖୋଜି ସ୍ଥାନ ବାସନ୍ଦ କରୁଛୁ ଏବଂ ଜାତିଭିତ୍ତିକ ସଂରକ୍ଷଣରେ ନିର୍ବାଣ ଅଛି ବୋଲି ପ୍ରଚାର କରୁଛୁ । ଏହା ତେଣୁ ବନ୍ଦ ହେବା ଦରକାର । ମହାଭାରତୀୟତାରେ ହିଁ ପ୍ରକୃତ ନିର୍ବାଣ ଥାଏ । ମହାଶକ୍ତି ହେବା ପାଇଁ ଏହା ହିଁ ଏବେ ଜରୁରୀ ।



# ପ୍ରତିମୂର୍ତ୍ତି ପ୍ରତି ହତାଦର ସ୍ପୃହଣୀୟ ନୁହେଁ

ଶ୍ରୀଜଗନ୍ନାଥଙ୍କ ଦୁଇ ହଜାର ପନ୍ଦର ନବକଳେବରରେ ଘଟିଥିବା ଅନେକ ଅଘଟଣ ଭିତରେ ସିଂହଦ୍ୱାରରେ ଥିବା ଉତ୍କଳମଣି ଗୋପବନ୍ଧୁଙ୍କ ମୂର୍ତ୍ତିର ସ୍ଥାନାନ୍ତରଣ ଅନ୍ୟ ଏକ ଅଘଟଣ । ଦୀର୍ଘ ଅଶି ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ପୂଜ୍ୟ ଗୋପବନ୍ଧୁ ଦାସଙ୍କ ପ୍ରତିମୂର୍ତ୍ତି ଏଇଠି ଥିଲା । ଜାତିର ଜନକ ମହାତ୍ମା ଗାନ୍ଧୀ ୧୯୩୪ ମସିହାରେ ଉତ୍କଳମଣିଙ୍କ ଏ ପ୍ରତିମୂର୍ତ୍ତି ଏଇଠି ସ୍ଥାପନ କରିଥିଲେ ।

ଜନସ୍ୱାର୍ଥ ପାଇଁ ଆବଶ୍ୟକତା ପଡିଲେ କୌଣସି ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପ୍ରତିମୂର୍ତ୍ତିକୁ ସ୍ଥାନାନ୍ତରିତ କରିବା ଅସ୍ୱଭାବିକ ନୁହେଁ । କିନ୍ତୁ ଗୋପବନ୍ଧୁଙ୍କ ମୂର୍ତ୍ତିକୁ ଯେପରି ଅଖାରେ ଗୁଡାଇ ସ୍ଥାନାନ୍ତରିତ କରାଗଲା ଏବଂ ନୂତନ ଜାଗାରେ ଅବସ୍ଥାପିତ କରାଗଲା, ଏହାହିଁ ଥିଲା ଏକ ଦୁର୍ଭାଗ୍ୟ । ଆମର ଜଣେ ମହାନ୍ ରୋଲ ମଡେଲଙ୍କ ପ୍ରତି ଏହା ଥିଲା ଅପମାନ । ସାମାନ୍ୟ ସାବଧାନତା ଅବଲମ୍ବନ କରିଥିଲେ କୋଟି କୋଟି ଓଡିଆଙ୍କ ଭାବାବେଗ ନଷ୍ଟ ହୋଇ ନଥାନ୍ତା ।

ଯାହା ଜଣାଯାଏ, ମହାପୁରୁଷମାନଙ୍କ ପ୍ରତିମୂର୍ତ୍ତିକୁ ଭାଙ୍ଗି ଦେବା ବା ବିକୃତ କରିଦେବା ଏବେ ଯେମିତି ସାଧାରଣରେ ଖୁବ୍ ସହଜରେ ଘଟିଯାଉଛି । ଆଦର୍ଶଗତ ପାର୍ଥକ୍ୟ ରଖିଥିବା କିଛି ପ୍ରତିକ୍ରିୟାଶୀଳ ବ୍ୟକ୍ତିଙ୍କ ପାଇଁ ମୂର୍ତ୍ତି ଯେପରି ସହଜ ଟାର୍ଗେଟ ।

ସମୟର ଘର୍ଷଣକୁ ସାମନା କରି ରାସ୍ତାକଡରେ ଯେଉଁ ପ୍ରତିମୂର୍ତ୍ତି ବସିଥାଆନ୍ତି ସେ କୌଣସି ସାମାନ୍ୟ ବ୍ୟକ୍ତିର ମୂର୍ତ୍ତି ହୋଇନଥାନ୍ତି । ଏ ବ୍ୟକ୍ତିମାନେ ଏ ଦେଶର ରୋଲ ମଡେଲ୍ । ପ୍ରତିଷ୍ଠା ପାଇ ସାରିଥିବା ଏମାନେ ଏ ସମାଜର ମହାପୁରୁଷ । ଏମାନେ ସମସ୍ତେ ପୂଜାର ପାତ୍ର । ଏହାଙ୍କ ଆଦର୍ଶ ଏବଂ ତ୍ୟାଗ ନେଇ ରାଷ୍ଟ୍ର ଗର୍ବ କରିଥାଏ ।

ପ୍ରତି ସମାଜରେ ପ୍ରତିଷ୍ଠା ପାଇଥିବା ବ୍ୟକ୍ତି ହେଉଛନ୍ତି ଦୁଇ ପ୍ରକାରର । ପ୍ରଥମଟି ହେଉଛି ଏଲିଟ୍ ବା ବିଶିଷ୍ଟ ବ୍ୟକ୍ତି । ଏମାନେ ରାଜନେତା, ପ୍ରଶାସକ, ବ୍ୟବସାୟୀ କିମ୍ବା ସମାଜର ଯେ କୌଣସି କ୍ଷେତ୍ରରେ ଉଚ୍ଚସ୍ଥାନ ହାସଲ କରିଥିବା ବ୍ୟକ୍ତି ହୋଇପାରନ୍ତି ଏବଂ ଅନ୍ୟ ପ୍ରକାରଟି ହେଉଛି ରୋଲ୍ ମଡେଲ । ସ୍ପଷ୍ଟ କହିଲେ, ଏମାନେ ସବୁ ଅତି ବିଶିଷ୍ଟ ବ୍ୟକ୍ତିତ୍ୱ ।

ଜଣେ ଏଲିଟ୍ ହଠାତ୍ ରୋଲ୍ ମଡେଲ ହୋଇଯାଏ ନାହିଁ । ରୋଲ୍ ମଡେଲ ହେବାକୁ ସମୟ ଲାଗେ । ପ୍ରତିଷ୍ଠିତ ବ୍ୟକ୍ତିର ନିଷ୍ଠା, ଆଦର୍ଶ, ତ୍ୟାଗକୁ ଏ ସମାଜ ନିରନ୍ତର ପରଖେ । ଶେଷରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଟି ଅତି ବିଶିଷ୍ଟ ବ୍ୟକ୍ତି ହୋଇଯାଏ । ସ୍ମରଣୀୟ ହେବା ପାଇଁ ସେ ମର୍ଯ୍ୟାଦା ପାଇଥାଏ । ସେ ହିଁ ହୋଇଥାଏ ରୋଲ୍ ମଡେଲ୍ ।

ଗୋଟିଏ ବ୍ୟାପକ ପ୍ରକ୍ରିୟା ଭିତରେ ଏଠି ମଡେଲ ବ୍ୟକ୍ତିତ୍ୱଟି ତିଆରି ହୁଏ । ଏକ ବିରାଟ ସାଧନାର ଏ ହେଉଛନ୍ତି ଏକ ସିଦ୍ଧି । ସେଇଥିପାଇଁ ରୋଲ୍ ମଡେଲକୁ ପୂଜା କରାଯାଏ ଏବଂ ସାଧାରଣ ଜାଗାରେ ମୂର୍ତ୍ତି ରୂପରେ ପ୍ରଦର୍ଶନ କରି ଏହାକୁ ମନେ ରଖାଯାଏ ।

ମୂର୍ତ୍ତି ଭାଙ୍ଗିଦେଲେ ବା ହତାଦର କଲେ ମୂର୍ତ୍ତି ଭିତରେ ଥିବା ରୋଲ୍ ମଡେଲ ବ୍ୟକ୍ତିତ୍ୱର ଆଦର୍ଶ ଭାଙ୍ଗିଯାଏନି । ଏଥି ସହ ସଂପୃକ୍ତ ଇତିହାସ ବି ଧ୍ୱଂସ ପାଇଯାଏନି । ପ୍ରଶ୍ନ ତେଣୁ ଆସେ, ବର୍ଷ ବର୍ଷର ପରୀକ୍ଷିତ ଆଦର୍ଶକୁ ଦୁର୍ବୃତ୍ତଙ୍କର କଳାରଙ୍ଗ କିମ୍ବା ହାତୁଡ଼ି ମାଡ ଭାଙ୍ଗି ଦେବ କେମିତି ?

ଜୀବନ୍ତ ମଣିଷ ମୁହଁରେ କଳାରଙ୍ଗ ବୋଳି ଦେଲେ ଏହାକୁ ଅପମାନ କୁହାଯାଏ । ମଡେଲ୍ ବ୍ୟକ୍ତିର ପ୍ରତିମୂର୍ତ୍ତିରେ କିନ୍ତୁ କଳାରଙ୍ଗ ବୋଳିଦେଲେ ଏହାକୁ ନିନ୍ଦା ବୋଲି ଅଭିହିତ କରାଯାଏ । ଏହାକୁ ଏକ ଅପଦସ୍ତର ନାଁ ଦିଆଯାଏ । ଇଂରାଜୀରେ ଏହାକୁ କହନ୍ତି ବ୍ଲାସ୍‌ଫେମି । ବ୍ଲାସଫେମି ଧର୍ମଦ୍ରୋହ ସହ ସମାନ ।

ଏହି କିଛି ବର୍ଷ ତଳେ କିଛି ଖଳବ୍ୟକ୍ତି ବିଜୁ ପଟ୍ଟନାୟକଙ୍କ ପ୍ରତିମୂର୍ତ୍ତିକୁ କଳାରଙ୍ଗରେ ବିକୃତ କରିଦେବାର ଖବର ଆସିଥିଲା । ଏହା ପୂଜ୍ୟପୂଜା ପ୍ରତି ଅସମ୍ମାନ ହିଁ ଥିଲା । ସତ କଥା ହେଲା, ବିଜୁବାବୁ ଓଡିଶାର ଜଣେ ରୋଲ୍ ମଡେଲ । ଓଡିଆତ୍ୱର ସେ ପ୍ରତୀକ । ଓଡିଆ ଅସ୍ମିତାର ସେ ପରିଚାୟକ । ତାଙ୍କ ପ୍ରତିମୂର୍ତ୍ତିଟିକୁ ଅପଦସ୍ତ କରିବାରେ ପ୍ରକୃତରେ କାହାର ଅପମାନ ହେଲା, ଏହା ଏକ ପ୍ରଶ୍ନବାଚୀ ।

ଏହା ସତ ଯେ, ଅନେକଙ୍କ ଅଗୋଚରରେ ଏଠି ଅନେକ ମୂର୍ତ୍ତିକୁ ଭାଙ୍ଗିଦିଆଯାଉଛି କିମ୍ବା ମୁହଁରେ କଳା ବୋଳି ବିକୃତ କରାଯାଉଛି । ଯେଉଁମାନେ ଏ କାମ କରନ୍ତି ଏହା ସେମାନଙ୍କର ଏକ ରୁଗ୍‌ଣ ମାନସିକତା । ମୂର୍ତ୍ତିଭଙ୍ଗା ବିରୁଦ୍ଧରେ ଯେ ପ୍ରତିବାଦ ହୁଏନି, ଏହା ଠିକ୍ ନୁହେଁ । ଜବରଦସ୍ତ ଏହାର ବିରୋଧ ହୁଏ । ସମୟ ଥମି ଗଲେ ପୁଣି କିଛି ମୂର୍ତ୍ତି ଭଙ୍ଗାଯାଏ । ମୁହଁରେ କଳା ବୋଳା ଯାଏ । ଗାନ୍ଧିଜୀଙ୍କ ଚଷମା ଆଉ ବାଡିକୁ ଯେପରି ବାହାରେ ଫିଙ୍ଗାଯାଇ ତାମସା ଦେଖାଯାଏ ।

କୌଣସି ଏକ ପ୍ରତିମୂର୍ତ୍ତିକୁ ଭାଙ୍ଗିଦେବାର ମୁଖ୍ୟତଃ ଦୁଇଟି କାରଣ ଥାଏ ।

ପ୍ରଥମଟି ହେଉଛି, ରାଜନୈତିକ ପ୍ରତିହିଂସା ଏବଂ ଦ୍ୱିତୀୟଟି ହେଉଛି ମଜାକ୍, ଉପହାସ ବା ଫନ୍ । କିଛି ଲୋକ ମୂର୍ତ୍ତି ଭଙ୍ଗା ପ୍ରତିକ୍ରିୟାକୁ ଏକ ମନୋରଞ୍ଜନ ଭାବେ ନିଅନ୍ତି । ଏଇ ଦୁଇ କାରଣ ଏଇଠି ଏକ ବିସ୍ତୃତ ଆଲୋଚନା ଭିତରକୁ ଅଣାଯାଇପାରେ ।

ଆମେରିକାର ଇରାକ୍ ଦଖଲ ପରେ ଆମେରିକୀୟ ସୈନିକମାନେ ପ୍ରଥମେ କେବଳ ଇରାକ୍‌ରେ ଥିବା ସଦ୍ଦାମ ହୁସେନଙ୍କ ପ୍ରତିମୂର୍ତ୍ତି ଭାଙ୍ଗିଥିଲେ । ରାସ୍ତାକଡରେ ଛିଡା ହୋଇଥିବା ସଦ୍ଦାମଙ୍କ ଷ୍ଟାଚ୍ୟୁମାନଙ୍କୁ କ୍ରେନ୍ ତଥା ବୁଲ୍‌ଡୋଜର ଲଗାଇ ଧରାଶାୟୀ କରିଥିଲେ । ସଦ୍ଦାମଙ୍କ ପ୍ରତି ଆମେରିକୀୟଙ୍କ ଏତେ କ୍ରୋଧ ଥିଲା ଯେ ଭଙ୍ଗା ମୂର୍ତ୍ତିକୁ ଏମାନେ ଜୋତାମାଳ ପିନ୍ଧାଇ ଦେଇଥିଲେ ।

ଯୁଦ୍ଧରେ ମଧ୍ୟ କିଛି ନୀତି ଥାଏ । ବିଦେଶ ଆକ୍ରମଣକାରୀ ଏଇ ନୀତିକୁ ମାନିବା ବି ଦରକାର । ସବୁ ପରାଜିତ ଶାସକର ପ୍ରତିମୂର୍ତ୍ତି ଭାଙ୍ଗିଦେଲେ ଯେ ସେସବୁ ଶାସକର ଆଦର୍ଶ ଏବଂ ଚରିତ୍ରର ଛାପ ଧ୍ୱଂସ ପାଇଯାଏ, ଏପରି ଧାରଣା ରଖିବା ବିଜୟୀ ଶାସକଙ୍କ ନିମନ୍ତେ ଅନେକ ସମୟରେ ବୁମେରାଂ ହୋଇଥାଏ । ସଦ୍ଦାମ ମଧ୍ୟ ଇରାକରେ ସଂଖ୍ୟାଧିକ ଲୋକଙ୍କ ରୋଲ୍ ମଡେଲଟିଏ ଥିଲେ । ବାହାରର ଆକ୍ରମଣକାରୀ ଅନ୍ୟ ଦେଶର ରୋଲ ମଡେଲର ମୂର୍ତ୍ତି ଭାଙ୍ଗି ଦେବା ଏକ ଅପରାଧ ।

ଆଫଗାନିସ୍ତାନର ତାଲିବାନମାନେ ବାମିୟାନ୍ ବୁଦ୍ଧ ମୂର୍ତ୍ତିକୁ ତୋପ ଲଗାଇ ଭାଙ୍ଗି ଦେବା ଘଟଣା ଦିନେ ବିଶ୍ୱବାସୀଙ୍କୁ ଚକିତ କରିଥିଲା । ଏ ଘଟଣା ଥିଲା ଏକ ଆଦର୍ଶଗତ ତଥା ସଂସ୍କୃତିଗତ ପ୍ରତିହିଂସା । ମୂର୍ତ୍ତି ଭାଙ୍ଗିଦେଇ ବୁଦ୍ଧ ପ୍ରତିନିଧିତ୍ୱ କରୁଥିବା ଏକ ଇତିହାସକୁ ବିଦ୍ରୂପ କରିବା ଇସଲାମୀୟ କଠୋରପନ୍ଥୀଙ୍କ ଏହାଥିଲା ଲକ୍ଷ୍ୟ ।

ରାଜନୈତିକ ପ୍ରତିହିଂସାରେ ଯେଉଁ ପ୍ରତିମୂର୍ତ୍ତି ଭଙ୍ଗାଯାଏ, ରାଜନୈତିକ ସଚେତନତାରେ ଏହାର ପ୍ରତିରୋଧ କରାଯାଇପାରେ । କିନ୍ତୁ ମଜା ନେବା ପାଇଁ ଯେଉଁ ମୂର୍ତ୍ତି ଅପଦସ୍ତ ହୁଏ, ତାକୁ ନିୟନ୍ତ୍ରଣ କରିବା ସହଜ ନୁହେଁ । ବାସ୍ତବରେ ଏଠି କିଛି ଆଦର୍ଶଗତ ଦ୍ୱନ୍ଦ୍ୱ ନଥାଏ । ବିରୋଧରେ ଯେଉଁ ପ୍ରତିକ୍ରିୟା ଏବଂ ପଟୁଆର ଚାଲେ, ଦୁର୍ବୃତ୍ତମାନେ ଏହାକୁ ଦେଖିବାକୁ ହିଁ ମୂର୍ତ୍ତି ଭାଙ୍ଗନ୍ତି ।

ଏହା ଏକ ମନସ୍ତାତ୍ତ୍ୱିକ ବିଶୃଙ୍ଖଳା । ଆସାମୀକୁ କଠୋର ଶାସ୍ତି ଏହାର ଏକମାତ୍ର ବାଟ ।

ପ୍ରଶ୍ନ ଆସିବଣି,ଏ ପ୍ରତିମୂର୍ତ୍ତି ଅମର କି ? ଉତ୍ତରରେ ଏହାର କିଛି ବିତର୍କ ଆସେ । ପ୍ରଥମ ବିତର୍କ ହେଲା, ପ୍ରତିଷ୍ଠିତ ମହତ୍ମାମାନଙ୍କୁ ମନେ ରଖିବାକୁ କେବଳ ଇତିହାସ ବହି ଯଥେଷ୍ଟ ନୁହେଁ । ସାଧାରଣ ସ୍ଥାନରେ ସେମାନଙ୍କର ପ୍ରତିମୂର୍ତ୍ତି ବସାଇ ବର୍ତ୍ତମାନ ଏବଂ ଭବିଷ୍ୟତ ପିଢ଼ିଙ୍କୁ ସେମାନଙ୍କୁ ଚିହ୍ନେଇରଖିବା ଦରକାର । ଐତିହାସିକ

ପୁରୁଷମାନଙ୍କୁ ମନେରଖିବାକୁ ଏହା ହିଁ ଏକ ଭଲ ମାଧ୍ୟମ । ସୁତରାଂ କୌଣସି ଏକ ପ୍ରତିଷ୍ଠିତ ବ୍ୟକ୍ତିତ୍ୱର ପ୍ରତିମୂର୍ତ୍ତି ପ୍ରତି ଏ ସମାଜ ସହିଷ୍ଣୁ ଏବଂ ଦରଦୀ ହେବା ଉଚିତ । ପ୍ରତିମୂର୍ତ୍ତି ପ୍ରସଂଗରେ ଦ୍ୱିତୀୟ ବିତର୍କ କିନ୍ତୁ ଭିନ୍ନ । ଏ ବିତର୍କରେ ଆସେ, ବ୍ୟକ୍ତିଗତ ଭାବେ ଯଦି କୌଣସି ପ୍ରତିମୂର୍ତ୍ତି ନିଜ ଘର ଅଗଣାରେ କିମ୍ବା ଘରୋଇ ଜାଗାରେ ପ୍ରତିଷ୍ଠିତ ହୁଏ, ଏଥିରେ ସାଧାରଣରେ ଆପତ୍ତି ନଥାଏ । କିନ୍ତୁ ଯେତେବେଳେ ସାଧାରଣ ସ୍ଥାନରେ ଏବଂ ସରକାରୀ ଅର୍ଥରେ ପ୍ରତିମୂର୍ତ୍ତି ବସେ, ସେତେବେଳେ, ପ୍ରତିମୂର୍ତ୍ତିର ସ୍ଥାପନ ଓ ସ୍ଥାନିତ ପ୍ରକ୍ରିୟା ନେଇ କିଛି ଦିଗରୁ ପ୍ରଶ୍ନ ଆସେ । ଉତ୍ତରପ୍ରଦେଶର ପାର୍କମାନଙ୍କରେ ବିଏସ୍‌ପିର ଦଳୀୟ ଚିହ୍ନ ହାତୀ ମୂର୍ତ୍ତି ସ୍ଥାପନ ନେଇ ଦିନେ ପ୍ରଶ୍ନ ଆସିଥିଲା ।

ଅପଦସ୍ତ କରିବାକୁ ପ୍ରତିମୂର୍ତ୍ତି ଏବେ ସହଜ ଟାର୍ଗେଟ୍ । ଏଥିନେଇ ସହଜରେ ସାମାଜିକ ଅଶାନ୍ତି ସୃଷ୍ଟି ହୋଇପାରୁଛି । ରୋଲ୍ ମଡେଲମାନଙ୍କୁ ସହଜରେ ବିଦ୍ରୂପ ବି କରି ହେଉଛି ।

ଏ ବିବାଦ ମଧ୍ୟ ଏକ ବୃହତର ସମସ୍ୟାକୁ ଜନ୍ମ ଦେଉଛି । ସେ ସମସ୍ୟା ହେଉଛି, ଏଠି ପ୍ରତିମୂର୍ତ୍ତିର ସଂଖ୍ୟା ନିୟମିତ ଭାବେ ବଢୁଛି । ସାଧାରଣ ଜାଗା ଏଥିପାଇଁ ଅଧିକୃତ ହେଉଛି । ପ୍ରତିମୂର୍ତ୍ତିର ଗଠନ ଏକ କଳା ଏବଂ ଏକ ଭାସ୍କର୍ଯ୍ୟର ଧାରକ ହୋଇଥିଲେ ବି ଅନେକ ମୂର୍ତ୍ତି ଏତେ ବିକୃତ ରୂପରେ ତିଆରି ହେଉଛି ଯେ ଏହାକୁ ଚିହ୍ନିବା କଷ୍ଟ ହେଉଛି । ଏହା କୌଣସି କଳାର ପ୍ରତିନିଧି ହେଉନାହିଁ ବରଂ ସତ କଥା ହେଲା, କଦର୍ଯ୍ୟ ପ୍ରତିମୂର୍ତ୍ତି ଗଠନ ଏକ ନକଲି କଳାର ପ୍ରଚାର କରୁଛି । ବିଡମ୍ବନା ହେଲା, ପ୍ରତିମୂର୍ତ୍ତି ସ୍ଥାପନ ନେଇ ଏବେ ମଧ୍ୟ ସରକାରୀ ଭାବେ ବିସ୍ତୃତ ନିୟମାବଳୀଟିଏ ପ୍ରସ୍ତୁତ ହୋଇପାରି ନାହିଁ।

ସୁତରାଂ ପ୍ରତିମୂର୍ତ୍ତି ସ୍ଥାପନ ନିମନ୍ତେ ତେଣୁ କଡାକଡି ଆଇନଟିଏ ତିଆରି ହେବା ଦରକାର । ମୂର୍ତ୍ତିର ସୁରକ୍ଷା ଦାୟିତ୍ୱ ସରକାର କିମ୍ବା ମୂର୍ତ୍ତି ବସାଇଥିବା ମାଲିକମାନେ ନେବା ଉଚିତ । ଗ୍ରାଫାଇଟ୍, ସିମେଣ୍ଟ କିମ୍ବା ବ୍ରୋଞ୍ଜରେ ତିଆରି ପ୍ରତିମୂର୍ତ୍ତି ଭିତରେ ଲୁଚିରହିଥିବା ପବିତ୍ର ଆତ୍ମାମାନଙ୍କୁ ସାଧାରଣରେ ସମ୍ମାନ ସହ ରଖାଯିବାର ଆବଶ୍ୟକତା ଅଛି ।

କାରଣ ଏମାନେ ଆମର ରୋଲ୍ ମଡେଲ, ସାମୂହିକ ସ୍ମୃତି । କିନ୍ତୁ ଅସଲ କଥା ହେଉଛି, ଏ ସ୍ମୃତିକୁ ଆହୁରି ଦୀର୍ଘସ୍ଥାୟୀ କରିବାକୁ ହେଲେ, ଏହାକୁ ହୃଦୟରେ ରଖିବା ଦରକାର; ଏହାର ଆଦର୍ଶ ମାନି କାମ କରିବା ଉଚିତ ।



# ପବ୍ଲିକ୍ ସ୍କୁଲ

ଏଇ କିଛି ଦିନ ହେଲା ଯେଉଁ କଥାଟି ଏବେ ଚର୍ଚ୍ଚାରେ ଅଛି ସେ ହେଉଛି, ଇଂରାଜୀ ମାଧ୍ୟମ ପବ୍ଲିକ ସ୍କୁଲ କଥା । ପିଲାଙ୍କ ପଢା ଖର୍ଚ୍ଚ ଅସମ୍ଭବ ଭାବେ ସେଠି ବଢିଛି । ଅଭିଭାବକମାନେ ଏଥିନେଇ ଆନ୍ଦୋଳନ କରୁଛନ୍ତି । ପୋଲିସକୁ ଏଥିରେ ହସ୍ତକ୍ଷେପ କରିବାକୁ ପଡୁଛି । ମାମଲା ନ୍ୟାୟାଳୟ ପର୍ଯ୍ୟନ୍ତ ଯାଉଛି ଏବଂ ଏ ବିବାଦ ଏତେ ଗମ୍ଭୀର ହୋଇଯାଇଛି ଯେ ଅନେକ ଗଣମାଧ୍ୟମ ପବ୍ଲିକ୍ ସ୍କୁଲରେ ଶିକ୍ଷାଦାନ ତଥା ଫି ବୃଦ୍ଧି ନେଇ ପୁଙ୍ଖାନୁପୁଙ୍ଖ ଆଲୋଚନାମାନ କରୁଛନ୍ତି । ଦପ୍ତରରୁ କ୍ଲବ ପର୍ଯ୍ୟନ୍ତ ଟ୍ୟୁସନ ଫି ନେଇ ବିତର୍କ । ସେ ସବୁରୁ କିଛି କଥା ଆଜି ଏ ଚର୍ଚ୍ଚାରେ ।

ପବ୍ଲିକ୍ ସ୍କୁଲରେ ପାଠ ପଢାଇବା ଆଗ୍ରହ ବର୍ତ୍ତମାନ ବେଶି । ପିଲାଙ୍କ ପ୍ରାଥମିକ ପାଠପଢା ନେଇ ଆଜିର ଅଭିଭାବକମାନେ କୌଣସି ରିସ୍କ ନେବାକୁ ଚାହାନ୍ତି ନାହିଁ । ଭଲ ଇଂରାଜୀ ଶିକ୍ଷା ହେଲେ ଯେ ଭବିଷ୍ୟତରେ ନିଯୁକ୍ତିରେ ଗ୍ୟାରେଣ୍ଟି ଅଛି, ଏହା ଏଠି ଏକ ସାଧାରଣ ଧାରଣା । ଏହା ବି ସତ ଯେ ବହୁ ବିଦେଶୀ କମ୍ପାନୀମାନେ ତାଙ୍କ କମ୍ପାନୀମାନଙ୍କରେ ଚାକିରି ପାଇଁ ଭଲ ଇଂରାଜୀ କହିପାରୁଥିବା ଏବଂ ଲେଖିପାରୁଥିବା ଯୁବକ ଏବଂ ଯୁବତୀମାନଙ୍କୁ ବେଶି ପସନ୍ଦ କରନ୍ତି । ସେଇଥିପାଇଁ ବୋଧେ ଫର୍ମ କିଣାରୁ ଆରମ୍ଭ କରି ଆଡମିସନ ପର୍ଯ୍ୟନ୍ତ ପବ୍ଲିକ୍ ସ୍କୁଲ ଆଗରେ ଏବେ ବାପା ମା'ଙ୍କର ଲମ୍ବା ଧାଡି । ଏ ଧାଡି କ୍ରମଶଃ ଏତେ ଲମ୍ବି ଯାଉଛି ଯେ ଉଣେଇଶ ସତୁରି ଦଶକରେ ରେସନ ଦୋକାନ ଆଗରେ ଲମ୍ବୁଥିବା ଧାଡିକୁ ବି ବେଳେବେଳେ ଏହା ଉପହାସ କରେ ।

ପବ୍ଲିକ ସ୍କୁଲମାନଙ୍କରେ ନିଜ ପିଲାଙ୍କ ନାଁ ଲେଖାଇ ପାଠ ପଢ଼େଇବାରେ ଆଗ୍ରହ ଏବେ ଗାଁ କୁ ଗଲାଣି । ଉପସହର ବଜାରମାନଙ୍କରେ ସହରୀ ଢାଞ୍ଚାରେ ପବ୍ଲିକ୍ ନର୍ସରୀ ସ୍କୁଲମାନ ତିଆରି ହେଲାଣି । ଚାହିଦା ଆସିଲେ ଯୋଗାଣ ହୁଏ । ଅର୍ଥଶାସ୍ତ୍ରର ଏଇ ପୁରୁଣା ପାରମ୍ପରିକ ତତ୍ତ୍ୱ ସଂପ୍ରତି ଛତୁ ଫୁଟିଲା ପରି ଗଜି ଉଠୁଥିବା ଏଇ ଇଂରାଜୀ ମାଧ୍ୟମ ପ୍ରାଥମିକ ସ୍କୁଲ ପାଇଁ ପ୍ରଯୁଜ୍ୟ ହୋଇପାରେ ।

ନର୍ସରୀ ଏବଂ କେଜି ଶ୍ରେଣୀ ଉପରେ ଅଧ୍ୟୟନ କରାଯାଇଥିବା କିଛି ଷ୍ଟଡି ରିପୋର୍ଟ ଅଛି । ଏ ରିପୋର୍ଟରେ ଅଛି, ପବ୍ଲିକ୍ ସ୍କୁଲମାନଙ୍କରେ ବର୍ତ୍ତମାନ ପ୍ରାୟ ତିନି

କୋଟି ପିଲା ପାଠ ପଢନ୍ତି । ଏଥିରୁ ଅଧିକାଂଶ ପଢୁଛନ୍ତି ନର୍ସରୀ ଏବଂ କେଜି ଶ୍ରେଣୀରେ । ପବ୍ଲିକ୍ ସ୍କୁଲର ବଢନ୍ତା ପଢା ଖର୍ଚ୍ଚ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢାଇବାର ନିଶାକୁ ରୋକି ପାରିନି । ଆର୍ଥିକ ମାନ୍ଦାବସ୍ଥା ଯୋଗୁ ନିଯୁକ୍ତି ସମସ୍ୟା, ଦରମା କାଟ ଏବଂ ଚାକିରି ଯିବାର ଭୟ ପବ୍ଲିକ୍ ସ୍କୁଲ ଶିକ୍ଷାକୁ ପ୍ରଭାବିତ କରିନି । ସମ୍ଭବତଃ କୌଣସି ଅଭିଭାବକ ନିଜ ପିଲାର ନର୍ସରୀ ଶିକ୍ଷା ସହ କୌଣସି ପ୍ରକାରେ ସାଲିସ୍ କରିବାକୁ ଚାହାନ୍ତି ନାହିଁ ।

ପବ୍ଲିକ୍ ସ୍କୁଲର ଫି ବୃଦ୍ଧି ପ୍ରକୃତରେ କେବଳ ଓଡିଶାର ଘଟଣା ନୁହେଁ । ଭାରତର ପ୍ରାୟ ସବୁ ସହରରେ ଏଇ ଫି ବୃଦ୍ଧି ହୋଇଛି । ଏକ ପରିସଂଖ୍ୟାନ ଅନୁଯାୟୀ ପ୍ରତି ବର୍ଷ ଘରୋଇ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପାଠପଢା ଖର୍ଚ୍ଚ ପ୍ରାୟ ୪୦ ପ୍ରତିଶତ ବଢେ ଏବଂ ନାଁ ଲେଖା ପାଇଁ ଫର୍ମର ଯେଉଁ ଦରବୃଦ୍ଧି ହୁଏ ଏହା ପ୍ରାୟ ତିନିଗୁଣରୁ ଅଧିକ ହୁଏ ।

ଫର୍ମର ଦାମ୍ ବି ସବୁ ସ୍କୁଲରେ ସମାନ ନୁହେଁ । ଗୋଟିଏ ସ୍କୁଲରେ ଯେ ତାଙ୍କ ପିଲାର ନାମ ଲେଖା ହୋଇଯିବ ଏଥିନେଇ ବାପା ମା' ନିଶ୍ଚିତ ବି ନୁହଁନ୍ତି । ଜଣେ ଜଣେ ଅଭିଭାବକ ଏକାଧିକ ସ୍କୁଲରୁ ଫର୍ମ କିଣୁଛନ୍ତି । ଘରେ ପାଠ ପଢ଼ିବାକୁ ଏକରୁ ଅଧିକ  ପିଲା ଥିଲେ ଏଇ ଫର୍ମ କିଣା ଖର୍ଚ୍ଚ ସେଇ ଅନୁପାତରେ ବଢୁଛି । ଯେକୌଣସି ମେଟ୍ରୋ ସହରରେ ନର୍ସରୀ ତଥା କେଜି ଶ୍ରେଣୀରେ ନାଁ ଲେଖା ପାଇଁ ଫର୍ମ କିଣା ବିକାରେ ବାର୍ଷିକ ପ୍ରାୟ ଏକହଜାର କୋଟି ଟଙ୍କାର କାରବାର ହୁଏ ବୋଲି ଖବର ଆସେ ।

ନର୍ସରୀ ଏବଂ କେଜି ନାମ ଲେଖା ବର୍ତ୍ତମାନ ଏକ ଭଲ ବ୍ୟବସାୟ । ସହରୀ ବାପା ମା'ଙ୍କର ନିଜ ପିଲାକୁ ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼ାଇବାର ଆଗ୍ରହକୁ ଲକ୍ଷ୍ୟ କରି ଶିକ୍ଷା ବ୍ୟବସାୟୀମାନେ ଏକ ବଜାର ତିଆରି କରିଦେଇଛନ୍ତି । ମୋଟା ଏକ ରଙ୍ଗୀନ ପ୍ରସ୍‌ପେକ୍ଟସ ଫର୍ମରେ କିପରି ଆଶାୟୀମାନଙ୍କୁ ଆକର୍ଷିତ କରିହେବ ଏଥିନେଇ ପ୍ରତିଯୋଗିତା ମଧ୍ୟ ଆରମ୍ଭ ହୋଇଯାଇଛି । ଭାରତର ପ୍ରତିଷ୍ଠିତ ଇଞ୍ଜିନିୟରିଂ କଲେଜ ଏବଂ ଅନେକ ବୈଷୟିକ ଶିକ୍ଷାନୁଷ୍ଠାନର ଫର୍ମର ଦାମ୍ ଠାରୁ ନର୍ସରୀ ସ୍କୁଲର ଫର୍ମ ଦାମ୍ ଏବେ ଯଥେଷ୍ଟ ଅଧିକ । ପ୍ରଶ୍ନ କଲେ ଅଭିଭାବକମାନେ ଉତ୍ତର ଦିଅନ୍ତି, ନାଁ ଲେଖାର ପଦ୍ଧତି ଜାଣିବାକୁ ଏପରି ପ୍ରସ୍‌ପେକ୍ଟର କିଣିବାକୁ ସେମାନେ ବାଧ୍ୟ ହେଉଛନ୍ତି ଏବଂ ପବ୍ଲିକ୍ ସ୍କୁଲର ପରିଚାଳକ କର୍ତ୍ତୃପକ୍ଷମାନେ ଲଘୁ ମନ୍ତବ୍ୟ ଦେଇ ବି କହନ୍ତି, ପିଲାଙ୍କୁ ଭବିଷ୍ୟତରେ ବିଦେଶ ଯିବାକୁ ହେଲେ ବିଦେଶୀ ପଇସା ଦେବାକୁ ହିଁ ହେବ । ବେଳ ଥାଉ ସଜାଗ ନହେଲେ ପିଲାର ଭବିଷ୍ୟତ ନଷ୍ଟ ହୋଇପାରେ ।

ପବ୍ଲିକ୍ ସ୍କୁଲ ପରିଚାଳନା କର୍ତ୍ତୃପକ୍ଷ ସ୍କୁଲରେ ଫି ବୃଦ୍ଧି ନେଇ ଆହୁରି ଏକ ସଫେଇ ବି କେମିତି ଅଜବ ଲାଗେ । ଯୁକ୍ତି ଆସେ, ବେତନ କମିଶନଙ୍କ ସୁପାରିଶ ଅନୁଯାୟୀ ଦେଶ ସାରା ସବୁ ଶିକ୍ଷକମାନଙ୍କର ଏବେ ଦରମା ବଢ଼ିଛି । ପବ୍ଲିକ୍ ସ୍କୁଲର କର୍ମଚାରୀଙ୍କ ପାଇଁ ତେଣୁ ଏଇ ଦରମା ବୃଦ୍ଧିକରିବାକୁ ପଡୁଛି । ପିଲାଙ୍କ ଠାରୁ ଅଧିକ ଟିଉସନ୍ ଫି ନନେଲେ ଏଇ ବର୍ଦ୍ଧିତ ଦରମା ଦେଇ ହେଉନାହିଁ । ଇଏତ ସ୍ୱେଚ୍ଛାକୃତ ବା ଭଲୁଣ୍ଟାରୀ ସାହାଯ୍ୟ । ପ୍ରତି ସ୍କୁଲରେ ଥିବା ଶିକ୍ଷକ ଅଭିଭାବକ ସଂଘ ମାଧ୍ୟମରେ ଏହା ସ୍ଥିରୀକୃତ ହୁଏ । ଅନେକ ସ୍କୁଲର ପରିଚାଳନା କମିଟିରେ ବି ଅଭିଭାବକଙ୍କ ପ୍ରତିନିଧି ଅଛନ୍ତି ।

ଘରୋଇ ସ୍କୁଲର କର୍ମଚରୀ ଏବଂ ବେତନ କମିଶନଙ୍କ ସୁପାରିଶ ଭିତରେ ଯେ କିଛି ସାମଞ୍ଜସ୍ୟ ଅଛି ଏହା କାହିଁକି ବୁଝାପଡେ ନାହିଁ । ଏବେ ମଧ୍ୟ ଅନେକ ପବ୍ଲିକ୍ ସ୍କୁଲର କର୍ମଚାରୀମାନେ ଅଣସଂଗଠିତ ଶ୍ରମିକ ଶ୍ରେଣୀ ଭିତରେ ଅଛନ୍ତି । ଏମାନଙ୍କର ଚାକିରି ନିରାପତ୍ତା ନାହିଁ । ସର୍ଭିସ୍ ନିୟମ ନାହିଁ । ନିଯୁକ୍ତି ତଥା ପଦୋନ୍ନତିର କିଛି ଗାଇଡଲାଇନ୍ ନାହିଁ । ଅଭିଭାବକଙ୍କ ଆଗ୍ରହ ଏବଂ ବ୍ୟଗ୍ରତାକୁ ଶୋଷଣ କରି ଏବଂ ବେତନ କମିଶନଙ୍କ ଏକ ବାହାନା ଖୋଜି ସ୍କୁଲରେ ଫି ବୃଦ୍ଧି କରାଯାଉଛି ବୋଲି ଅନେକ ଅଭିଭାବକ ମତ ଦିଅନ୍ତି ।

ଏଇ କିଛି ଦିନ ତଳେ ଜଣେ ଆତ୍ମୀୟଙ୍କ ବ୍ୟସ୍ତତା ଲକ୍ଷ୍ୟ କରି ପ୍ରଶ୍ନ କଲି, 'ତୁମ ପିଲାର ନାଁ ଲେଖା ହେଲା ?' ସେ ଉତ୍ତର ଦେଲେ, 'ଏ ପର୍ଯ୍ୟନ୍ତ ହୋଇନି । ଚେଷ୍ଟାରେ ଅଛି । ପାଞ୍ଚଟି ସ୍କୁଲରୁ ଫର୍ମ ଆଣିଛି । ଗୋଟିଏ ସ୍କୁଲର ଫର୍ମ ଆଣିଲେ ଯେ ସେଇ ସ୍କୁଲରେ ସିଟ୍ ମିଳିଯିବ ତାର କିଛି ନିଶ୍ଚିତତା ନାହିଁ ।' ଉତ୍ତରରେ ଅନ୍ୟ ଯାହା ସେ କହିଲେ ଶୁଣି ଆଶ୍ଚର୍ଯ୍ୟ ଲାଗିଲା । ନର୍ସରୀ ସ୍କୁଲରେ ପିଲାଙ୍କୁ ପାଠ ପଢାଇବାକୁ ହେଲେ ବାପା ମା'ଙ୍କ ସାକ୍ଷାତକାର ଦେବାକୁ ହେଉଛି । ଅଭିଭାବକଙ୍କ ଶିକ୍ଷାଗତ ଯୋଗ୍ୟତା ଦେଖାଯାଉଛି । ପ୍ରବନ୍ଧ ପ୍ରତିଯୋଗିତା ହେଉଛି । ଉପାର୍ଜନ, ଦରମା, ସାମାଜିକ ପ୍ରତିଷ୍ଠାକୁ ବି ବିଚାରକୁ ନିଆଯାଉଛି । କୌଣସି ଅଭିଭାବକ ସେଇ ସ୍କୁଲର ପୁରାତନ ଛାତ୍ର ହୋଇଥିଲେ କିମ୍ବା ପୂର୍ବରୁ ସେହି ଅଭିଭାବକଙ୍କର ଅନ୍ୟ କୌଣସି ପିଲା ସେଠି ପାଠପଢୁଥିଲେ ବା ପଢ଼ିଥିଲେ ନାମ ଲେଖାରେ ଅଗ୍ରାଧିକାର ଦିଆଯାଉଛି । ଏସବୁ ତାଙ୍କ ଭାଷାରେ ସିବଲିଙ୍ଗ୍ ପଏଣ୍ଟ । ପିଲାଙ୍କ କ୍ଷମତା ସହ ବାପା ମା'ଙ୍କ ଦକ୍ଷତା ନଥିଲେ ଆଡମିସନ ମିଳୁନି ଏବଂ ଜନ୍ମ ତାରିଖ ସାର୍ଟିଫିକେଟ ତଥା ବାସସ୍ଥାନ ସାର୍ଟିଫିକେଟ ନଥିଲେ ପବ୍ଲିକ୍ ସ୍କୁଲରେ ନାଁ ଲେଖା ମନା ।

ଆତ୍ମୀୟଙ୍କୁ ପ୍ରଶ୍ନ କଲି, 'ଯଦି ପବ୍ଲିକ୍ ସ୍କୁଲରେ ପିଲାଙ୍କ ନାଁ ଲେଖା ଏତେ

କଷ୍ଟ ତେବେ ସରକାରୀ ସ୍କୁଲରେ ପିଲାଙ୍କୁ ପଢଉନ କାହିଁକି ? ଗାଁ ସ୍କୁଲରେ ପାଠପଢ଼ି ପିଲାମାନେ କ'ଣ ଆଇଏଏସ୍, ଡାକ୍ତର, ଅଧ୍ୟାପକ, ଇଞ୍ଜିନିୟର ହୋଇ ନାହାନ୍ତି ? କର୍‌ପୋରେଟ ସେକ୍ଟରରେ କାମ କରି ବିଦେଶ ଯାଇନାହାନ୍ତି ? ପିଲାଙ୍କ ସଫଳତା ସହ ପବ୍ଲିକ୍ ସ୍କୁଲର ପାଠପଢ଼ାର କିଛି ସଂପର୍କ ନାହିଁ । ଏହା କେବଳ ଅଭିଭାବକଙ୍କ ଆତ୍ମମର୍ଯ୍ୟାଦା ଏବଂ ବଡ଼ିମାର ପ୍ରଶ୍ନ ହୋଇପାରେ । ସରକାରୀ ସ୍କୁଲରେ ତ ଏବେ ଯୋଗ୍ୟ ଉଚ୍ଚ ଶିକ୍ଷିତ ଶିକ୍ଷକ ଶିକ୍ଷୟିତ୍ରୀମାନେ ଚାକିରି କରୁଛନ୍ତି । ସେମାନଙ୍କ ଭିତରୁ ପ୍ରାୟ ଅଧିକାଂଶଙ୍କର ପ୍ରଥମ ଶ୍ରେଣୀ କ୍ୟାରିୟର । ଅନ୍ୟପକ୍ଷରେ ଦେଖିଲେ ପ୍ରାୟ ଅଧିକାଂଶ ପବ୍ଲିକ୍ ସ୍କୁଲରେ କାର୍ଯ୍ୟରତ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଶିକ୍ଷାଦାନ ପାଇଁ ଯେଉଁ ସର୍ବନିମ୍ନ ତାଲିମପ୍ରାପ୍ତ ଯୋଗ୍ୟତା ଦରକାର, ତାହା ନାହିଁ । ତଥାପି ପବ୍ଲିକ୍ ସ୍କୁଲ ପ୍ରତି ଏ ମୋହ କାହିଁକି ବୋଲି ଏ ପ୍ରଶ୍ନ ବି କଲି ।'

ଉତ୍ତର ଅବଶ୍ୟ ସେଇ ପାରମ୍ପରିକ ଥିଲା । ସରକାରୀ ସ୍କୁଲରେ ଭିତ୍ତିଭୂମି ନାହିଁ । ଶିକ୍ଷାଦାନ ପାଇଁ ଶିକ୍ଷାଦାନର ସରଞ୍ଜାମ ନାହିଁ । ବିଦ୍ୟାଳୟରେ ଟଏଲଟ ନାହିଁ । ପିଇବା ପାଣି ଏବଂ ଖେଳପଡିଆ ନାହିଁ । ସରକାରୀ ସ୍କୁଲରେ ଗୁଣାତ୍ମକ ଶିକ୍ଷା ଦିଆଯାଉନାହିଁ । ପବ୍ଲିକ୍ ସ୍କୁଲକୁ ଯିବାର ମୋହ ସେଇଥିପାଇଁ ହିଁ ହୋଇଛି', ଆତ୍ମୀୟ ଉତ୍ତର ଦେଲେ । ସତକଥା ହେଲା, ପବ୍ଲିକ୍ ସ୍କୁଲର ପାଠପଢ଼ା ପାଇଁ ଏ ଚାହିଦା ଏବେ ଆଉ ବ୍ୟକ୍ତିଗତ ଘରୋଇ କଥା ହୋଇ ରହିନାହିଁ । ଏହା ସାର୍ବଜନୀନ ହୋଇଗଲାଣି । ଏଥିନେଇ ବିବାଦକୁ ଆଉ ନଜର ଅନ୍ଦାଜ କରାହେଉନି । ଏଥିନେଇ ମାନ୍ୟବର ସୁପ୍ରିମକୋର୍ଟଙ୍କୁ ବି ପବ୍ଲିକ୍ ସ୍କୁଲରେ ନାଁ ଲେଖା ଉପରେ ହସ୍ତକ୍ଷେପ କରିବାକୁ ପଡିଥିଲା । ନର୍ସରୀ ଏବଂ କେଜି ଶ୍ରେଣୀରେ ନାଁ ଲେଖାଇ 'ଗାଙ୍ଗୁଲି କମିଟି' ସୁପାରିଶକୁ ଲାଗୁ କରିବାକୁ ସେ ତାଙ୍କ ରାୟରେ କଡାକଡି ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଗାଙ୍ଗୁଲି କମିଟି ସୁପାରିଶ ଯେ ଅନେକ ସ୍ଥାନରେ ବୁଝାପଡୁନି ଏବଂ ତାର ସୁଯୋଗ ନେଇ ପବ୍ଲିକ୍ ସ୍କୁଲର ପରିଚାଳନା କର୍ତ୍ତୃପକ୍ଷମାନେ ଏହାର ଦୁପ୍ରୟୋଗ କରୁଛନ୍ତି, ଏପରି ଅଭିଯୋଗ ବି ହୁଏ ।

ପ୍ରାଥମିକ ସ୍କୁଲରେ ନାଁ ଲେଖା ପ୍ରକୃତରେ ଏକ ସମ୍ବେଦନଶୀଳ ପ୍ରସଙ୍ଗ । କଞ୍ଚାମାଟିରେ ଗଢା ମୂର୍ତ୍ତି ପ୍ରତି ସାବଧାନ ନହେଲେ ଏହା ବିକୃତ ହୋଇପାରେ । ତେବେ ଏପରି ଏକ ଆବେଗରୁ ଫାଇଦା ନେଇ ଯେ ଶିକ୍ଷା ମାଫିଆ ମାନେ ବ୍ୟବସାୟ କରିବେ, ରାଷ୍ଟ୍ର ଏବଂ ସରକାର ଏଥିନେଇ ସତର୍କ ରହିବା ଦରକାର ।



# ର୍ୟାଗିଂ ମଜାକ୍ ନୁହେଁ

**ଡା**କ୍ତର ହେବାକୁ ହରିଶ୍ ପିଲାବେଳୁ ସ୍ୱପ୍ନ ଦେଖିଥିଲା । ଭଲ ପାଠ ମଧ୍ୟ ସେ ପଢୁଥିଲା । ଗତବର୍ଷ ଡାକ୍ତରୀ ପ୍ରବେଶିକା ପରୀକ୍ଷାରେ ଉଚ୍ଚ ର୍ୟାଙ୍କ ରଖିବା ପରେ ସେ ଆହ୍ଲାବାଦର ମୋତିଲାଲ ନେହୁରୁ ମେଡିକାଲ କଲେଜରେ ନାଁ ଲେଖାଇ ଥିଲା । ହରିଶ ଜାଣିନଥିଲା ଯେ, ତାର ଜୀବନର ସ୍ୱପ୍ନ ଏତେ ଶୀଘ୍ର ଭାଙ୍ଗିଯିବ । ରଙ୍ଗୀନ ସ୍ୱପ୍ନଟି ଗୋଟିଏ ଧକ୍କାରେ ଦିନେ ଏକ ଦୁଃସ୍ୱପ୍ନରେ ପରିଣତ ହୋଇଯିବ ।

ହଷ୍ଟେଲରେ ପ୍ରଥମ ବର୍ଷ ପିଲାଙ୍କ ଉପରେ ସିନିୟରମାନେ ର୍ୟାଗିଂ ଆରମ୍ଭ କଲେ । ହରିଶ୍‌କୁ ସେମାନେ ପ୍ରଥମେ ନାଚିବାକୁ କହିଲେ । ହରିଶ୍ ନାଚିଲା । ତାକୁ ଗୀତ ବୋଲିବାକୁ କହିଲେ, ସେ ବୋଲିଲା । ଏପରି କାହିଁକି କରୁଛ ବୋଲି ପ୍ରଶ୍ନ କଲେ, ସିନିୟରମାନେ ଜବାବ ଦେଲେ, ଗତବର୍ଷ ବି ତାଙ୍କୁ ତାଙ୍କ ସିନିୟର ଭାଇମାନେ ଏପରି କରିଥିଲେ । ଏମିତି କଲେ ଆବେଗିକ ସଂପର୍କ ବଢେ । ବନ୍ଧୁତ୍ୱ ଦୃଢ ହୁଏ । ର୍ୟାଗିଂ ତ ଯନ୍ତ୍ରଣା ନୁହେଁ ।

ହରିଶ୍ ସହ ଏଇ ତଥା କଥିତ ଆବେଗିକ ସଂପର୍କ କେବଳ ନାଚ ଗୀତରେ ଅଟକି ରହିନଥିଲା । ଦିନେ ରାତି ଅଧରେ କିଛି ସିନିୟର ପିଲାଏ ତାକୁ ଡାକି ନେଲେ । ଜଳନ୍ତା ଇଲେକ୍‌ଟ୍ରି ହିଟର ଉପରେ ପରିସ୍ରା କରିବାକୁ ତାକୁ ବାଧ୍ୟ କଲେ । ମାଡ଼ ଭୟରେ ହରିଶ୍ ସେ କାମ କଲା ଏବଂ ହଠାତ୍ ସେ ଅଚେତ ହୋଇପଡିଲା । ଦୈହିକ ତଥା ମାନସିକ ଯନ୍ତ୍ରଣା ଏତେ ସାଂଘାତିକ ଥିଲା ଯେ ସେ ହଷ୍ଟେଲରେ ରହି ଡାକ୍ତରୀ ପାଠ ପଢିବାକୁ ମୋଟେ ଆଉ ଆଗ୍ରହୀ ନଥିଲା । ଅଧାରୁ ସେ ପାଠ ଛାଡି ଦେଲା ।

ଇଏ ଥିଲା ହରିଶ୍ ସଂପର୍କରେଏକ ମିଡିଆ ରିପୋର୍ଟ । ଏପରି ଲଜ୍ଜାକର ପରିସ୍ଥିତିରେ ଭାରତ ବର୍ଷରେ ଅନେକ ଉଚ୍ଚ ଶିକ୍ଷାନୁଷ୍ଠାନ ମାନଙ୍କରେ ହରିଶ୍ ପରି ଅନେକ ଛାତ୍ରଛାତ୍ରୀ ଯନ୍ତ୍ରଣାର ଶିକାର ହୁଅନ୍ତି । ସେମାନେ କଷ୍ଟ ସହି ନପାରି ପାଠ ଛାଡନ୍ତି । ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କରେ ଏହି କାର୍ଯ୍ୟ କେବଳ ଚାଲେ । ଏହାର ନାଁ ଦିଆଯାଇଛି ର୍ୟାଗିଂ । ର୍ୟାଗିଂ ଅର୍ଥ ହେଲା, ଯେଉଁଠି ସିନିୟର ଛାତ୍ରମାନେ ଜୁନିୟର ଛାତ୍ରମାନଙ୍କୁ ଦୈହିକ ଏବଂ ମାନସିକ ଯନ୍ତ୍ରଣା ଦିଅନ୍ତି । ଏପରି କରିବାକୁ

ସେମାନେ ଏହାକୁ ଏକ ସାମାଜିକ ମଞ୍ଜୁରୀ ବୋଲି ଧରି ନେଇଥାଆନ୍ତି । ପଚାରିଲେ ସିନିୟରମାନେ ଉତ୍ତର ଦିଅନ୍ତି, ଏହା ଏକ ପରିହାସ, ମଜା, ଫନ୍ । ସତକଥା କିନ୍ତୁ ହେଲା ର୍ୟାଗିଂ ଯେଉଁ ପ୍ରକାରର ହେଉନା କାହିଁକି ଏହା କ୍ଷତିକାରକ ଘଟଣା । ପୀଡ଼ିତଙ୍କ ପାଇଁ ଏହା ଭୟଙ୍କର ଅନୁଭୂତିଟିଏ ହିଁ ଆଣିଥାଏ ।

ର୍ୟାଗିଂକୁ ନେଇ ସର୍ଭେ କରୁଥିବା ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବେ ରିପୋର୍ଟଟିଏ ଦେଇଛି । ଏଥିରେ ଅଛି, ଗତ ସାତ ବର୍ଷ ଭିତରେ ଏହି ର୍ୟାଗିଂ ଯୋଗୁଁ ୨୫ ଜଣ ପିଲାଙ୍କର ମୃତ୍ୟୁ ହୋଇଛି । ଅନେକ ପିଲା ଦୈହିକ ତଥା ମାନସିକ ଭାବେ ଆହତ ହୋଇଛନ୍ତି ଏବଂ ଅନେକ ଘଟଣାରେ ଶିକ୍ଷାନୁଷ୍ଠାନର କର୍ତ୍ତୃପକ୍ଷ କିଛି କାର୍ଯ୍ୟାନୁଷ୍ଠାନ କରି ନାହାନ୍ତି ।

ଏହା ସତ ଯେ ର୍ୟାଗିଂରେ ଶିକାର ହୋଇଥିବା ପିଲାଟି ଉପରେ ମାନସିକ ଚାପ ପଡ଼ିଥାଏ । ଏଥିନେଇ ଦୀର୍ଘକାଳୀନ ମାନସିକ ଅବସାଦ ସୃଷ୍ଟି ହୋଇଥାଏ । ଅନେକଙ୍କୁ ତ ସବୁ କାମ ଭୟ ଭୟ ଲାଗେ । ଦୁର୍ବଳମନା ପିଲାଙ୍କୁ ର୍ୟାଗିଂ ବେଶି ପ୍ରଭାବିତ କରେ । ଆତ୍ମବିଶ୍ୱାସ ସେମାନଙ୍କର ହ୍ରାସ ପାଇଥାଏ । କିଛି ପିଲା ଅସହ୍ୟ ମାନସିକ ଚାପରୁ ଆତ୍ମହତ୍ୟା କରନ୍ତି ଏବଂ କିଛି ଛାତ୍ରଛାତ୍ରୀ ଆତ୍ମହତ୍ୟାର ଉଦ୍ୟମ କରିଥାନ୍ତି । ଅଧାରୁ ପାଠପଢା ବନ୍ଦ କରିବା ଅନେକଙ୍କ ପାଇଁ ଏକ ବାଧ୍ୟତା ହୋଇଥାଏ । ଏନ୍‌ଜିଓର ସର୍ଭେ ରିପୋର୍ଟ ଅନୁଯାୟୀ ଏ ପର୍ଯ୍ୟନ୍ତ ଭାରତବର୍ଷରେ ଯେଉଁ ୨୫ ଜଣ ପିଲାଙ୍କର ମୃତ୍ୟୁ ଘଟିଛି ଏହା ସାମାନ୍ୟ ଆତ୍ମହତ୍ୟା ଘଟଣା ନୁହେଁ । ଏହା ପୁରାପୁରି ହତ୍ୟା ଘଟଣା । ର୍ୟାଗିଂ ହିଁ ଏହାର ପୃଷ୍ଠଭୂମି ।

ଯଦି ର୍ୟାଗିଂର ସୃଷ୍ଟି ଏବଂ ବୃଦ୍ଧିର କିଛି କାରଣ ଦିଆଯାଏ ପ୍ରଥମ କାରଣଟି ହେଉଛି ଧାରାବାହିକତା । ଚଳିତ ବର୍ଷ ଯିଏ ର୍ୟାଗିଂର ଶିକାର ହୋଇଥାଏ ପରବର୍ଷ ସେ ତାର ଜୁନିୟରଙ୍କୁ ର୍ୟାଗିଂ କରିବାକୁ ମାନସିକତା ରଖିଥାଏ । ର୍ୟାଗିଂର ସୁଯୋଗ ନଥିଲେ ବି ଏଥିରେ ସେ ସୁଯୋଗ ସୃଷ୍ଟି କରେ । ର୍ୟାଗିଂ କରେ । ଉଭୟ ସହର ଏବଂ ଗ୍ରାମାଞ୍ଚଳର ପିଲାଏ ବି ଏହି କାମ କରନ୍ତି । ର୍ୟାଗିଂ ଆଉ ଏକମାତ୍ର ସହରୀ ପିଲାଙ୍କର କାମ ନୁହେଁ ।

ଦ୍ୱିତୀୟ କାରଣଟି ହେଉଛି, ଅନେକ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷକମାନେ ବି ର୍ୟାଗିଂକୁ ପ୍ରଶୟ ଦେଇଥାଆନ୍ତି । ର୍ୟାଗିଂରେ ସଂପୃକ୍ତ ପିଲାଙ୍କୁ ଏମାନେ ପ୍ରତିରୋଧ କରନ୍ତି ନାହିଁ କିମ୍ବା ଦଣ୍ଡ ଦିଅନ୍ତି ନାହିଁ । ଶିକ୍ଷକମାନେ ଚୁପ୍ ରହିବାର କିଛି ରାଜନୈତିକ ଚାପ ବି ଥାଏ, କାରଣ ପ୍ରତି କ୍ୟାମ୍ପସର ସଂପ୍ରତି ରାଜନୀତିକରଣ ହୋଇସାରିଛି । ଅନେକ ଶିକ୍ଷାନୁଷ୍ଠାନର ମାଲିକ ବି ରାଜନେତାମାନେ ଅଛନ୍ତି ।

ର୍‍ୟାଗିଂ ବୃଦ୍ଧିର ତୃତୀୟ କାରଣ ହେଉଛି, ଏହାର ଶିକାର ହୋଇଥିବା ଅନେକ ଛାତ୍ରଛାତ୍ରୀ ପୋଲିସରେ କେଶ୍ ଦାୟର କରନ୍ତି ନାହିଁ । ଏମାନେ କେଶ୍ ଦେବାକୁ ଭୟ କରନ୍ତି । ଏହା କଲେ ସେମାନଙ୍କର ପିତାମାତାଙ୍କର କାଳେ ସାମାଜିକ ପ୍ରତିଷ୍ଠା ନଷ୍ଟ ହେବ ଏବଂ ନିଜ ପ୍ରତି ସାମାଜିକ କଳଙ୍କଟିଏ ଲାଗିଯିବ, ଏଇଥିପାଇଁ ସେମାନେ ପୋଲିସ ପାଖକୁ ଯାଆନ୍ତି ନାହିଁ ।

ର୍‍ୟାଗିଂର ଚତୁର୍ଥ କାରଣଟି ହେଲା, ଅନେକ ଶିକ୍ଷାନୁଷ୍ଠାନରେ ଏଇ ର୍‍ୟାଗିଂ କଥା ସଂପୃକ୍ତ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆସିଲେ ବି ଏହା ଉପରେ ସେମାନେ କିଛି କାର୍ଯ୍ୟାନୁଷ୍ଠାନ ନିମନ୍ତେ ତତ୍ପର ନଥାନ୍ତି । ବରଂ ଘଟଣାଟି ଚାପି ଦେବାକୁ ସେମାନେ ଚେଷ୍ଟା କରନ୍ତି । ଏଇଥିପାଇଁ ଯେ, କାର୍ଯ୍ୟାନୁଷ୍ଠାନ କଲେ ଘଟଣା ପ୍ରଘଟ ହେବ ଏବଂ ସେମାନଙ୍କର ଖ୍ୟାତିରେ ଆଞ୍ଚ ଆସିବ । ଅନୁଷ୍ଠାନ ଥରେ ବଦନାମ୍ ହୋଇଗଲେ ପିଲାଙ୍କ ନାମ ଲେଖା ଯେ ପ୍ରଭାବିତ ହେବ, ଏ ଆଶଂକା ଥାଏ ।

ପ୍ରକାଶ ଥାଉକି ଭାରତର ଅଧିକାଂଶ ବୈଷୟିକ ଶିକ୍ଷାନୁଷ୍ଠାନ ସଂପ୍ରତି ଘରୋଇ ସଂସ୍ଥାମାନଙ୍କ ଦ୍ୱାରା ପରିଚାଳିତ ହେଉଛି । ତାଙ୍କର ଏକମାତ୍ର ଲକ୍ଷ୍ୟ ହେଉଛି, ଶିକ୍ଷାର ବ୍ୟବସାୟିକରଣ କରିବା ଏବଂ ଲାଭ କମେଇବା । ଅନୁଷ୍ଠାନର ବଦନାମ ଯେ ଏମାନଙ୍କର ଆର୍ଥିକ କ୍ଷତି ଘଟେଇବ, ଖାସ୍ ଏଇଥିପାଇଁ ଅନେକ ଶିକ୍ଷାନୁଷ୍ଠାନ ର୍‍ୟାଗିଂ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରନ୍ତି ନାହିଁ କିମ୍ବା ଏଥିନେଇ ପୋଲିସ ଷ୍ଟେସନକୁ ଯିବାକୁ ଉଚିତ୍ ମଣନ୍ତି ନାହିଁ ।

ସ୍ପଷ୍ଟ କହିଲେ ର୍‍ୟାଗିଂ ଏକ ମାନବିକ ଅଧିକାର ପ୍ରସଙ୍ଗ । ଅଧିକାରର ସୁରକ୍ଷା ପାଇଁ ଏ ସଂପର୍କରେ ଅନେକ ରାଜ୍ୟରେ ଆଇନମାନ ଥିଲେ ବି ସେତେ ପ୍ରଭାବଶାଳୀ ଢଙ୍ଗରେ ଏହା କାର୍ଯ୍ୟକାରୀ ହେଉନାହିଁ । ଶିକ୍ଷାନୁଷ୍ଠାନମାନଙ୍କରେ ଉଣେଇଶ ନବେ ଦଶକରୁ ଆରମ୍ଭ ହୋଇଥିବା ର୍‍ୟାଗିଂର ଏଇ ଅଭଦ୍ରୋଚିତ ବ୍ୟବହାର ଏବେ ତାର ଏକ ଚରମ ସୀମାରେ ପହଞ୍ଚି ଯାଇଛି । ର୍‍ୟାଗିଂ ପ୍ରକୃତରେ କ୍ଷମତାର ଏକ ଅପବ୍ୟବହାର ନା ଶୃଙ୍ଖଳାର ଏକ ଜୁଭେନାଇଲ ବିଚ୍ୟୁତି, ଏହା ଏବେ ବିତର୍କର ପ୍ରଶ୍ନ ।

ସୁଖର କଥା, ଭାରତର ମାନ୍ୟବର ସୁପ୍ରମିକୋର୍ଟ ର୍‍ୟାଗିଂକୁ ଏକ ଧର୍ତ୍ତବ୍ୟ ଅପରାଧଭାବେ ଗ୍ରହଣ କରିବାକୁ ଏକ କଡା ନିର୍ଦ୍ଦେଶନାମା ଜାରି କରିଛନ୍ତି । ଗତ କିଛି ବର୍ଷ ଧରି ର୍‍ୟାଗିଂ ସଂପର୍କିତ ଦୈହିକ ତଥା ଆବେଗିକ ଆଲୋଡନକୁ ନେଇ କିଛି ସ୍ପେସିଆଲ ଲିଭ୍ ପିଟିସନ୍ ଏବଂ କିଛି ଜନସ୍ୱାର୍ଥ ମାମଲା ମାନ୍ୟବର ସୁପ୍ରିମକୋର୍ଟରେ ବିଚାର ପାଇଁ ପଡି ରହିଥିଲା । ଏଇ ଅପିଲ ବିଚାର କରି ମାନ୍ୟବର ସର୍ବୋଚ୍ଚ ନ୍ୟାୟଳୟ ଯେଉଁ ନିର୍ଦ୍ଦେଶନାମା ଜାରି କରିଛନ୍ତି ଏହା ଏବେ ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ଭୟର ବାତାବରଣ ସୃଷ୍ଟି କରିଦେଇଛି ।

ସୁପ୍ରିମକୋର୍ଟଙ୍କର ନିର୍ଦ୍ଦେଶ ଅଛି, ର୍ୟାଗିଂ କେଶ୍‌ରେ ପିଲା ଏବଂ ପିଲାର ଅଭିଭାବକ ଶିକ୍ଷାନୁଷ୍ଠାନ ବିରୁଦ୍ଧରେ ପୋଲିସ ଥାନାରେ ଏଫ୍.ଆଇ.ଆର୍ ଦାଖଲ କରିପାରିବେ । ର୍ୟାଗିଂକାରୀଙ୍କୁ ଭାରତୀୟ ଅପରାଧ ଆଇନ ଅନୁଯାୟୀ ଦଣ୍ଡିତ କରିବାକୁ ପ୍ରାର୍ଥନା କରିବେ । ଶିକ୍ଷାନୁଷ୍ଠାନ ମଧ୍ୟ ର୍ୟାଗିଂରେ ସଂପୃକ୍ତ ଦୋଷୀ ଛାତ୍ରଛାତ୍ରୀଙ୍କ ବିରୁଦ୍ଧରେ ପୋଲିସ୍ ଥାନାକୁ ଯାଇପାରିବେ । ଯଦି ଶିକ୍ଷାନୁଷ୍ଠାନ ଜାଣି ଜାଣି କୌଣସି ର୍ୟାଗିଂ ଘଟଣାରେ ଏଫ୍.ଆଇ.ଆର୍ ଦେବାକୁ ବିଳମ୍ବ କରନ୍ତି, ସଂପୃକ୍ତ ଶିକ୍ଷାନୁଷ୍ଠାନ ବିରୁଦ୍ଧରେ ଏଫ୍.ଆଇ.ଆର୍ ଦିଆଯିବ । ଅନୁଷ୍ଠାନର ୟୁଜିସି ଅନୁଦାନ ବନ୍ଦ କରାଯିବ ଏବଂ ଅନୁଷ୍ଠାନର ସ୍ୱୀକୃତି ପ୍ରତ୍ୟାହାର ହେବ । ୨୦୦୧ ମସିହାରେ ର୍ୟାଗିଂ ସମ୍ପର୍କରେ ମାନ୍ୟବର ସୁପ୍ରିମକୋର୍ଟ ଦେଇଥିବା ନିର୍ଦ୍ଦେଶନାମାର ଏହା ଏବେ ଏକ ପରିବର୍ଦ୍ଧିତ ସଂସ୍କରଣ ।

ରାୟ ଦେବା ନ୍ୟାୟାଳୟର କାମ । ମାନବିକ ଅଧିକାର ଭଙ୍ଗ ନହେଉ, ଏହା ନ୍ୟାୟାଳୟ ଚାହାନ୍ତି । ଅଥଚ ମାନ୍ୟବର ନ୍ୟାୟାଳୟଙ୍କ ରାୟକୁ ପାଳନ କରିବା ଦାୟିତ୍ୱ ହେଉଛି କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର । ର୍ୟାଗିଂ ସଂପର୍କିତ ନିର୍ଦ୍ଦେଶନାମାକୁ କେନ୍ଦ୍ର ତଥା ରାଜ୍ୟ ସରକାର ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଦେଖିବାର କଥା ।

ର୍ୟାଗିଂ ଉପରେ କାମ କରୁଥିବା କିଛି ଗବେଷକଙ୍କ ପ୍ରସ୍ତାବ ଏବେ ନଜରକୁ ଆସିଲା । ସେମାନଙ୍କ ପ୍ରସ୍ତାବ ହେଲା, ଯେହେତୁ ର୍ୟାଗିଂ ଏକ ମାନବିକ ଅଧିକାର ପ୍ରଶ୍ନ, ଏଇ ପ୍ରସଙ୍ଗକୁ ନେଇ ଏକ ସିଲାବସ ପ୍ରସ୍ତୁତ ହେବା ଦରକାର ଏବଂ ଉଭୟ କେନ୍ଦ୍ରୀୟ ତଥା ରାଜ୍ୟ ବିଦ୍ୟାଳୟ ମାନଙ୍କରେ ପିଲାଙ୍କୁ ଏହା ପାଠ ଭାବେ ପଢାଇବା ଉଚିତ । ସ୍କୁଲ ସ୍ତରରୁ ର୍ୟାଗିଂ ନେଇ ସଚେତନତା ସୃଷ୍ଟି ହେଲେ ଯେ, କଲେଜ ସ୍ତରରେ ଏହାକୁ ରୋକାଯାଇ ପାରିବ, ଏଇ ଗବେଷକମାନେ ଦାବି କରନ୍ତି । ନୂଆ ପିଲାଙ୍କ ପରିଚୟ ତଥା ପିଲା ପିଲାଙ୍କ ଭିତରେ ଭାବଗତ ସଂପର୍କ ପାଇଁ ଅନୁଷ୍ଠାନରେ ଓରିଏଣ୍ଟେସନ କ୍ୟାମ୍ପ୍‌ମାନ କରାଯାଇପାରେ । ସମସ୍ତ ପ୍ରସ୍ତାବ ଏବଂ ନିର୍ଦ୍ଦେଶନାମା ସତ୍ତ୍ୱେ ଯେ କାହିଁକି ର୍ୟାଗିଂ କମୁନାହିଁ, ଏହା ସଂପ୍ରତି ବଡ ପ୍ରଶ୍ନବାଚୀ । ଯେଉଁ ସ୍ୱପ୍ନଟି ନେଇ କିଶୋରଟି ଉଚ୍ଚ ଶିକ୍ଷାନୁଷ୍ଠାନରେ ପହଞ୍ଚେ, ର୍ୟାଗିଂର ତାଡନାରେ ସେ ସ୍ୱପ୍ନ ତାର ଯେପରି ଆଉ ନ ଭାଙ୍ଗୁ, ସତର୍କ ରହିବା କଥା ।

ସାନ ଭାଇକୁ ବଡ ଭାଇଟି ଦୈହିକ ତଥା ମାନସିକ ଯନ୍ତ୍ରଣା ଦେବା ଏ କି ପରମ୍ପରା ?



# ରାଜକୋଷରୁ ନିର୍ବାଚନ ଖର୍ଚ୍ଚ

ସରକାରୀ ରାଜକୋଷରୁ ପ୍ରାର୍ଥୀଙ୍କ ନିର୍ବାଚନ ଖର୍ଚ୍ଚ ଭରଣ ହେବା ଉଚିତ ବୋଲି ଏଇ କିଛି ବର୍ଷ ଧରି ତର୍କ ଚାଲିଛି । ତର୍କ ଏଇଥିପାଇଁ ଯେ ଭାରତରେ ଦୁର୍ନୀତିର ମୂଳ କାରଣ ହେଉଛି ଏଇ ନିର୍ବାଚନୀ ଖର୍ଚ୍ଚ । ଏହି ଖର୍ଚ୍ଚକୁ ନିୟନ୍ତ୍ରଣ କରିପାରିଲେ ଦୁର୍ନୀତି ନିୟନ୍ତ୍ରିତ ହୋଇପାରିବ ବୋଲି ଏଠି ଅନେକଙ୍କ ଧାରଣା ।

ନିର୍ବାଚନ ଖର୍ଚ୍ଚ ସମ୍ପର୍କରେ ଭାରତର ନିର୍ବାଚନ କମିଶନଙ୍କ ୱେବ୍‌ସାଇଟ୍‌ରେ ଉଲ୍ଲେଖ ଥିବା କିଛି ତଥ୍ୟ ସଂପ୍ରତି ନଜରକୁ ଆସିଲା । ୨୦୧୪ ମସିହାରେ ହୋଇଥିବା ସାଧାରଣ ନିର୍ବାଚନରେ ରାଜନୈତିକ ଦଳ ମାନଙ୍କ ଖର୍ଚ୍ଚର ତାଲିକା ଏଥିରେ ଅଛି । ତାଲିକା ଦେଇ ନିର୍ବାଚନ କମିଶନ ଅନୁରୋଧଟିଏ କରିଛନ୍ତି - ଭୋଟଦାତାମାନେ ଏହାକୁ ଦେଖନ୍ତୁ, ପରଖନ୍ତୁ ଏବଂ ଏପରି ଏକ ବ୍ୟୟବହୁଳ ନିର୍ବାଚନ ଭବିଷ୍ୟତରେ ଭାରତୀୟ ଗଣତନ୍ତ୍ର ସହ୍ୟ କରିପାରିବ କି ନା ସେଥିନେଇ ବିତର୍କ କରନ୍ତୁ ।

ନିର୍ବାଚନ ଖର୍ଚ୍ଚର ହିସାବ ଠିକ୍ ଏମିତି - ଭାରତୀୟ ଜାତୀୟ କଂଗ୍ରେସର ଖର୍ଚ୍ଚ ହେଉଛି - ୫୨୫ କୋଟି ଟଙ୍କା । ଭାରତୀୟ ଜନତା ପାର୍ଟିର ଖର୍ଚ୍ଚ ୬୦୨ କୋଟି । ସବୁ ଛୋଟ ଜାତୀୟ ତଥା ଆଞ୍ଚଳିକ ଦଳ ଶତାଧିକ କୋଟି ଟଙ୍କା ଖର୍ଚ୍ଚ କରିଛନ୍ତି । ବିଜେପି ର ନିର୍ବାଚନ ଖର୍ଚ୍ଚ ଏଥର ସବୁ ଦଳ ଠାରୁ ଅଧିକ । ଜଣେ ଲୋକସଭା ପ୍ରାର୍ଥୀ ପାଇଁ ଖର୍ଚ୍ଚର ସିଲିଙ୍ଗ ବର୍ତ୍ତମାନ ସତୁରି ଲକ୍ଷ ଟଙ୍କା ରହିଛି ।

ଏକ ରିପୋର୍ଟ ଅନୁସାରେ ଗତ ଲୋକସଭା ନିର୍ବାଚନରେ ଭାରତୀୟ ରାଜନୈତିକ ଦଳମାନେ ଯେଉଁ ଖର୍ଚ୍ଚ କରିଛନ୍ତି ସେ ଖର୍ଚ୍ଚ ହେଉଛି ପ୍ରାୟ ପାଞ୍ଚ ବିଲିୟନ ଆମେରିକୀୟ ଡଲାର । ଭାରତୀୟ ମୁଦ୍ରାରେ ଏହା ପ୍ରାୟ ପଞ୍ଚତିରିଶି ହଜାର କୋଟି ଟଙ୍କା । ୨୦୦୯ ମସିହା ସାଧାରଣ ନିର୍ବାଚନ ଖର୍ଚ୍ଚ ଠାରୁ ଏହା ତିନି ଗୁଣ ଅଧିକ । ପ୍ରତି ନିର୍ବାଚନରେ ଏହି ଖର୍ଚ୍ଚ ବଢୁଛି । ଆମେରିକୀୟ ରାଷ୍ଟ୍ରପତି ନିର୍ବାଚନରେ ଏ ପର୍ଯ୍ୟନ୍ତ ସର୍ବୋଚ୍ଚ ସାତ ବିଲିୟନ ଡଲାର ଖର୍ଚ୍ଚ ହୋଇଛି ।

ଏମ୍‌ଏଲ୍‌ଏ ଏବଂ ଏମପି ପ୍ରାର୍ଥୀଙ୍କ ସର୍ବୋଚ୍ଚ ନିର୍ବାଚନ ଖର୍ଚ୍ଚ କେତେ ହେବ ତାର ଏକ ସିଲିଂ ନିର୍ବାଚନ କମିଶନ ଠିକ୍ କରିଛନ୍ତି । ଏମ୍‌ଏଲ୍‌ଏ ପ୍ରାର୍ଥୀଙ୍କ ପାଇଁ ଏ ସୀମା ହେଉଛି ୪୦ ଲକ୍ଷ ଟଙ୍କା ଏବଂ ଏମ୍‌ପିଙ୍କ କ୍ଷେତ୍ରରେ ଏ ସୀମା ହେଉଛି ୭୦

ଲକ୍ଷ ଟଙ୍କା । ଅବଶ୍ୟ ନିର୍ବାଚନୀ ଖର୍ଚ୍ଚର ଏ ସୀମା ସବୁ ରାଜ୍ୟ ପାଇଁ ଏକା ନୁହେଁ । ରାଜ୍ୟ ଅନୁସାରେ ଅଲଗା ।

ନିର୍ବାଚନ କମିଶନ ନିର୍ବାଚନ ଖର୍ଚ୍ଚର ତାଲିକା ଦେଲା ବେଳେ ଏହା ସ୍ପଷ୍ଟ କରିଦେଇଛନ୍ତି ଯେ ଖର୍ଚ୍ଚର ସୀମା ହ୍ରାସ କରିବା ପାଇଁ ସେ ଇଚ୍ଛୁକ ନୁହଁନ୍ତି ବରଂ ରାଜକୋଷରୁ ପ୍ରାର୍ଥୀମାନଙ୍କୁ ନିର୍ବାଚନ ଖର୍ଚ୍ଚ ଦେଲେ କେତେ ଦୂର ସୁବିଧାଜନକ ହେବ ତାହା ଉପରେ ଆଲୋଚନା ହେବା ଦରକାର । ଷ୍ଟେଟ୍ ଫଣ୍ଡିଙ୍ଗ୍ ହେଲେ ଦୁର୍ନୀତି ରୋକାଯାଇପାରିବ କି କମିଶନ ଏପରି ପ୍ରଶ୍ନଟିଏ କରିଛନ୍ତି ।

ସଂସ୍କାରବାଦୀ ଟି.ଏନ୍.ଶେଷାନ ନିର୍ବାଚନ ସଂସ୍କାର ନିଜେ କରିବାକୁ ଚାହୁଁଥିଲେ । ବର୍ତ୍ତମାନର ନିର୍ବାଚନ କମିଶନ କିନ୍ତୁ ସିଷ୍ଟମ ପରିବର୍ତ୍ତନରେ ସାଧାରଣ ଲୋକଙ୍କ ଭାଗୀଦାରୀ ଚାହାଁନ୍ତି ।

ରାଜକୋଷରୁ ନିର୍ବାଚନ ଖର୍ଚ୍ଚ ଉପରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ନିର୍ବାଚନ ପାଇଁ କଳା ଟଙ୍କାର ଆବଶ୍ୟକତା କାହିଁକି, ଏଥିନେଇ ଆଲୋଚନା କରିବାକୁ ଏ ଲେଖକ ଚାହେଁ ।

ଭାରତରେ ନିର୍ବାଚନ ଖର୍ଚ୍ଚ ଅଧିକ । ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଇଂଲଣ୍ଡକୁ ଛାଡି ଦେଲେ ପୃଥିବୀର କୌଣସି ଗଣତାନ୍ତ୍ରିକ ରାଷ୍ଟ୍ରରେ ଏତେ ଖର୍ଚ୍ଚ ହୁଏ ନାହିଁ । ପ୍ରତି ପାଞ୍ଚ ବର୍ଷରେ ଭାରତରେ ଯେତେ ନିର୍ବାଚନ ହୁଏ ସେଥିପାଇଁ କୁଆଡେ ପ୍ରାୟ ୭୦ ହଜାର କୋଟି ଟଙ୍କା ଖର୍ଚ୍ଚ କରାଯାଏ । ପରିସଂଖ୍ୟାନଟି ଆଶ୍ଚର୍ଯ୍ୟ ନିଶ୍ଚୟ ।

କୌଣସି ଏକ ନିର୍ବାଚନ ଏଠି ଆରମ୍ଭ ହେଲେ ମହୋତ୍ସବ ଆରମ୍ଭ ହୋଇଯାଏ । ଭୋଜିଭାତରୁ ମନୋରଞ୍ଜନ ଏବଂ ଆହୁରି ଅନେକ କିଛି ଏଥିରେ ଚାଲେ । ଅନ୍ୟ ଅର୍ଥରେ ଏହା ଭୋଟ କିଣା ଖର୍ଚ୍ଚ । ର୍‍ୟାଲି ଶୋଭାଯାତ୍ରାରେ ଖର୍ଚ୍ଚ ବଢ଼ି ଗଲାଣି । ଓଡିଶାରେ ପଞ୍ଚାୟତ ନିର୍ବାଚନର ଖର୍ଚ୍ଚ ନେଇ କୁହାଯାଏ, ଜିଲ୍ଲା ପରିଷଦ ପାଇଁ ପ୍ରାର୍ଥୀମାନେ ଜଣକେ କୁଆଡେ ପ୍ରାୟ ୨୦-୨୫ ଲକ୍ଷ ଟଙ୍କା ଏବଂ ୱାର୍ଡମେମ୍ବରମାନେ ଏହି ଖର୍ଚ୍ଚ ପ୍ରାୟ ଏକ ଲକ୍ଷ ଟଙ୍କାରୁ କମ୍ କରନ୍ତି ନାହିଁ ।

ନିର୍ବାଚନ ଖର୍ଚ୍ଚ ଏଠି ଅଧିକ ହେଲେ ବି ନିର୍ବାଚିତ ଲୋକ ପ୍ରତିନିଧିଙ୍କ ଦରମା ଅଧିକ ନୁହେଁ । ଆୟ ଏବଂ ବ୍ୟୟ ଭିତରେ ପାର୍ଥକ୍ୟ ବେଶି । ଖାଲି ସେତିକି ନୁହେଁ, ଏଠି ପୁନଃ ନିର୍ବାଚିତ ହେବା ଅଧିକାଂଶ କ୍ଷେତ୍ରରେ ବି ଅନିଶ୍ଚିତ । ଭୋଟରଙ୍କୁ ଏକଜୁଟ କରିବାକୁ ଯେଉଁ ସାଙ୍ଗଠନିକ ଖର୍ଚ୍ଚ ହୁଏ ତାର ପୁର୍ବାନୁମାନ କରିବା କଷ୍ଟ । ଭୋଟରଙ୍କ ସାଧାରଣ ଜୀବନ ଭିତରେ ମଧ୍ୟ ନେତାଟିଏ ସାମିଲ ହେବା ଦରକାର । ନଚେତ୍ ନିର୍ବାଚନ ବେଳେ ନିଜର ପରିଚୟ ତଥା ସ୍ଥିତି ଅତୁଟ ରଖିବା ଅସମ୍ଭବ

ହୋଇଯାଏ । ତ୍ରିନାଥ ମେଳା ଠାରୁ ଆରମ୍ଭ କରି ଭୋଟରଙ୍କ ବାହା ବ୍ରତ ପର୍ଯ୍ୟନ୍ତ ସବୁଠି ତେଣୁ ଗିଫ୍ଟ ଏବଂ ଚାନ୍ଦା ଦେବାକୁ ପଡେ । ଏଥିନେଇ ପ୍ରଶ୍ନ କଲେ, ଲୋକ ପ୍ରତିନିଧିମାନେ କହନ୍ତି, ଭୋଟ ବ୍ୟାଙ୍କ ତ ପୁଣି ରହିବ ।

ଖାସ୍ ସେଇଥିପାଇଁ ପ୍ରତ୍ୟେକ ରାଜନୈତିକ ଦଳ ଓ ନିର୍ବାଚିତ ପ୍ରତିନିଧିମାନେ ନିର୍ବାଚନଟିଏ ଆସିବା ପୂର୍ବରୁ ଅର୍ଥ ସଂଗ୍ରହ କରନ୍ତି । ଏହି ଅର୍ଥ ସଂଗ୍ରହ ଦୁଇଟି ବାଟରେ ହୁଏ । ପ୍ରଥମଟି ହେଲା, କମ୍ପାନୀମାନଙ୍କଠାରୁ ଚାନ୍ଦା ଆଦାୟ କରିବା ଏବଂ ଦ୍ୱିତୀୟଟି ହେଲା, ନିଜ ପଦବୀର ଅପବ୍ୟବହାର କରି ଲାଞ୍ଚ ନେବା । ଭାରତୀୟ ନିର୍ବାଚନ ପଦ୍ଧତି ଏବେ ଏହି ଉପାୟରେ ହିଁ ବଞ୍ଚିଛି ।

ରାଜକୋଷରୁ ନିର୍ବାଚନ ଖର୍ଚ୍ଚ ବା ଷ୍ଟେଟ୍ ଫଣ୍ଡିଙ୍ଗ୍ ହିଁ ବହୁଳ ନିର୍ବାଚନ ବ୍ୟୟ ରୋକିବାର ଏକମାତ୍ର ପନ୍ଥା କି, ଏ ପ୍ରଶ୍ନ ଆସେ । ଅବଶ୍ୟ ଏହାର ଏ ପର୍ଯ୍ୟନ୍ତ ପରୀକ୍ଷା ହୋଇନାହିଁ ।

ନିର୍ବାଚନ ଖର୍ଚ୍ଚ ପାଇଁ ରାଷ୍ଟ୍ରୀୟ ପାଣ୍ଠି ସ୍କିମ୍‌କୁ ପରୀକ୍ଷା କରି ରିପୋର୍ଟ ଦେବାକୁ ୧୯୯୮ ମସିହାରେ ଏକ ସଂସଦୀୟ କମିଟି ଗଠିତ ହୋଇଥିଲା । ଏ ସମ୍ପର୍କରେ କମିଟି ଅନେକ ପ୍ରସ୍ତାବ ମାଗି ବିଚାର କରିଛି ଏବଂ କିଛି ପ୍ରସ୍ତାବ ସହ ଏକ ରିପୋର୍ଟ ଦେଇଛି ।

ପ୍ରସ୍ତାବରେ ଉଲ୍ଲେଖ ଅଛି, ନିର୍ବାଚନୀ ଖର୍ଚ୍ଚ ନିମନ୍ତେ କେବଳ ସରକାରୀ ଅନୁଦାନରେ ଏକ ରାଷ୍ଟ୍ରୀୟ ପାଣ୍ଠି ଗଠିତ ହେବା ଦରକାର ଏବଂ ଏହି ପାଣ୍ଠି ନିର୍ବାଚନ ଆୟୋଗଙ୍କର ଅଧୀନରେ ରହିବା ଉଚିତ । କମିଶନ ଏହି ଫଣ୍ଡରୁ ଅର୍ଥ ଭାରତର ବିଭିନ୍ନ ସ୍ୱୀକୃତିପ୍ରାପ୍ତ ରାଜନୈତିକ ଦଳମାନଙ୍କୁ ଦେବେ ଏବଂ ଦଳମାନେ ସେମାନଙ୍କର ପ୍ରାର୍ଥୀମାନଙ୍କୁ ନିର୍ବାଚନ ପ୍ରଚାର ପାଇଁ ଅର୍ଥ ବାଣ୍ଟିବେ ।

ସରକାରୀ ପାଣ୍ଠିରୁ ନିର୍ବାଚନ ଖର୍ଚ୍ଚ ପାଇବା ପାଇଁ କିଛି ପ୍ରତିବନ୍ଧକ ରହିବା କଥା ସଂସଦୀୟ କମିଟି ସୁପାରିଶ କରିଛନ୍ତି । ଏଥରେ ଅଛି, ନିର୍ବାଚନରେ କିଛି ନିର୍ଦ୍ଦିଷ୍ଟ ପ୍ରତିଶତ ଭୋଟ ପାଇଲେ ହିଁ ଦଳଟି ଏହି ଅର୍ଥ ପାଇବା ପାଇଁ ହକଦାର ହେବେ । ଭୋଟ ପୂର୍ବରୁ ପ୍ରତି ରାଜନୈତିକ ଦଳଙ୍କୁ କିଛି ଅଗ୍ରୀମ ମିଳିବାର ବନ୍ଦୋବସ୍ତ ରହିବ ଏବଂ ଆବଶ୍ୟକୀୟ ପ୍ରତିଶତ ଭୋଟ ପାଇଲେ ଅବଶିଷ୍ଟ ଅର୍ଥ ମିଳିବ । ନିର୍ଦ୍ଦିଷ୍ଟ ପ୍ରତିଶତ ଭୋଟ ପାଇବାରେ ଦଳଟିଏ ବିଫଳ ହେଲେ ତାଙ୍କଠାରୁ ଅଗ୍ରୀମ ଅର୍ଥ ଫେରସ୍ତ ଅଣାଯିବ । କୌଣସି ରାଜନୈତିକ ଦଳଙ୍କ ଦ୍ୱାରା କମ୍ପାନୀ ବା କର୍ପୋରେଟ୍ ସେକ୍ଟରରୁ ଚାନ୍ଦା ସଂଗ୍ରହ ବ୍ୟବସ୍ଥା ଉପରେ କଟକଣା ରହିବ । ଦଳମାନଙ୍କର ଆକାଉଣ୍ଟ ପ୍ରତି ବର୍ଷ ଅଡିଟ୍ କରାଯିବ ।

ଏ ହେଉଛି ଷ୍ଟେଟ୍ ଫଣ୍ଡିଙ୍ଗ୍‌ର ରୂପରେଖ । ଏ ପର୍ଯ୍ୟନ୍ତ ଏହା ଉପରେ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ହୋଇନାହିଁ । ପ୍ରସ୍ତାବରେ ପୁଣି କୁହାଯାଇଛି - ନିର୍ବାଚନ ପାଇଁ ରାଷ୍ଟ୍ରୀୟ ପାଣ୍ଠି ଲାଗୁ ହେଲେ ଭାରତରେ ସାଧାରଣ ନିର୍ବାଚନ ନିମନ୍ତେ ମୋଟ ଖର୍ଚ୍ଚ ହେବ ମାତ୍ର ୨୫୦ କୋଟି ଟଙ୍କା । ଏଥିରେ ଭାରତବର୍ଷରେ ଆମିବା ପରି ବଢୁଥିବା ରାଜ୍ୟଦଳମାନଙ୍କର ସଂଖ୍ୟା ବୃଦ୍ଧି କମିବ; ନିର୍ବାଚନୀୟ ରାଜନୀତିରେ ନିଷ୍ଠା ରହିବ ଏବଂ ରାଜନୈତିକ ସ୍ଥିରତା ଆସିବ । ଗୁରୁତ୍ୱହୀନ ବା ନନ୍ ସିରିୟସ ସ୍ୱାଧୀନ ପ୍ରାର୍ଥୀଙ୍କ ସଂଖ୍ୟା କମିଯିବ ।

ରାଜକୋଷରୁ ନିର୍ବାଚନ ଖର୍ଚ୍ଚ ସମ୍ପର୍କରେ ଏତାଦୃଶ ବିଶ୍ଳେଷଣ ପଢିବା ପରେ ଅନେକ ପାଠକ ପ୍ରଶ୍ନ କରିବେଣି - ଯେଉଁଠି ଭୋଟ ପ୍ରଚାର ଆରମ୍ଭ ହୋଇଗଲେ ମହୋତ୍ସବଟିଏ ଆରମ୍ଭ ହୋଇଯାଏ ସେଠି ଖର୍ଚ୍ଚ କମିବ ବା କେମିତି ? ବ୍ୟକ୍ତିଗତ ଚାନ୍ଦାକୁ ରୋକାଯାଇ ପାରିବ କିପରି ? ଇଟାଲୀ, ଜର୍ମାନୀ ଏବଂ ବେଲ୍‌ଜିୟମ୍ ଗଣତନ୍ତ୍ରରେ ନିର୍ବାଚନୀ ଖର୍ଚ୍ଚ ପାଇଁ ରାଷ୍ଟ୍ରୀୟ ପାଣ୍ଠିରୁ ଅର୍ଥ ଆସୁଥିଲେ ବି ସେଠି ନିର୍ବାଚନ ପ୍ରଚାର ଠିକ୍ ପୂର୍ବପରି ହେଉଛି । ଖର୍ଚ୍ଚରେ ଦୁର୍ନୀତି ହେଉଛି । ଗରିବ ଟିକସ ଦାତାର ଟିକସରେ ଗଠିତ ନିର୍ବାଚନୀ ରାଜକୋଷ ଦ୍ୱାରା ସେତେ ଆଶାଜନକ ନିର୍ବାଚନ ସଂସ୍କାର ଆସିପାରିନାହିଁ ।

ସଂକ୍ଷିପ୍ତରେ କହିଲେ, ନିର୍ବାଚନ ପାଇଁ ଷ୍ଟେଟ୍ ଫଣ୍ଡିଙ୍ଗ୍ ହେଉ ବା କର୍ପୋରେଟ୍ ଫଣ୍ଡିଙ୍ଗ୍, ଏହା ଜାତୀୟ ରାଜନୈତିକ ଦଳମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହୋଇପାରେ । କିନ୍ତୁ ସାଧାରଣ ଭୋଟରଟିଏର ପ୍ରଶ୍ନ ରହିଲା, ପ୍ରାର୍ଥୀଙ୍କ ନିର୍ବାଚନ ଖର୍ଚ୍ଚ ରାଷ୍ଟ୍ର ବହନ କରିବାରେ ସାମାଜିକ ମୂଲ୍ୟ କ'ଣ ? ଗରିବ ଟିକସଦାତା ରାଜନେତାଙ୍କ ନିର୍ବାଚନ ଖର୍ଚ୍ଚ ମୁଣ୍ଡାଇବ କାହିଁକି ?

ଉତ୍ତର ହେଉଛି, ଗଣତନ୍ତ୍ରର ସ୍ଥାୟିତ୍ୱ ପାଇଁ ନିର୍ବାଚନ ଦରକାର ଏବଂ ନିର୍ବାଚନ ଖର୍ଚ୍ଚ ନିୟନ୍ତ୍ରଣରେ ରହିବା ଉଚିତ । ନିର୍ବାଚନ ଯୋଗୁଁ ରାଜନୈତିକ ଦୁର୍ନୀତି ବଢୁଛି । କଳାଧନର ବ୍ୟାପକ କାରବାର ହେଉଛି । ରାଜକୋଷରୁ ନିର୍ବାଚନ ଖର୍ଚ୍ଚ ନେଇ ଏବେ ତେଣୁ ପରୀକ୍ଷା ହେଲେ କ୍ଷତି କ'ଣ ?

ଗଣତନ୍ତ୍ରରେ ମଧ୍ୟ ବିବର୍ତ୍ତନର ପ୍ରକ୍ରିୟା ଚାଲେ । ନିର୍ବାଚନରେ ବି ସଂସ୍କାର ଆସିବା ଜରୁରୀ ।



# ଗଣତାନ୍ତ୍ରିକ ଶାସକ ଓ ରାଜଧର୍ମ

ଏଇ କିଛି ଦିନ ହେଲା, ଭାରତୀୟ ରାଜନୀତିରେ ଗଣତାନ୍ତ୍ରିକ ଶାସକଙ୍କ ପାଇଁ ରାଜଧର୍ମ, ରାଜନୈତିକ ନୈତିକତା ଏବଂ ଔଚିତ୍ୟ ନେଇ ଆଲୋଚନା ଚାଲିଛି । ଶାସନରେ ଯେତେବେଳେ ବିଚ୍ୟୁତି ଦେଖାଦିଏ ଏବଂ ଶାସକ ପଥଚ୍ୟୁତେ, ସେତେବେଳେ ଏଇ ରାଜଧର୍ମ ପାଳନ କରିବା କଥା ଉଠେ । ୨୦୦୨ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ ତତ୍କାଳୀନ ଗୁଜୁରାଟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦିଙ୍କୁ ରାଜଧର୍ମ ରଖିବାକୁ ପରାମର୍ଶ ଦେଇଥିଲେ । ସେତେବେଳେ ଗୁଜରାଟ ଦଂଗା ପରେ ମୋଦିଙ୍କ ବିରୁଦ୍ଧରେ ସାଂପ୍ରଦାୟିକ ପକ୍ଷପାତିତାର ଅଭିଯୋଗ ଆସିଥିଲା ।

ରାଜଧର୍ମ କହିଲେ ରାଜାଙ୍କ କର୍ତ୍ତବ୍ୟକୁ ହିଁ ବୁଝାଏ । ଜୀବନଶୈଳୀ ତଥା ଚାଲିଚଳନର କଥାକୁ ସୂଚାଏ । ମହାଭାରତ ଯୁଦ୍ଧରେ ପିତାମହ ଭୀଷ୍ମ ଶରଶଯ୍ୟାରେ ଥାଇ ମହାରାଜ ଯୁଧିଷ୍ଠିରଙ୍କୁ ଶାସକର କର୍ତ୍ତବ୍ୟ କଥା କହିଥିଲେ । ନିଜର ପ୍ରଜାଙ୍କ ପ୍ରତି ବ୍ୟବହାର, ଶତ୍ରୁଙ୍କ ପ୍ରତି ଆଚରଣ ସଂପର୍କରେ ଏବଂ ସର୍ବୋପରି ଶାସକ ନିଜେ ସଂଦେହମୁକ୍ତ ରହି ସ୍ୱାର୍ଥଶୂନ୍ୟ ଭାବେ କାମ କରିବାକୁ ପରାମର୍ଶ ଦେଇଥିଲେ । ଭୀଷ୍ମଙ୍କ ପରାମର୍ଶ ଥିଲା, ରାଜା ସଂଦେହରୁ ଉର୍ଦ୍ଧ୍ୱରେ ରହିଲେ ଏବଂ ନିସ୍ୱାର୍ଥପର ହେଲେ, ପ୍ରଜାମାନେ ଜଣେ ସନ୍ନ୍ୟାସୀଙ୍କୁ ଭକ୍ତି କଲାପରି ରାଜାଙ୍କୁ ଭକ୍ତି କରନ୍ତି । ଭୀଷ୍ମଙ୍କ ଏ ଉପଦେଶ ମହାଭାରତର ଶାନ୍ତି ପର୍ବରେ ଅଛି ।

ଏବେ 'ଲଳିତ ଗେଟ' ନାଁରେ ଏକ ସ୍କାଣ୍ଡାଲ କଥା ଭାରତରେ ବେଶି ଆଲୋଚିତ ହେଉଛି । ଏହି ସ୍କାଣ୍ଡାଲର କେନ୍ଦ୍ରରେ ଖଳନାୟକ ଅଛନ୍ତି ଲଳିତ ମୋଦି । ମୋଦି ଥିଲେ ବସ୍ତୁତଃ ଆଇପିଏଲ କ୍ରିକେଟର ଜନ୍ମଦାତା । ବର୍ତ୍ତମାନ ସେ ଜଣେ ଅର୍ଥନୈତିକ ଅପରାଧୀ । ଆଇପିଏଲ ପରିଚାଳନାରେ ପ୍ରାୟ ଦୁଇ ହଜାର କୋଟି ଟଙ୍କାର ହେରଫେର ଅଭିଯୋଗ ତାଙ୍କ ବିରୁଦ୍ଧରେ ଅଛି । କୁହାଯାଏ, ସେ କୁଆଡେ

ବେଆଇନ ମନି ଲଣ୍ଡରିଙ୍ଗ କରିଛନ୍ତି ଏବଂ ବିଦେଶୀ ମୁଦ୍ରା ବିନିମୟ ଆଇନର ଉଲଂଘନ କରିଛନ୍ତି । ଲଳିତ ଭାରତ ଛାଡି ଦେଇ ସଂପ୍ରତି ଲଣ୍ଡନରେ ରହନ୍ତି । ଦେଶ ଫେରିଆସିବାକୁ ନୋଟିସ ସତ୍ତ୍ୱେ ବି ସେ ଭାରତ ଆସୁନାହାଁନ୍ତି । ସେ ଜଣେ ପଳାତକ - ଫ୍ୟୁଗିଟିଭି ।

ଅପରାଧୀକୁ ସାହାଯ୍ୟ କରିବା ଅପରାଧ । ଏମିତି ଏକ କଥିତ ଅପରାଧରେ ଛନ୍ଦିହୋଇ ପଡିଛନ୍ତି ବିଜେପିର ବରିଷ୍ଠ ନେତା ତଥା ବର୍ତ୍ତମାନର କେନ୍ଦ୍ର ବୈଦେଶିକ ମନ୍ତ୍ରୀ ଶ୍ରୀମତୀ ସୁଷମା ସ୍ୱରାଜ ଏବଂ ରାଜସ୍ଥାନର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ବସୁନ୍ଧରା ରାଜେ । ଏ ଦୁଇ ନେତା ଭାରତ ପାଇଁ ଏକ ବୃହତ୍ ଆର୍ଥିକ ଅପରାଧ କରିଥିବା ଲଳିତ ମୋଦିଙ୍କୁ ଇଂଲଣ୍ଡରେ ସ୍ଥାୟୀ ଭାବେ ବସବାସ କରିବା ଏବଂ ପୃଥିବୀ ସାରା ମନୋରଞ୍ଜନ ପାଇଁ ବୁଲିବାକୁ ଗୁପ୍ତ ଭାବେ ନିଜ ପଦବୀର ଅପବ୍ୟବହାର କରି ସାହାଯ୍ୟ କରିଥିବା ଘଟଣା କ୍ରମଶଃ ଉନ୍‌ମୋଚିତ ହେଉଛି । ସେଥିପାଇଁ ତେଣୁ ଦାବି ଆସୁଛି, ସୁଷମା ଏବଂ ବସୁନ୍ଧରା ରାଜନୈତିକ ନୈତିକତା ଏବଂ ଔଚିତ୍ୟକୁ ସମ୍ମାନ ଜଣାଇ ଇସ୍ତଫା ଦିଅନ୍ତୁ କିମ୍ବା ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ସେମାନଙ୍କୁ ମନ୍ତ୍ରୀମଣ୍ଡଳରୁ ବହିଷ୍କାର କରନ୍ତୁ । ଅପରାଧକୁ ସହ୍ୟ କରିବା ବି ଶାସକର ରାଜଧର୍ମ ବିରୋଧି ।

ରାଜନୀତିରେ ସାଧାରଣ ଜନତାର ନେତାଙ୍କ ପ୍ରତି ବିଶ୍ୱାସ ତଥା ଅବଧାରଣା (ପରସେପ୍‌ସନ) ବଡ କଥା । ଥରେ ସଂଦେହ ଆସି ବିଶ୍ୱାସ ତୁଟିଗଲେ, ନେତାଙ୍କର ରାଜନୈତିକ ଜୀବନ ପ୍ରତି ବାଧା ଆସେ । ଏହା ଏକ ରାଜନୈତିକ ମୃତ୍ୟୁ । ଏହି ତତ୍ତ୍ୱକୁ ଏବେ ଭାରତର ବରିଷ୍ଠ ରାଜନୀତିଜ୍ଞ ଲାଲକୃଷ୍ଣ ଆଡ୍‌ଭାନୀ ଏକ ସାକ୍ଷାତକାରରେ ବଳିଷ୍ଠ କରିଛନ୍ତି । ୧୯୯୬ ମସିହାରେ ହାୱଲା କାରବାରରେ ସଂପୃକ୍ତ ବୋଲି ଅଭିଯୋଗ ଆସିଲା ପରେ ଆଡ୍‌ଭାନୀ କିପରି ମନ୍ତ୍ରୀମଣ୍ଡଳରୁ ଇସ୍ତଫା କରି ନିଜେ ଦୋଷମୁକ୍ତ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ, ଏ ଥିଲା ଏ ତତ୍ତ୍ୱର ବଳିଷ୍ଠ ଅବତାରଣା ପାଇଁ ଏକ ଉଦାହରଣ ।

କୌଣସି ଅପରାଧୀୟ ଅଭିଯୋଗ ଆସିଲେ ଯେ, ଜଣେ ମନ୍ତ୍ରୀ ବା ପଦାଧିକାରୀ ତତ୍‌କ୍ଷଣାତ ତାଙ୍କ ପଦବୀରୁ ଇସ୍ତଫା ଦେଇଦେବା ଉଚିତ, ଅବଶ୍ୟ ଏହା ଏକ ବିତର୍କର ବିଷୟ । ଏହି ବିତର୍କର ସପକ୍ଷରେ ଏବଂ ବିପକ୍ଷରେ କିଛି ଯୁକ୍ତି ଆସେ । ଯେଉଁମାନେ ଇସ୍ତଫାକୁ ବିରୋଧ କରନ୍ତି, ସେମାନଙ୍କ ଯୁକ୍ତି ହେଲା, ଅପରାଧୀୟ ଶାସ୍ତି

କହେ, ଜଣେ ଅଭିଯୁକ୍ତ ନିର୍ଦ୍ଦୋଷ ବୋଲି ଗଣାଯିବେ ଯେପର୍ଯ୍ୟନ୍ତ ସେ ନ୍ୟାୟାଳୟରେ ଦୋଷୀ ସାବ୍ୟସ୍ତ ନ ହୋଇଛନ୍ତି ଏବଂ ଇସ୍ତଫା ଦାବୀ କରୁଥିବା ବିଦ୍ୱାନ୍ ଗୋଷ୍ଠୀ କିନ୍ତୁ ଭିନ୍ନ ମତ ଦେଇ କହନ୍ତି, ଜଣେ ଅଭିଯୁକ୍ତଙ୍କୁ ଦୋଷୀ କୁହାଯିବ ଯେ ପର୍ଯ୍ୟନ୍ତ ସେ ବିଚାରାଳୟରେ ନିର୍ଦ୍ଦୋଷ ପ୍ରମାଣିତ ହୋଇ ନାହାନ୍ତି । ଏପରି ପରସ୍ପର ବିରୋଧୀ ଯୁକ୍ତି ପାଇଁ କିଛି କାରଣ ବି ଦିଆଯାଏ । କାରଣ ହେଉଛି, ଭାରତରେ ବିଚାର ପ୍ରକ୍ରିୟା ଏକ ବିଳମ୍ବିତ ପ୍ରକ୍ରିୟା । ବିଚାର ଏଠି ବର୍ଷ ବର୍ଷ ଧରି ଚାଲେ । ଜଣେ ଅଭିଯୁକ୍ତ ଯଦି ପଦବୀ ନଛାଡି ଶାସନରେ ରହନ୍ତି ଏବଂ ସମୟ କ୍ରମେ ସେ କୋର୍ଟରେ ଦୋଷୀ ବୋଲି ପ୍ରମାଣିତ ହୁଅନ୍ତି, ଏହା ଏକ ସାଂଘାତିକ କାର୍ଯ୍ୟ । ପୂର୍ବର ତାଙ୍କର ସମସ୍ତ କାର୍ଯ୍ୟ ତେଣୁ ବେଆଇନ ଏବଂ ଦେଶ ପାଇଁ ବିପଦ ଏବଂ ବିପରୀତ ଭାବେ ଏପରି ମଧ୍ୟ କାରଣ ଆସେ, ଯଦି ଅଭିଯୁକ୍ତ ଇସ୍ତଫା ଦେଇ ଦିଅନ୍ତି ଏବଂ ନ୍ୟାୟାଳୟରେ ସେ ପରବର୍ତ୍ତୀ ସମୟରେ ନିର୍ଦ୍ଦୋଷ ପ୍ରମାଣିତ ହୁଅନ୍ତି, ଏହା ବ୍ୟକ୍ତି ପ୍ରତି ଏକ ଦାରୁଣ ଅବିଚାର । ମାନବିକ ଅଧିକାରର ଏହା ପରିପନ୍ଥୀ ।

କିନ୍ତୁ ରାଜନୈତିକ ଔଚିତ୍ୟ ତଥା ନୈତିକତା ହେଉଛି, ଶାସକ ହିଁ ସନ୍ଦେହର ଊର୍ଦ୍ଧ୍ୱରେ ରହିବା ଦରକାର । ଲୋକକଥାରେ କୁହାଯାଏ, ସିଜରଙ୍କ ସ୍ତ୍ରୀ ବି ସଂଦେହର ଊର୍ଦ୍ଧ୍ୱରେ ରହିବା ଉଚିତ । ଏଇ ଲୋକକଥା ପାଇଁ  ଆଜକୁ ପ୍ରାୟ ଦୁଇ ହଜାର ବର୍ଷ ତଳର ଏକ ଐତିହାସିକ ଘଟଣା ରହିଛି । ଜୁଲିୟସ ସିଜରଙ୍କ ସ୍ତ୍ରୀ କିପରି ସଂଦେହମୁକ୍ତ ନହେବାରୁ ଛାଡପତ୍ର ପାଇଲେ, ଏ ହେଉଛି ସେ ଲୋକକଥାର ମୂଳ ଆଧାର ।

ଜୁଲିୟସ ସିଜରଙ୍କ ଦ୍ୱିତୀୟ ସ୍ତ୍ରୀ ଥିଲେ ଅତି ସୁନ୍ଦରୀ । ଖୁବ୍ ଆକର୍ଷଣୀୟା । ନାଁ ଥିଲା ତାଙ୍କର 'ପାମ୍ପେଇଆ' ।  ଖ୍ରୀଷ୍ଟପୂର୍ବ ୬୩ରେ ଜୁଲିୟସ ସିଜର ରୋମ୍‌ର ରାଷ୍ଟ୍ର ଧର୍ମର ମୁଖ୍ୟ ହେଲେ ଏବଂ ଠିକ୍ ତା'ର ବର୍ଷକ ପରେ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୬୨ରେ ସିଜରଙ୍କ ଧର୍ମାଧ୍ୟକ୍ଷ ହେବାର ବର୍ଷ ପୂର୍ତ୍ତି ଉପଲକ୍ଷେ ପାମ୍ପେଇଆ ଏକ ଉତ୍ସବର ଆୟୋଜନ କଲେ । ଉତ୍ସବ ପାଇଁ ସର୍ତ୍ତ ଥିଲା ଏଥିରେ କେବଳ ମହିଳାମାନେ ଅତିଥି ଭାବେ ଯୋଗଦେବେ । ଅଥଚ 'କ୍ଲଡିଅସ' ନାମକ ଜଣେ ଯୁବକ ମହିଳା ବେଶରେ ସେ ଉତ୍ସବରେ ଯୋଗ ଦେଇଦେଲେ । କ୍ଲଡିଅସଙ୍କ ଉଦ୍ଦେଶ୍ୟ ଥିଲା, ସେ ଭୋଜିରେ ପାମ୍ପେଇଆଙ୍କ ନିକଟତର ହେବେ । ତାଙ୍କୁ ଆକର୍ଷିତ କରିବେ । କ୍ଲଡିଅସ କିନ୍ତୁ ପୁରୁଷ ବୋଲି ଧରା ପଡିଗଲେ । ତାଙ୍କର ବିଚାର ହେଲା । ଜୁଲିଅସ ସିଜର କ୍ଲଡିଅସଙ୍କ

ବିରୁଦ୍ଧରେ ନିଜେ ବିଚାରାଳୟରେ କିଛି ସାକ୍ଷ୍ୟ ଦେଲେନି । ପ୍ରମାଣ ଅଭାବରୁ କ୍ଲଡିଅସ ନିର୍ଦ୍ଦୋଷରେ ଖସିଗଲେ । ସିଜର ନିଜ ଆଦରଣୀୟା ସ୍ତ୍ରୀ ପାଂପେଇଆଙ୍କୁ ଶେଷରେ ଛାଡପତ୍ର ଦେଲେ । ଏଥିନେଇ ପ୍ରଶ୍ନ ହେବାରୁ ସିଜର ଉତ୍ତର ଦେଲେ, ମୋ ସ୍ତ୍ରୀ ମଧ୍ୟ ସନ୍ଦେହର ଊର୍ଦ୍ଧ୍ୱରେ ରହିବା ଉଚିତ । ମାଇଁ ୱାଇଫ୍ ଅଟ୍ ଟୁ ବି ଏବଭ ସସ୍‌ପିସନ । ଆମେ ସିଜରଙ୍କ ସମୟ ଠାରୁ ଦୁଇ ହଜାରରୁ ଊର୍ଦ୍ଧ୍ୱ ବର୍ଷ ଅତିକ୍ରମ କରି ଆସିଲୁଣି । ମହାଭାରତର ଶାନ୍ତି ପର୍ବରେ ପିତାମହ ଭୀଷ୍ମ ଧର୍ମରାଜ ଯୁଧିଷ୍ଠିରଙ୍କୁ ଦେଇଥିବା ରାଜଧର୍ମ ସଂପର୍କରେ ଶିକ୍ଷା ଏହା ଭିତରେ ପାଂଚ ହଜାର ବର୍ଷରୁ ଅଧିକ ହେଲାଣି । କିନ୍ତୁ ବିଡମ୍ବନା ଯେ, ଏତେ ଦୀର୍ଘ ସମୟର ଅବଧି ଆମ ନେତାମାନଙ୍କୁ ନୈତିକତାରେ ଶକ୍ତ କରି ପାରିନାହିଁ । ସାଧାରଣ ଲୋକଙ୍କ ସଂଦେହକୁ ଏକ ପରିହାର୍ଯ୍ୟ ଅଭିଯୋଗ କହି ଏମାନେ ତାଙ୍କ ପ୍ରତି ଥିବା ପ୍ରତିକୂଳ ଅବଧାରଣାକୁ ନଜର ଅନ୍ଦାଜ କରି ଦେଉଛନ୍ତି । ଏହା ବ୍ୟକ୍ତି ଏବଂ ଗଣତାନ୍ତ୍ରିକ ଶାସନ ପାଇଁ ଶୁଭଙ୍କର ନୁହେଁ । ବରଂ ଶାସକ ବର୍ଗର କିଛି ନେତା ଏହି ନଜର ଅନ୍ଦାଜକୁ ନିଜର ରାଜନୈତିକ ଉପଯୋଗିତା ବା ପଲିଟିକାଲ ଏକ୍‌ସେପେଡିଏନ୍‌ସି ବୋଲି କହନ୍ତି । ସେମାନଙ୍କ ତର୍କ ହେଲା, ସାମାନ୍ୟ ଅଭିଯୋଗରେ ଇସ୍ତଫା ଦେଇଦେବା ନୀତିବାଦୀର କାମ ନୁହେଁ, ଏହା ଏକ ପଳାୟନପନ୍ଥୀର କାର୍ଯ୍ୟ । ଏବେ ଅତି କ୍ରିୟାଶୀଳ ହୋଇ ପଡିଥିବା ଗଣମାଧ୍ୟମ ଅନେକ ସମୟରେ ନିଜର ଟିଆର୍‌ପି ବୃଦ୍ଧି ପାଇଁ ଛୋଟ କଥାକୁ ଅତିରଞ୍ଜିତ ବି କରି କହିଦିଅନ୍ତି । ମେଡିଆ ହାଇପ୍‌ରେ ବିଶ୍ୱାସକରି ଇସ୍ତଫା ଦେଇଦେଲେ ଦେଶ ଚାଲିବନାହିଁ ।

ହଁ, ଏ ଆଲୋଚନାର ଏ ଶେଷ କଥା । ଶେଷ କଥା ହେଲା, ସଂଦେହମୁକ୍ତ ରହିବା ଏକ ରାଜନୈତିକ ନୈତିକତା ଏବଂ ରାଜଧର୍ମର କଥା । ଏହାକୁ ମାନିବା ବା ନ ମାନିବା ଦାୟିତ୍ୱ ହେଉଛି ଅଭିଯୁକ୍ତ ରାଜନେତାମାନଙ୍କର ।

❑❑❑

# ସହର ଆଉ ସିକୁଲାର ନୁହେଁ

ସହରୀକରଣ ପ୍ରକ୍ରିୟା ଆରମ୍ଭ ବେଳେ ଏ ଧାରଣା ଥିଲା, ସହରରେ ଧର୍ମନିରପେକ୍ଷତା ରହିବ । ଜାତି, ଧର୍ମ, ବର୍ଣ୍ଣ ଏବଂ ଲିଙ୍ଗକୁ ଆଧାର କରି ଏଠି ଆଉ ପାତରଅଂତର ହେବନି । ଅନେକ ବିବିଧତା ଭିତରେ ଏଠି ସହବସ୍ଥାନ ଆସିବ । ସହର ଯେମିତି ଏକ ମେଲ୍‌ଟିଂ ପଟ୍ ହୋଇଯିବ । ଅନ୍ୟ କଥାରେ କହିଲେ ଏକ ତରଳା କଡ଼େଇ - ସମ୍ମିଶ୍ରଣର ଏକ ଚଉଡା ପାତ୍ର ଏବଂ ଏହି ପାତ୍ର ସହ ସଂପୃକ୍ତ ସଂସ୍କୃତିକୁ କୁହାଯିବ ମେଲ୍ଟିଂ ପଟ କଲ୍‌ଚର । ଏହି ସଂସ୍କୃତି ଜାତୀୟ ସଂହତି ଏବଂ ଏକତା ପାଇଁ ହିଁ ସହାୟକ ହେବ । କିନ୍ତୁ ବିଡମ୍ବନା ଯେ ଭାରତୀୟ ସହର ସବୁ ଏବେ ଧର୍ମ ନିରପେକ୍ଷତାଠାରୁ କ୍ରମଶଃ ଦୂରେଇ ଯାଉଛି । ସହର ଆଉ ସିକୁଲାର ହୋଇ ରହୁନି । ଜାତି ଧର୍ମର ବିବିଧତା ଭିତରେ ସହରୀ ସଂସ୍କୃତି ବାଣ୍ଟି ହୋଇଗଲାଣି ।

ଏଇ କିଛିଦିନ ତଳେ ମୁମ୍ବାଇର ବାଦଲା ଷ୍ଟ୍ରୀଟ୍‌ରେ ଥିବା ସଂଘାଇ ହାଇଟସ୍ ହାଉସିଙ୍ଗ୍ ସୋସାଇଟିର ପରିଚାଳକମାନେ, ମିସବା କାଦ୍ରୀ ନାମକ ଜଣେ ଅବିବାହିତା ମୁସଲିମ୍ ମହିଳାଙ୍କୁ ଘରଭଡା ଦେବାକୁ ମନାକରିଦେଲେ । ଘରଭଡା ଏଜେଣ୍ଟ ଏବଂ ଫ୍ଲାଟର ମାଲିକ କହିଦେଲେ, ସଂଘାଇ ହାଇଟସ୍‌ରେ ମୁସଲିମ୍ ଲୋକଙ୍କୁ ଘରଭଡା ଦିଆଯାଏ ନାହିଁ । ଏହା କେବଳ ହିନ୍ଦୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ହାଉସିଂ ସୋସାଇଟିର ପରିଚାଳକ ଏକଥା ବି ସ୍ପଷ୍ଟ କରିଦେଲେ, ଯଦି ମିସବା ଏମିତି ବାରଣ ସତ୍ତ୍ୱେ ଏଠି ଭଡାରେ ରହନ୍ତି, ତାଙ୍କୁ ଏକ ବଣ୍ଡରେ ଦସ୍ତଖତ କରି ଲେଖିଦେବାକୁ ହେବ ଯେ, ତାଙ୍କର ଧର୍ମ ଯୋଗୁଁ ଏଠି କିଛି ଅଶାନ୍ତି ସୃଷ୍ଟି ହେଲେ ହାଉସିଙ୍ଗ୍ ସୋସାଇଟିର ବିଲ୍‌ଡର, ସୁପରଭାଜର ଏବଂ ଏଜେଣ୍ଟ ଏଥିପାଇଁ ଦାୟୀ ହେବେନି । ଶେଷରେ ମିସ୍‌ବା ତାଙ୍କର ଏକ ନିର୍ଦ୍ଦିଷ୍ଟ ଧାର୍ମିକ ପରିଚୟ ହେତୁ ସେଠି ଘରଭଡା ପାଇଲେନି । ଏକଥା ମିସ୍‌ବା କାଦ୍ରି ଗଣମାଧମରେ କହୁଥିଲେ ।

ଭାରତୀୟ ସମସ୍ତ ମେଟ୍ରୋ ସହରୀ ଚରିତ୍ର ଯେମିତି ପ୍ରାୟ ଏକା ହୋଇଗଲାଣି । କଲିକତାରେ ଭଡାଘର ପାଇଁ କୁଆଡେ ମୁସଲିମ୍ ଯୁବକ ମାନଙ୍କୁ ହିନ୍ଦୁ

ଛଦ୍ମ ନାମରେ ପରିଚୟ ଏବଂ ଘର ମାଲିକଙ୍କୁ ହିନ୍ଦୁ ଦିଅଁ ଦେବତାଙ୍କ ଫଟୋ ଦେଖାଇ ପ୍ରମାଣ ଦେବାକୁ ହୁଏ ବୋଲି ଏମିତି ଏକ ଖବର ଏଇ କିଛି ବର୍ଷ ତଳେ ପ୍ରକାଶ ପାଇଥିଲା ।

ଧର୍ମକୁ ନେଇ ଏ ସଂରକ୍ଷଣ ଭାବ କେବଳ କିଛି ହିନ୍ଦୁଙ୍କ ଭିତରେ ସଂପ୍ରତି ଅଟକି ନାହିଁ । ଅନେକ ମୁସଲିମ୍ ସଂସ୍ଥା ମଧ୍ୟ ସେମାନଙ୍କ ବ୍ୟାବସାୟିକ ଅନୁଷ୍ଠାନମାନଙ୍କରେ ହିନ୍ଦୁମାନଙ୍କୁ ଚାକିରି ଦେବାକୁ ରାଜି ନାହାନ୍ତି । ୨୦୧୪ ମସିହା ଅଗଷ୍ଟ ମାସରେ କେରଳର ସୁପର ବଜାରର ମୁସଲିମ୍ ମାଲିକ ତାଙ୍କ ସଂସ୍ଥାରେ ଏକ ଆକାଉଣ୍ଟାଟ୍ ଚାକିରି ପାଇଁ କେବଳ ମୁସଲିମ୍ ପ୍ରାର୍ଥୀଙ୍କ ଠାରୁ ଆବେଦନ ଆହ୍ୱାନ ସଂପର୍କରେ ଏକ ବିଜ୍ଞାପନ ଇଣ୍ଡିଆନ ଏକ୍ସପ୍ରେସ୍‌ରେ ବାହାର କରିଥିଲେ ।

ଏବେ ସହରୀ ସଂସ୍କୃତିରେ ଧର୍ମକୁ ନେଇ ଯେଉଁ ବିଭେଦତା ଦେଖାଦେଇଛି, ଏ ସବୁ ଉଦାହରଣ ତାର କିଛି ଅଂଶ ମାତ୍ର । ସୁତରାଂ ପ୍ରଶ୍ନ ବି ଆସିବଣି, ସମସ୍ତ ସାମ୍ବିଧାନିକ କଟକଣା ସତ୍ତ୍ୱେ ଆମ ସହର ସବୁ ଧର୍ମ ନିରପେକ୍ଷ ହେଉଛି ନା ଧର୍ମାନ୍ଧ ହେଉଛି ? ଧର୍ମ, ଜାତି, ବର୍ଣ୍ଣଠାରୁ ଉର୍ଦ୍ଧ୍ୱରେ ରହି ଏକ ଆଧୁନିକ ତଥା ପ୍ରଗତିଶୀଳ ଭାରତ ଗଠନ କରିବାର ଯେଉଁ କଳ୍ପନା କରାଯାଇଥିଲା, ତାହା କେତେଦୂର ସାକାର ହୋଇଛି ? ବାସ୍ତବତା ହେଲା, ଆମେ ଏଥିରେ ଏ ପର୍ଯ୍ୟନ୍ତ ସଫଳ ହୋଇନୁ ।

୧୯୬୫ ମସିହାରେ ହାର୍ଭାଡ୍ ବିଶ୍ୱବିଦ୍ୟାଳୟର ପ୍ରଫେସର ହାର୍ଭେ କକ୍ସ ଏକ ବହୁଚର୍ଚ୍ଚିତ ବହି ଲେଖିଥିଲେ । ବହିର ନାଁ ଥିଲା, 'ସିକୁଲାର ସିଟି ।'

ପ୍ରଫେସର କକ୍ସ ଧାର୍ମିକ ତଥା ଆଧ୍ୟାତ୍ମିକ ଦୃଷ୍ଟିଭଂଗୀ ନେଇ ସହରୀ ସଭ୍ୟତାର ଏକ ଭବିଷ୍ୟତ ଏଥିରେ ଅବତାରଣା କରିଥିଲେ । କକ୍ସଙ୍କ ସିଦ୍ଧାନ୍ତ ଥିଲା, ସହର ସବୁ ସିକୁଲାର ହେବ । ମାନବ ବିକାଶର ଏହା ଏକ ଉତ୍ତମ ପର୍ଯ୍ୟାୟ ହେବ । ହେତୁବାଦୀ ଚିଂତା ଏବଂ ଔଦ୍ୟୋଗିକ ବିକାଶକୁ ଦୃଷ୍ଟିରେ ରଖି ସହର ପାଇଁ ନୀତି ଏବଂ ଯୋଜନା ପ୍ରସ୍ତୁତ ହେବ । ଏକବିଂଶ ଶତାବ୍ଦୀରେ ସହରସବୁ ଟେକ୍ନୋପଲିସ୍ ହୋଇଯିବ । ବର୍ତ୍ତମାନର ଭାଷାରେ ଏହା 'ସ୍ମାର୍ଟ ସିଟି' । ଦୁର୍ଭାଗ୍ୟ ଯେ, ଭାରତରେ ପାଞ୍ଚ ଶହ ସ୍ମାର୍ଟ ସିଟିର ଯୋଜନା ତିଆରି ହୋଇଗଲା ପରେ ବି ଧର୍ମକୁ ଆଧାରକରି ମିସ୍ରା ପରି ମୁସଲିମ୍ ବ୍ୟକ୍ତିମାନଙ୍କୁ ସହରରେ ଅନ୍ୟ ଧର୍ମାବଲମ୍ବୀଙ୍କ ସହ ଏକାଠି ରହିବାକୁ ଘରଟିଏ ମିଳୁନି । ଏହା ସତ ଯେ, ବିଭାଜିତ ସହର ସ୍ମାର୍ଟ ସହର ବିକାଶର ପରିପନ୍ଥୀ ।

ଘରଭଡା ଏବଂ ଘର କିଣାବିକା ସଂପର୍କରେ ଭାରତରେ କିଛି ରିଅଲ ଇଷ୍ଟେଟ ୱେବ୍‌ସାଇଟ୍ ଅଛି । ଭିନ୍ନଭିନ୍ନ ଧର୍ମ ଏବଂ ଜାତି ପାଇଁ ଘର ଖୋଜିଲେ ଏଥିରେ ସେ ସଂପର୍କରେ ସୂଚନା ମିଳେ । ସ୍ୱତନ୍ତ୍ର ଭାବେ 'ହିନ୍ଦୁ ଲୋକାଲିଟି', 'ମୁସଲିମ୍ ଲୋକାଲିଟି', 'ଶୁଦ୍ଧ ନିରାମିଷାଶୀଙ୍କ ପାଇଁ ଘର' ଏପରି ଫ୍ଲାଟ୍‌ମାନଙ୍କର ସୂଚନା ଏହି ୱେବସାଇଟ୍‌ରେ ରହିଛି ।

ଯେଉଁମାନେ ଧର୍ମ ଓ ଜାତିକୁ ଆଧାର କରି ସହରରେ ଘରଭଡାର ସପକ୍ଷରେ ଅଛନ୍ତି, ତାଙ୍କର ବି କିଛି ଯୁକ୍ତି ଆସେ । ସେମାନଙ୍କର ଯୁକ୍ତି ହେଲା, ଘର ମାଲିକ କାହାକୁ ନିଜ ଘର ଭଡା ଦେବ ଏହା ଏକ ବ୍ୟକ୍ତିଗତ ଘଟଣା । ଅନ୍ୟର ଚଳଣି ଏବଂ ଅଭ୍ୟାସ ସହ ଖାପ ଖୁଆଇ ନପାରିଲେ ନିଜ ବଞ୍ଚିବା ବି ଦୁର୍ବିସହ ହୋଇଯିବ । ଯାହା ଜଣାଯାଏ, ସହରର ଅନେକ ଘର ମାଲିକ ନିଜ ଘରକୁ ପୋଲିସ, ଓକିଲ, ଅବିବାହିତ ଯୁବକଙ୍କୁ ଭଡା ଦେବାକୁ ମନା କରିଦିଅନ୍ତି । ଏଥିପାଇଁ କିଛି ଯୁକ୍ତିଯୁକ୍ତ କାରଣ ନଥିଲେ ବି ଏମିତି ହୁଏ । ଏହା ବହୁଦିନର ଏକ ଭ୍ରାନ୍ତ ଅବଧାରଣା ।

ଭାରତୀୟ ସହରମାନଙ୍କରେ ସରକାରୀ ଜନବସତି ନୀତି ମଧ୍ୟ ବର୍ତ୍ତମାନ କେମିତି ସାଂପ୍ରଦାୟିକ ଲାଗେ । ସରକାରୀ ହଷ୍ଟେଲ ସବୁ ଧର୍ମ ଏବଂ ଜାତିଭିତ୍ତିକ ହେଉଛି । ହିନ୍ଦୁ ହଷ୍ଟେଲ, ମୁସଲିମ୍ ହଷ୍ଟେଲ, ଖ୍ରୀଷ୍ଟିଆନ୍ ହଷ୍ଟେଲ, ଆଦିବାସୀ ହଷ୍ଟେଲ, ଜାଠ୍ ହଷ୍ଟେଲ, ରାଜପୁତ୍ ହଷ୍ଟେଲ ଏପରି ହଷ୍ଟେଲ ସବୁ ସରକାରୀ ଭାବେ ଗଢ଼ା ଯାଉଛି । ହିନ୍ଦୁ ହଷ୍ଟେଲରେ ମୁସଲିମ୍ ରହିବା ମନା । ଜାଠ୍ ହଷ୍ଟେଲରେ ରାଜପୁତ୍ ରହିପାରେନି ।

ଏପରି ବି ହୁଏ, କିଛି ବିଶ୍ଳେଷକ ସହରର ସହବସ୍ଥାନ ବାଛବିଚାରକୁ ସଂସ୍କୃତି ସହ ଯୋଡି ବିଶ୍ଳେଷଣ କରନ୍ତି । ଏ ବିଶ୍ଳେଷଣ ହେଲା, ଏକାଠି ରହିବା ସହଜ ହୋଇଯାଏ ଯେତେବେଳେ ପାରସ୍ପରିକ ଚଳଣି ଏବଂ ପରମ୍ପରା ସହ ସାମଞ୍ଜସ୍ୟ ରଖେ । ଜଣେ ନିରାମିଷାଶୀ ଜୈନ ଧର୍ମାବଲମ୍ବୀ ଅନ୍ୟ କୌଣସି ଆମିଷଭୋଗୀ ଭିନ୍ନ ଧର୍ମାବଲମ୍ବୀଙ୍କ ସହ ରହିବା କଷ୍ଟ । ଜୈନମାନେ ଖାଲି ମାଂସ ଖାଆନ୍ତି ନାହିଁ, ଆମିଷର ବାସ୍ନା ବି ସେମାନଙ୍କୁ ଅସହ୍ୟ ଲାଗେ । କୌଣସି ଧର୍ମର ଦୈନନ୍ଦିନ ଧାର୍ମିକ ନୀତିକୁ ଅନ୍ୟ ଧର୍ମର ଲୋକ ଗ୍ରହଣ କରି ନପାରେ । ସହବସ୍ଥାନ ଏକ ମାନସିକ ଗ୍ରହଣୀୟତାର ପ୍ରଶ୍ନ । ନଚେତ୍ ପାରସ୍ପରିକ ଦ୍ୱନ୍ଦ୍ୱ ଆସିବା ସ୍ୱାଭାବିକ ହୋଇଯାଏ ।

ମିସ୍‌ବାର ଘରଭଡା ଘଟଣା ପରେ ଦାବି ଆସିଲାଣି, ସହରରେ ଅବସ୍ଥାନ ନେଇ ଏକ ନିର୍ଦ୍ଦିଷ୍ଟ ସରକାରୀ ନୀତି ଆସିବା ଦରକାର । ଧର୍ମ ଏବଂ ଜାତିକୁ ନେଇ ପାତରଅନ୍ତର କରୁଥିବା ଘର ମାଲିକଙ୍କ ବିରୁଦ୍ଧରେ ନିୟନ୍ତ୍ରଣ ରହିବା ଉଚିତ । କାରଣ ସ୍ୱାଧୀନତା କାହାର ସଂପୂର୍ଣ୍ଣ ନିରଙ୍କୁଶ ନୁହେଁ ।
ସୁତାରଂ ସହର କିପରି ପୂର୍ଣ୍ଣ ସିକୁଲାର ହେବ, ଏହା ଏବେ ବଡ ସମସ୍ୟା । ଧାର୍ମିକ ହେବା କିଛି ଅନୁଚିତ କଥା ନୁହେଁ । କିନ୍ତୁ ଧର୍ମାନ୍ଧ ହେବା ଜାତୀୟ ସଂହତି ପ୍ରତି ବାଧକ । ମେଲଟିଂ ପଟ୍ ସଂସ୍କୃତିରେ ଜଣେ ସହରୀ ଆମେରିକୀୟଙ୍କୁ ପ୍ରଶ୍ନ କଲେ ଉତ୍ତର ଆସେ, ଯଦିଓ ତାଙ୍କର ପିତା ଜଣେ ଇଂଲିଶ୍, ମା ଡଚ୍ ଏବଂ ସ୍ତ୍ରୀ ଜଣେ ଫରାସୀ, ଗୋଟିଏ ଘରେ ରହି ସେମାନେ ତାଙ୍କର ଜାତୀୟତା ଭୁଲି କେବଳ ଆମେରିକୀୟ ବୋଲି ପରିଚୟ ଦିଅନ୍ତି ।

ଭାରତୀୟ ସ୍ମାର୍ଟ ସହରରେ ଏପରି ଏକ ଧର୍ମ ନିରପେକ୍ଷ ତଥା ସମିଶ୍ରିତ ସଂସ୍କୃତିର ଅଭ୍ୟୁଦୟକୁ ଆଶା କରାଯାଇ ପାରେ ।



# ସାହିତ୍ୟ ରାଜନୀତି

**ଭା**ରତରେ ଏଇ କିଛି ଦିନ ତଳେ ସାହିତ୍ୟିକମାନଙ୍କର ବିଦ୍ରୋହ ଚାଲିଥିଲା । ଏ ବିଦ୍ରୋହର ଅନ୍ତିମ ପରିଣତି ସମ୍ଭବତଃ ଏ ଦେଶର ଶାସକବର୍ଗ ରାଜନେତା ତଥା ଗଣମାଧ୍ୟମ ପାଇଁ ଅବୁଝା ଥିଲା । ହୋଇପାରେ ଏପରି ଏକ ପରିସ୍ଥିତି ଭାରତରେ ଥିଲା ଅଭୁତପୂର୍ବ । ମୁହଁରେ କଳାପଟି ବାନ୍ଧି ସାହିତ୍ୟିକମାନେ ରାସ୍ତା ଉପରେ ଆନ୍ଦୋଳନ କରିବା ଏହା ଅନନ୍ୟ । ଫରାସୀ ବିପ୍ଲବ ବେଳେ ଏମିତି ବିଦ୍ରୋହ ରୁଷୋ, ମଂଟେସ୍କୁ, ଭୋଲଟାଏର କରିଥିଲେ । ପରିଣତି ଏହାର ଇତିହାସ ରେକର୍ଡ କରି ରଖିଛି ।

ସାହିତ୍ୟିକଙ୍କ ଅଶାନ୍ତିକୁ ନେଇ ଏଠି ଅନେକ ପ୍ରତିକ୍ରିୟା ଆସେ । ଦରବାରୀ ସାହିତ୍ୟିକଙ୍କ ଏହା ଏକ ମହାମେଳି ବୋଲି ଶାସକ ଦଳର ପ୍ରବକ୍ତା ଅବିହିତ କରନ୍ତି । ଭାରତର ମାନ୍ୟବର ଅର୍ଥମନ୍ତ୍ରୀ ଅରୁଣ ଜେଟଲି ବି କହି ଦେଇଥିଲେ, ଏହା ସାହିତ୍ୟିକମାନଙ୍କର ଏକ କାଗଜ ବିପ୍ଳବ । ଏ ବିପ୍ଳବକୁ କିଛି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ତିଆରି କରିଛନ୍ତି । ବିକାଶ ଏବଂ ଅଭିବୃଦ୍ଧିକୁ ସହ୍ୟ କରିପାରୁନଥିବା କିଛି ବିରୋଧୀ ରାଜନେତାଙ୍କ ପ୍ରରୋଚନା ଏଥିରେ ଅଛି । ଦୁର୍ଭାଗ୍ୟ ଯେ ଭାରତର ବିଦ୍ୱାନ୍ ଅର୍ଥମନ୍ତ୍ରୀ ଆମର ସାହିତ୍ୟିକଙ୍କ ବିଜ୍ଞତା ତଥା ନିରପେକ୍ଷତାକୁ ଲଜ୍ଜାଜନକ ଭାବେ ପ୍ରଶ୍ନ କରିଥିଲେ । ଭାରତର ସାହିତ୍ୟିକଙ୍କ ବିଦ୍ରୋହର ସୂତ୍ରଧର ଥିଲେ ବିଶିଷ୍ଟ ଲେଖିକା ତଥା ଜବାହରଲାଲ ନେହେରୁଙ୍କ ଭାଣେଜୀ ନୟନତରା ସେହେଗଲ । ନୟନତରା ଏ ଦେଶରେ ଧାର୍ମିକ ଅସହିଷ୍ଣୁତା ଏବଂ ସାହିତ୍ୟିକଙ୍କ ଉପରେ ସନାତନୀ ହିନ୍ଦୁଗୋଷ୍ଠୀମାନଙ୍କ ଆକ୍ରମଣକୁ ବିରୋଧ କରି ତାଙ୍କର ପୁରସ୍କାର ଭାରତର କେନ୍ଦ୍ର ସାହିତ୍ୟ ଏକାଡ଼େମୀକୁ ଫେରାଇ ଦେଇଥିଲେ ଏବଂ ଦୃଢ଼ ସ୍ୱରରେ ଉଲ୍ଲେଖ କରିଥିଲେ - ଏ ଦେଶ ସମସ୍ତ ହିନ୍ଦୁସ୍ଥାନୀମାନଙ୍କର । ଏହା କେବଳ ହିନ୍ଦୁମାନଙ୍କର ନୁହେଁ । ସୁତରାଂ ଏ ଦେଶର ସବୁ ଧର୍ମକୁ ସମ୍ମାନ ଦେବା ଦରକାର । ଭାରତର ସାଂସ୍କୃତିକ ବିବିଧତା ନଷ୍ଟ ହୋଇଗଲେ, ଏ ଦେଶର ଆତ୍ମା ନଷ୍ଟ ହୋଇଯିବ ।

ନୟନତରାଙ୍କୁ ସମର୍ଥନ କରି ଏ ପର୍ଯ୍ୟନ୍ତ ଭାରତର ପ୍ରାୟ ତିରିଶିରୁ ଊର୍ଦ୍ଧ୍ୱ ସାହିତ୍ୟିକ, ଲେଖକ, କବି, ଔପନ୍ୟାସିକ ତାଙ୍କର ଏକାଡ଼େମୀ ପୁରସ୍କାର ଫେରାଇ ଦେଇ ସାରିଲେଣି। ଅନେକ ସାହିତ୍ୟିକ ଏକାଡ଼େମୀର ସାଧାରଣ ପରିଷଦରୁ ଇସ୍ତଫା ଦେଇ ଦେଲେଣି। ଏଥିରେ ସାମିଲ ଅଛନ୍ତି ବିଶିଷ୍ଟ କବି ଅଶୋକ ବାଜପେୟୀ, ସଚ୍ଚିଦାନନ୍ଦନ, ଔପନ୍ୟାସିକ ସାରା ଯୋଶେଫ୍ ମୁନାଫର ରାଣା ଏବଂ ଶଶୀ ଦେଶପାଣ୍ଡେ ପ୍ରମୁଖ। ଉର୍ଦ୍ଦୁ ସାଏରୀ ଲେଖି ପ୍ରତିଷ୍ଠା ହାସଲ କରିଥିବା ରାଣା ସାହେବ ତାଙ୍କର ଏକାଡେମୀ ପୁରସ୍କାରକୁ ଏକ ଟିଭି ଚାନେଲର ସିଧା ପ୍ରସାରଣବେଳେ ଫେରାଇଦେଲେ। ଇସ୍ତଫାର କାରଣ ଦେଇ ଏମାନେ ଉତ୍ତର ରଖିଥିଲେ, ଏହା ଏମାନଙ୍କର ଏକ ନୀରବ ବିଦ୍ରୋହ। ଗଣତନ୍ତ୍ର ତଥା ମାନବବାଦର ରକ୍ଷା ପାଇଁ ଏମାନେ ଏଇ ପ୍ରତିବାଦ କରନ୍ତି।

ଏହା ସତ ଯେ, ଏଇ କିଛି ଦିନ ହେଲା ଭାରତରେ ଧାର୍ମିକ ଅସହିଷ୍ଣୁତା ବଢ଼ିଛି। ବୈଜ୍ଞାନିକ ସିଦ୍ଧାନ୍ତରେ ଭରସା ରହୁନି। ହିନ୍ଦୁ ମୌଳବାଦ ବେଶ୍ ସକ୍ରିୟ ହେଲା ପରି ପ୍ରତୀୟମାନ ହେଉଛି। ହିନ୍ଦୁତ୍ୱ ପନ୍ଥୀମାନେ ହିନ୍ଦୁରାଷ୍ଟ୍ର ଗଠନ ପାଇଁ ଅତି ଉଚ୍ଚସ୍ୱରରେ ଦାବୀ କରୁଛନ୍ତି ଏବଂ ସବୁଠାରୁ ବଡ଼ କଥା ହେଲା, ସବ୍‌କା ସାଥ୍ ଏବଂ ସବ୍‌କା ବିକାଶ କଥା କହି ଭାରତରେ ଏକ ନିରଙ୍କୁଶ ଶାସନ କ୍ଷମତା ପାଇଥିବା ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦି ନୀରବ ରହୁଛନ୍ତି। ଗଣତାନ୍ତ୍ରିକ ରାଷ୍ଟ୍ରରେ ଯେତେବେଳେ ପ୍ରତିବାଦର ଅଧିକାରକୁ ଚୁପ୍ କରିଦିଆଯାଏ, ସେତେବେଳେ ରାଷ୍ଟ୍ରମୁଖ୍ୟ ପ୍ରତିରୋଧ କରିବା କଥା, ଯଦି ଏହା ରାଷ୍ଟ ପ୍ରାୟୋଜିତ ହୋଇନଥାଏ। ଜର୍ମାନୀ ଏବଂ ଇଟାଲୀ ନାଜିବାଦ ତଥା ଫାସିବାଦର ଉତ୍ପତ୍ତି ଏମିତି ଏକା ଢ଼ଙ୍ଗରେ ହିଁ ହୋଇଥିଲା।

ଏହା ପ୍ରତୀୟମାନ ହୁଏ, ଏଠି କିଛି ସନାତନୀ ହିନ୍ଦୁଗୋଷ୍ଠୀ ଭାରତର ସଂପ୍ରତି ଆଉର ବ୍ୟବହାର ଏବଂ ଜୀବନଶୈଳୀକୁ ତାଙ୍କ ଇଚ୍ଛା ଏବଂ ଭାବନା ଅନୁଯାୟୀ ଚଳାଇବାକୁ ଚାହାନ୍ତି। କିଏ କ'ଣ ଖାଇବ, ପିନ୍ଧିବ, ଲେଖିବ, ଗାଇବ ସବୁକଥାକୁ ସେମାନେ ନିୟନ୍ତ୍ରଣରେ ରଖିବାକୁ ଇଚ୍ଛୁକ ଏବଂ ଏହାର ବିରୋଧ ହେଲେ ସେମାନେ ଆକ୍ରମଣ କରନ୍ତି ଏବଂ ଏପରିକି ହତ୍ୟା ବି କରିଦିଅନ୍ତି। ଏମାନେ କୁଆଡ଼େ ହିନ୍ଦୁଧର୍ମର ଆତ୍ମଘୋଷିତ ଅଭିଭାବକ। ପରମ୍ପରାର ଯେ କୌଣସି ବ୍ୟତିକ୍ରମକୁ ଏମାନେ ଧର୍ମଦ୍ରୋହ ବୋଲି ଗଣନ୍ତି।

ଉତ୍ତରପ୍ରଦେଶର ଦାଦ୍ରୀ ଘଟଣା ଏବେ ଏକ ଅନନ୍ୟ ଘଟଣା। ମହମ୍ମଦ ଆଖଲାକ ନାମକ ଜଣେ ମୁସଲିମ୍‌ଙ୍କୁ ସେଠାରେ କିଛି କଠୋର ସନାତନୀ ହିନ୍ଦୁପନ୍ଥୀ ରାସ୍ତା ଉପରେ ପିଟି ପିଟି ହତ୍ୟା କରିଦେଲେ। ଅଖଲାକ ବିରୁଦ୍ଧରେ ଅଭିଯୋଗ ଥିଲା, ସେ କୁଆଡ଼େ ଗୋମାଂସ ଖାଉଥିଲା। ନିଜ ଘରେ ଫ୍ରିଜ୍‌ରେ ସେ ଗୋରୁମାଂସ ବି ସାଇତି ରଖିଥିଲା। ଏହା ଯେ ଏକ ଗୁଜବ ଥିଲା ନା ସତ ଘଟଣା ଥିଲା ଏହାର କିଏ ହିସାବ ନେଲେନି । ଗୋ-ହତ୍ୟାକୁ ବିରୋଧ କରୁଥିବା ଧର୍ମାନ୍ଧମାନେ ଗୋମାଂସ ଭକ୍ଷଣ ଅଭିଯୋଗରେ ସର୍ବସାଧାରଣରେ ଆଖଲେଖକୁ ମାରିଦେଲେ।

ଏଇ କିଛିଦିନ ତଳେ ବାଙ୍ଗାଲୋରରେ ଲେଖକ ତଥା ହେତୁବାଦୀ କାଲବୁର୍ଗୀଙ୍କ ହତ୍ୟା ଘଟଣା ଘଟିଥିଲା। ଏମ୍.ଏମ୍. କାଲବୁର୍ଗୀ ଥିଲେ ଏକ ସ୍ୱଷ୍ଟବାଦୀ ଏବଂ ନିର୍ଭୀକ ଲେଖକ। ସାହିତ୍ୟ ଏକାଡେମୀ ପୁରସ୍କାର ବି କାଲବୁର୍ଗୀ ପାଇଥିଲେ । ହିନ୍ଦୁ ଅନ୍ଧବିଶ୍ୱାସ ବିରୁଦ୍ଧରେ ତାଙ୍କର ଲେଖନୀ ଚାଳନା ଥିଲା ତୀକ୍ଷ୍ଣ। ସାମାଜିକ କୁସଂସ୍କାର ବିରୁଦ୍ଧରେ ସେ ଜବରଦସ୍ତ ଲେଖୁଥିଲେ । କାଲବୁର୍ଗୀଙ୍କ ଲେଖାକୁ କିନ୍ତୁ କିଛି ମୌଳବାଦୀ ହିନ୍ଦୁ ଗୋଷ୍ଠୀ ପସନ୍ଦ କରିପାରୁ ନଥିଲେ। ଏପରି ନଲେଖିବାକୁ ସେମାନେ ତାଙ୍କୁ ତାଗିଦ୍ କରୁଥିଲେ । ତାଙ୍କ ପ୍ରତି ହତ୍ୟା ଧମକ ମଧ୍ୟ ଥିଲା । କାଲବୁର୍ଗୀ ଏଥିରେ ବିଚଳିତ ନଥିଲେ । ଦିନେ ତାଙ୍କୁ ତାଙ୍କ ଘର ଆଗରେ କିଛି ଧର୍ମାନ୍ଧ ଗୁଳି କରି ହତ୍ୟା କରିଦେଲେ।

ସାହିତ୍ୟିକମାନେ ବେଶ୍ ଏକ ଆବେଗିକ ପ୍ରାଣୀ। ମୁକ୍ତ ଜୀବନ ଏବଂ ଏକ ମୁକ୍ତ ଚିନ୍ତାରେ ସେମାନେ ବଞ୍ଚି ରହିବାକୁ ଚାହାନ୍ତି ଏବଂ ଭାବନା ପରିପ୍ରକାଶରେ ଅଙ୍କୁଶ ଲାଗିଗଲେ ଏମାନେ ସଙ୍କୁଚିତ ମନେ କରନ୍ତି। ଏମାନଙ୍କୁ ଅଣନିଃଶ୍ୱାସୀ ଲାଗେ। ଏହାକୁ ପ୍ରତିବାଦ କରିବା ଏମାନଙ୍କର ସ୍ୱତଃସ୍ଫୁର୍ତ୍ତ ହୋଇଯାଏ । ଯଦି ବା ମୃତ୍ୟୁ ଆସେ ଏଥିରେ କିଛି ଯା ଆସ ନଥାଏ।

ସାହିତ୍ୟିକଙ୍କୁ ହତ୍ୟା କରିବାର ଧାରା ଭାରତରେ ଏଇ କିଛି ବର୍ଷ ହେଲା ଚାଲିଛି । ମହାରାଷ୍ଟ୍ରର ହେତୁବାଦୀ ନରେନ୍ଦ୍ର ଧାବଲକର ଏବଂ ଗୋବିନ୍ଦ ପାନେସରେଙ୍କୁ ରାସ୍ତା ଉପରେ କିଛି ହିନ୍ଦୁ ମୌଳବାଦୀ ସଂଗଠନର ପ୍ରତିନିଧି ନିର୍ମମ ଭାବେ ହତ୍ୟା କରିବାର ଖବର ଏଠି ପ୍ରଚାର ହୋଇଥିଲା। ଧାବଲକର ଏବଂ ପାନେସରଙ୍କର ଅପରାଧ ଥିଲା, ଏମାନେ ଅନ୍ଧବିଶ୍ୱାସ ବିରୁଦ୍ଧରେ ଲେଖୁଥିଲେ। ସାଧାରଣରେ

ସଚେତନତା ସୃଷ୍ଟି କରୁଥିଲେ। ଏଥିପାଇଁ ଯେ ତାଙ୍କୁ ରାସ୍ତା ଉପରେ ପ୍ରାତଃଭ୍ରମଣ କଲାବେଳେ ହତ୍ୟା କରାଯିବ, ଏହା ଦୁର୍ଭାଗ୍ୟ । ମଧ୍ୟଯୁଗୀୟ ଭାରତରେ ଏପରି ହେଉଥିଲା କି ନାହିଁ ପ୍ରଶ୍ନ ଆସେ ।

ସେଥିପାଇଁ ସାହିତ୍ୟିକମାନେ ଏବେ ବିଦ୍ରୋହରେ ଅଛନ୍ତି। କହନ୍ତି – ବହୁତ କିଛି ହୋଇଗଲା। ଯେଉଁ ଦେଶରେ ସାହିତ୍ୟ ଏକାଡ଼େମୀ ତାର ସାହିତ୍ୟିକଙ୍କୁ ସୁରକ୍ଷା ଦେଇପାରେନି କିମ୍ବା ସାହିତ୍ୟିକଙ୍କ ହତ୍ୟାରେ ନୀରବ ପ୍ରାର୍ଥନାଟିଏ କରିପାରେନି, ସେ ଏକାଡ଼େମୀର ପୁରସ୍କାରର ଅର୍ଥ କିଛି ନଥାଏ।

ସାହିତ୍ୟିକଙ୍କ ନୀରବ ବିଦ୍ରୋହକୁ ନେଇ ଭାରତରେ ରାଜନୀତି ଆରମ୍ଭ ହୋଇଗଲାଣି। କିଛି ତଥାକଥିତ ବୁଦ୍ଧିଜୀବୀ ନିଜକୁ ଦକ୍ଷିଣପନ୍ଥୀ ତଥା ଜାତୀୟତାବାଦୀ ରାଜନୈତିକ ଆଦର୍ଶର ଅନୁଗାମୀ କହି ଏବେ ସଂଗଠିତ ହେଉଥିବା ସାହିତ୍ୟିକଙ୍କ ବିଦ୍ରୋହକୁ ବିରୋଧ କରୁଛନ୍ତି ଏବଂ ବିରୁଦ୍ଧର କାରଣ ଦେଇ ଏମାନେ ଯୁକ୍ତି ଦର୍ଶାନ୍ତି, ସାହିତ୍ୟିକଙ୍କ ବିଦ୍ରୋହ ଏକ ପ୍ରାୟୋଜିତ କାର୍ଯକ୍ରମ । ଏହା ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କ ବିରୁଦ୍ଧ ପାଇଁ ହିଁ ଉଦ୍ଦିଷ୍ଟ । ସାଂପ୍ରଦାୟିକ ହିଂସା ଯଦି ସାହିତ୍ୟିକଙ୍କ ବିଦ୍ରୋହର କାରଣ ହୋଇଥାଆନ୍ତା ତେବେ ସାହିତ୍ୟିକମାନେ ଉଣେଇଶ ଚଉରାଶି ଶିଖ୍ ଦଂଗା ବେଳେ ବି ଗଣତନ୍ତ୍ର ଏବଂ ମାନବବାଦର ସୁରକ୍ଷା କଥା କହି ଆନ୍ଦୋଳନ କରିଥାଆନ୍ତେ । ସଲମନ ରୁଶିଦଙ୍କ ପୁସ୍ତକ ସତାନିକ ଭର୍ସେସ ନିଷେଧ ହେଲାବେଳେ ଏହାର ବିରୁଦ୍ଧ କରିପାରି ଥାଆନ୍ତେ । ବିଡମ୍ବନା ଯେ ଏପରି କିଛି ସେବେ ଘଟି ନଥିଲା । ବରଂ ନୟନ୍ତରା ସେଗଲ ଚଉରାଶି ଶିଖ୍ ଦଂଗାର ଦୁଇ ବର୍ଷ ପରେ ଅର୍ଥାତ୍ ଉଣେଇଶ ଛୟାଅଶିରେ ତାଙ୍କ ଆତ୍ମୀୟ ରାଜୀବ ଗାନ୍ଧୀଙ୍କ ଶାସନରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଗ୍ରହଣ କରିଥିଲେ । ସୁତାରଂ ସାହିତ୍ୟିକଙ୍କ ବିଦ୍ରୋହ ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଗୋଷ୍ଠୀ ଏବଂ ଆଦର୍ଶକୁ ସୁହାଇଲା ପରି ହେଉଛି ବୋଲି ସାହିତ୍ୟିକଙ୍କ ବିଦ୍ରୋହକୁ ବିରୁଦ୍ଧ କରୁଥିବା ସାହିତ୍ୟିକମାନେ ସଫେଇ ଦିଅନ୍ତି ।

ଲେଖକୀୟ ବିଦ୍ରୋହ ନେଇ କିଛି ପ୍ରଶ୍ନ ସୃଷ୍ଟି ହୁଏ। ଗୋଟିଏ ଗୋଷ୍ଠୀର ପ୍ରଶ୍ନ ହେଲା, ଭାରତରେ ଧାର୍ମିକ ଅସହିଷ୍ଣୁତା ଏବର ଘଟଣା ନୁହେଁ। ବହୁତ ବର୍ଷ ଧରି ଏହା ଚାଲି ଆସୁଛି। ଗତ କଂଗ୍ରେସ ଶାସନ ବେଳେ ମଧ୍ୟ ଅନେକ ଦଂଗା ସଂଗଠିତ ହୋଇଥିଲା ଏବଂ ଲେଖକ ତଥା ସାହିତ୍ୟିକମାନଙ୍କୁ ଅପମାନିତ ତଥା ହତ୍ୟା

କରାଯାଇଥିଲା । ସେତେବେଳେ ଏପରି ଏକ ସାହିତ୍ୟିକ ବିଦ୍ରୋହ ଏଠି ଦେଖା ଯାଇନଥିଲା । ସୁତରାଂ ବର୍ତ୍ତମାନର ବିଦ୍ରୋହ ଏକ ଅନୁଚିତ ବିଦ୍ରୋହ । ଏହା ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ । ଲେଖକଙ୍କମାନଙ୍କର ବି ଦାୟିତ୍ୱବୋଧ ରହିବା କଥା । କୌଣସି ସ୍ୱାଧୀନତା ଯେ ନିରଙ୍କୁଶ ନୁହେଁ ଏକଥା ଲେଖକମାନେ ବୁଝିବା ଦରକାର । ଅନ୍ୟର ଭାବପ୍ରବଣତାକୁ ଆଘାତ କଲେ ଆଘାତପ୍ରାପ୍ତ ବ୍ୟକ୍ତିର ମଧ୍ୟ ପ୍ରତିବାଦ କରିବାର ଅଧିକାର ଅଛି ।

ଅନ୍ୟ ଗୋଷ୍ଠୀର ଚିନ୍ତା କିନ୍ତୁ ଭିନ୍ନ । ପୂର୍ବେ ଅନେକ ସାଂସ୍କୃତିକ ଅସହିଷ୍ଣୁତାର ଘଟଣା ଘଟିଥିଲେ ବି ରାଷ୍ଟ୍ର ଏହାର ପୃଷ୍ଠପୋଷକତା କରୁଥିବାର ନଜିର ନଥିଲା । ମନ୍ତ୍ରୀ, ଲୋକପ୍ରତିନିଧିମାନେ ଖୋଲାଖୋଲି ଏହାକୁ ସମର୍ଥନ କରୁନଥିଲେ ଏବଂ ଏବେ ଭାରତର ସଂସ୍କୃତି ମନ୍ତ୍ରୀ ଯେପରି ଆକ୍ରମଣରୁ ମୁକ୍ତି ପାଇଁ ଲେଖକମାନଙ୍କୁ ଲେଖା ଛାଡ଼ି ଦେବାକୁ ପ୍ରସ୍ତାବ ରଖନ୍ତି, ଏପରି କିଏ କହୁ ନଥିଲେ । ପାକିସ୍ଥାନର ଗାୟକ ଗୁଲାମ ଅଲ୍ଲୀଙ୍କୁ ଗାଇବାକୁ ନଦେବା ଏବଂ ପୁସ୍ତକ ଉନ୍ମୋଚନରେ ପାକିସ୍ଥାନୀର କଳଙ୍କ ଦେଇ ବୁଦ୍ଧିଜୀବୀ ସୁଧିର୍ଣ୍ଣ କୁଲକର୍ଣ୍ଣୀଙ୍କୁ କଳାମୁହଁ କରିଦେବା କୌଣସି ଶାସକ ଗୋଷ୍ଠୀ କେବେ କରିନଥିଲା ।

**ସ୍ପଷ୍ଟ କଥା ହେଲା, ଭାରତରେ ଏକ ଉନ୍ନତ ପରମ୍ପରା ରହିଛି । ଏହା ଭାରତର ଭାବନା – ଆଇଡ଼ିଆ ଅଫ୍ ନେସନ୍ । ଏହି ଭାବନାରେ ଅଛି ଉଦାରବାଦୀ ଚିନ୍ତା, ସାଂସ୍କୃତିକ ବିବିଧତା ଏବଂ ସହିଷ୍ଣୁତାର ସ୍ପିରିଟ୍ । ଏହା ନଷ୍ଟ ହୋଇଗଲେ ଭାରତର ଉତ୍କୃଷ୍ଟ ଅନ୍ତରାତ୍ମା କଳୁଷିତ ହୋଇଯିବ ।**

**ସୁତରାଂ, ଏ ଦେଶର ଆତ୍ମାକୁ ବଞ୍ଚେଇ ରଖିବାକୁ ସାହିତ୍ୟିକମାନେ ଯେଉଁ ବିଦ୍ରୋହ କରୁଛନ୍ତି ଏହା ସ୍ପୃହଣୀୟ । କିଛି ମୌଳବାଦୀଙ୍କ ଆକ୍ରମଣରେ ଯେ ଏଇ ଆତ୍ମା ନଷ୍ଟ ହୋଇଯାଉ, ଏହା କୌଣସି ସାହିତ୍ୟିକ ଚାହେଁନା । ସାହିତ୍ୟିକମାନେ ରାଜନୀତିରୁ ବି ଦୂରେଇ ରହିବା ଉଚିତ ।**



# ସାମାଜିକ କୁପ୍ରଥା ଓ ଟିଭି ଧାରାବାହିକ

କେତେବେଳେ କେମିତି ଅଭିଯୋଗ ହୁଏ, ସାମାଜିକ କୁପ୍ରଥାକୁ ନେଇ ଅନେକ ଟିଭି ଚ୍ୟାନେଲରେ ପ୍ରସାରିତ ହୋଉଥିବା ଧାରାବାହିକମାନଙ୍କୁ ନିଷେଧ କରାଯିବା ଉଚିତ୍ । ଏଇ ଯେମିତି ବାଳିକା ବଧୂ...। ବାଳିକା ବଧୂ ସିରିୟଲରେ ବାଲ୍ୟ ବିବାହର ମହିମା ଗାନ କରାଯାଇଛି । ବାଲ୍ୟ ବିବାହ କିନ୍ତୁ ଭାରତବର୍ଷରେ ଆଇନତଃ ମନା । ସୁତରାଂ ଭାରତୀୟ ଆଇନକୁ ବେଖାତିର କରି ଏବଂ ସାମାଜିକ କୁପ୍ରଥାକୁ ମନୋରଞ୍ଜନ ରଙ୍ଗ ଦେଇ ଏହି ପ୍ରଥାର ବଡ଼ିମାଗାନ ଏ ଦେଶ ପାଇଁ ଶୁଭଙ୍କର ହେଉନାହିଁ । ଏହା ଏଠି ଥିବା ନୈତିକତା ତଥା ଗୋପନୀୟତାର ବି ପ୍ରତିକୂଳ ।

କେବଳ ବାଳିକା ବଧୂ କାହିଁକି, ଆହୁରି କିଛି ଟିଭି ଧାରାବାହିକ ପ୍ରସାରିତ ହେଉଛି ଯେଉଁଥିରେ ଅନ୍ଧ ବିଶ୍ୱାସ, ସାମାଜିକ କଳଙ୍କ ତଥା କୁପ୍ରଥାକୁ ନେଇ ଅନେକ ଆଭ୍ୟନ୍ତରୀଣ କଥା ରହିଛି । ସେଇ ସବୁ ସିରିୟଲ ଭିତରୁ କିଛି ହେଉଛି – 'ସାଜନ ଘର ଜାନା ହୈ' ଏବଂ 'ଏ ରିସ୍ତା କ୍ୟା କେହେଲାତା ହୈ' ଏବଂ ଏପରି ଅନେକ । ଏ ସବୁ ଧାରାବାହିକରେ ବର୍ଣ୍ଣିତ କଥାବସ୍ତୁ ଏଠାରେ ଥିବା ଆଇନର ପରିପନ୍ଥୀ ହୋଇଥିଲେ ବି ଏହାର ସାର୍ବଜନୀନ ସ୍ୱୀକୃତି ପାଇଁ ଯେ ଏକ ପ୍ରଚ୍ଛନ୍ନ ଉଦ୍ୟମ ହେଉଛି ଏହାକୁ ଅସ୍ୱୀକାର କରି ହେଉନାହିଁ ।

ଏସବୁ ଧାରାବାହିକ ଘରୋଇ ନାଟକ । ଏହା କେବଳ ବୟସ୍କଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ପିଲାଙ୍କୁ ସାଙ୍ଗରେ ବସେଇ ଏସବୁ ସିରିୟଲ ଘରେ ଏକାଠି ଦେଖିହେବ ।

ବାଳିକାବଧୂ ଧାରାବାହିକ ଏକ ରାଜସ୍ଥାନୀ କାହାଣୀ ଉପରେ ପର୍ଯ୍ୟବସିତ । ଏହା ଏକ ମନୋରଞ୍ଜନ ଧର୍ମୀ ଅପେରା । ଏଥିରେ ଆଠ ବର୍ଷର ଝିଅ ଆନନ୍ଦୀ ତାରି ବୟସର ଏକ ପୁଅକୁ ବିବାହ କରିଛି । ରାଜସ୍ଥାନର ଏକ ଗ୍ରାମୀଣ ଜମିଦାର ପରିବାରରେ ଏ ବିବାହ ହୋଇଛି ।

ରାଜସ୍ଥାନରେ ବାଲ୍ୟ ବିବାହ ବେଶି ଚାଲେ । ବାଲ୍ୟ ବିବାହ ଏଇ ବାଳିକା ବଧୂ ସିରିୟଲର ମୁଖ୍ୟ କଥାବସ୍ତୁ । ଏହାର କିଛି ଶାଖା ପ୍ରସଂଗ ବି ରହିଛି । ଅନ୍ୟ କଥାରେ କହିଲେ ସବ୍ ପ୍ଲଟ୍ । ଆନନ୍ଦୀ କିପରି ଶୈଶବରୁ କୈଶୋରରେ ପରିବର୍ତ୍ତିତ ହେଉଛି; ବୟସ୍କ ଜୀବନର ଜଟିଳ ସଂପର୍କକୁ କିପରି ଗ୍ରହଣ କରୁଛି ଏବଂ ରାଜସ୍ଥାନର ଗ୍ରାମୀଣ ସଂଭ୍ରାନ୍ତ ପରିବାରର ଜୀବନ ଶୈଳୀକୁ ସେ କିପରି ଆବୋରି ନେଇ ଯାଉଛି ଏ ସବୁ କଥା ଏଇ ସବୁ ସବ୍ ପ୍ଲଟ ମାନଙ୍କରେ ଅଛି ।

ସାଜନ ଘର ଜାନା ହୈ ମଧ୍ୟ ସାମାଜିକ କଥାବସ୍ତୁ ଉପରେ ପର୍ଯ୍ୟବେସିତ ହୋଇଥିବା ଏକ ହିନ୍ଦୀ ଧାରାବାହିକ । ଧନୀ ନାମ୍ନୀ ଝିଅଟି ଏକ ବଡ ଘରେ ବିବାହ କଲା ପରେ ତାର ଶ୍ୱଶୁର ଘର ଲୋକେ ତା ସ୍ୱାମୀକୁ ପୁଣି ଅନ୍ୟତ୍ର ବାହା କରିଦିଅନ୍ତି । ନିଜ ସ୍ୱାମୀଙ୍କ ଦ୍ୱିତୀୟ ପତ୍ନୀ ଗ୍ରହଣକୁ ଧନୀ ଗ୍ରହଣ କରିନିଏ । ଧନୀ କିନ୍ତୁ ତା ଶ୍ୱଶୁର ଘର ଛାଡେନି । ସେ ସେଇଠି ଚାକରାଣୀ ଭାବେ ରହିବାକୁ ଚାହେଁ । ଧନୀ ଜୋର ଦେଇ ବି କହେ ତାର ମଥାର ସିନ୍ଦୂର ଭାଗ ଭାଗ ହୋଇଯାଇଥିଲେ ବି ସେ ଶେଷ ପର୍ଯ୍ୟନ୍ତ ପତ୍ନୀ ଧର୍ମ ପାଳନ କରିବ ।

ସଂକ୍ଷିପ୍ତରେ କହିଲେ, ବାଳିକା ବଧୂର ବାଲ୍ୟ ବିବାହ ଏବଂ ସାଜନ୍ ଘର ଜାନା ହୈ ର ଏକାଧିକ ପତ୍ନୀ ଗ୍ରହଣ ଏଠି ଏବେ ମନୋରଞ୍ଜନର କଥାବସ୍ତୁ । ନିୟମିତ ଭାବେ ଟିଭି ଚାନେଲ ମାନଙ୍କରେ ଏପରି କୁପ୍ରଥା, ଅନ୍ଧବିଶ୍ୱାସକୁ ନେଇ ପ୍ରସାରଣ ଚାଲିଛି । କୁପ୍ରଥା ସଂପର୍କରେ ଆଂଶଙ୍କା ଆସିବା ତେଣୁ ସ୍ୱାଭାବିକ । ଏହାର ଏକମାତ୍ର କାରଣ ହେଉଛି, ଭାରତର ପ୍ରାୟ ସବୁ ପରିବାର ପାଇଁ ଟିଭି ମନୋରଞ୍ଜନର ଏକ ନିଶା – ନୂଆ ଅଫିମ । ଥରେ ନିଶା ଗ୍ରସ୍ତ ହୋଇଗଲେ ନିଶା ଚାଲେ ଏବଂ ସବୁ ବଦଭ୍ୟାସର ସୁଗୁଣ ବି ଦେଖାଯାଏ । ଅନେକ ଟିଭି ସିରିୟଲର କୁପ୍ରଭାବକୁ ନେଇ ଭାରତୀୟ ସଂସଦରେ ଏକଥା ଆଲୋଚନା ହୋଇସାରିଛି ଏବଂ ପିଲାଙ୍କ ଉପରେ ଏହାର ଯେ ପ୍ରତିକୂଳ ପ୍ରଭାବ ରହିଛି ଏ କଥା ବି ଆଲୋଚନାକୁ ଆସିଛି, କାରଣ ଗଣମାଧ୍ୟମରେ ବିଶେଷ କରି ଦୃଶ୍ୟଶ୍ରାବ୍ୟ ଗଣମାଧ୍ୟମ ଟିଭିରେ ପ୍ରସାରିତ ହୋଉଥିବା କଥାବସ୍ତୁରେ ଅନ୍ତର୍ନିହିତ ଥିବା ମୂଲ୍ୟବୋଧ ତଥା ଦୃଷ୍ଟିଭଂଗୀକୁ ପିଲାଏ ସହଜରେ ଗ୍ରହଣ କରିନିଅନ୍ତି ଏବଂ ସିରିୟଲର ଅନେକ ଚରିତ୍ରକୁ ସେମାନେ ନିଜର ମଡେଲ ବୋଲି ଭାବନ୍ତି ।

ଏଇ କିଛି ଦିନ ତଳେ ଏ ଲେଖକର ଜଣେ ଆତ୍ମୀୟ ଟିଭି ସିରିୟଲ ଦେଖି ତାଙ୍କ ଚାରି ବର୍ଷର ଝିଅର କିପରି ବ୍ୟାବହାରିକ ପରିବର୍ତ୍ତନ ହୋଇଛି ସେ ସଂପର୍କରେ ଏକ ସୂଚନା ଦେଉଥିଲେ । ତାଙ୍କ ଝିଅ ନାଁ ମିନି । ମିନି ନର୍ସରୀରେ ପଢେ । ଘରେ ବସି ମିନି ଖେଳିଲା ବେଳେ ପୂର୍ବେ ସେ ନିଜର ଖେଳନା ଧରି ଖେଳୁଥିଲା । ଖେଳ ଭିତରେ ସେ ଏକ କାଳ୍ପନିକ ଶ୍ରେଣୀ ଗୃହ ତିଆରି କରୁଥିଲା । କଣ୍ଢେଇ, ହାତୀ, ଘୋଡା, ମାଟି ପାତ୍ର ଏସବୁ ତାର ଛାତ୍ରଛାତ୍ରୀ ଥିଲେ । ନିଜେ ଶିକ୍ଷୟିତ୍ରୀ ହେଉଥିଲା । ପିଲାଙ୍କୁ ସେ ପାଠ ପଢାଉଥିଲା ଏବଂ ପାଠ ଆଦାୟ କରି ସଂଶୋଧନ କରୁଥିଲା । ପିଲାଏ ପାଟି କଲେ ସେ ତାଙ୍କୁ ଗାଳି ଦେଉଥିଲା । ନିଜ ପିଲାଙ୍କ ପାଠପଢା ନେଇ ସେ ଅଭିଭାବକଙ୍କ ସହ ଆଲୋଚନା କରୁଥିଲା ଏବଂ ଶ୍ରେଣୀ ଶେଷ ହେଲେ ଆଖିରେ ଥିବା କାଳ୍ପନିକ

ଚଷମାକୁ ଗୋଟିଏ ହାତରେ ଉପରକୁ ଟେକି ଶ୍ରେଣୀ ବାହାରକୁ ଚାଲିଯାଉଥିଲା । ନିଜ ଖେଳନାକୁ ନେଇ ଏପରି ମନଗଢା ପରିବେଶ ସୃଷ୍ଟି କରି ମିନି ନିର୍ଦ୍ଧୂମ ଖେଳୁଥିଲା । ଆତ୍ମୀୟ କହୁଥିଲେ ଏବେ କିନ୍ତୁ ସେ ତାଙ୍କ ଝିଅ ମିନିର ବ୍ୟବହରରେ ପରିବର୍ତ୍ତନ ଦେଖିଲେ । ଖେଳନାକୁ ନେଇ ସେ ଆଉ ଶ୍ରେଣୀ ଗୃହର ଖେଳ ଖେଳୁନାହିଁ । ଦିନେ ଗୋଟିଏ ଓଢଣୀକୁ ମୁଣ୍ଡରେ ପକାଇ ମିନି କହିଲା, 'ମମି, ମୁଁ ଆନନ୍ଦୀ ହେବାକୁ ଚାହେଁ ।'

ଆତ୍ମୀୟଙ୍କ ଏକଥା ଶୁଣିଲା ପରେ ମନେହେଲା, ଏଥିପାଇଁ ବୋଧେ ଅନେକ ଭାରତୀୟ ରାଜନେତା ତଥା ସାମାଜିକ କର୍ମୀ ବାଳିକା ବଧୂ ପ୍ରସାରଣ ବନ୍ଦ କରିବାକୁ ଦାବୀ ଉଠାନ୍ତି ।

ଟିଭି ନାଟକରୁ ପିଲାଟିଏ ଅନେକ ଶିଖେ । କିଛି ଚରିତ୍ରର ଭୂମିକା ସେ ସହ ନିଜକୁ ପରିଚୟ କରାଏ । ସାମାଜିକ ପ୍ରକ୍ରିୟା ଭିତରେ ସେ ନିଜକୁ ସାମିଲ କରେ ଏବଂ କିଛି ଚରିତ୍ରର ଗୁଣ ତଥା ସନ୍ଦେଶକୁ ନିଜ ପାଇଁ ଆପଣାଏ ।

ଅନେକ ହୁଏତ କହି ପାରନ୍ତି, ଅନୁକରଣ କରିବା ଗୋଟିଏ ଛୋଟ ଝିଅର ଏକ ସ୍ୱାଭାବିକ ବ୍ୟବହାର । ସେ ମା, ବୋହୂ, ଶାଶୁ ଭୂମିକା ନିଜ ଘରେ ଖୁବ୍ ନିକଟରୁ ଦେଖେ ଏବଂ ଏଥିନେଇ ଭବିଷ୍ୟତ ନିମନ୍ତେ ନିଜକୁ ପ୍ରସ୍ତୁତ କରେ । ଟିଭି ସିରିୟଲ ନଥିବା ବେଳେ ବି ଅନେକ ଛୋଟ ଝିଅ ଘରେ ବୋହୂ ବୋହୂକା ଖେଳୁଥିଲେ । ଆଧୁନିକତାର ଚାପକୁ ସମ୍ଭାଳି ନେବାକୁ ଅନେକ ଟିଭି ସିରିୟଲର ସକାରତ୍ମକ ପ୍ରଭାବ ବି ରହୁଛି । ପ୍ରକୃତରେ ଏଥିରେ କ୍ଷତି ଅପେକ୍ଷା ଲାଭ ବେଶି ।

ସତକଥା ହେଲା, ଟିଭି ସିରିୟଲ ମାନଙ୍କରେ ସାମାଜିକ କୁପ୍ରଥାକୁ ନେଇ ଯେପରି ଦୃଶ୍ୟ ପରିବେଶିତ ହେଉଛି ବାସ୍ତବ କ୍ଷେତ୍ରରେ କିନ୍ତୁ ଏହା ଘଟେ ନାହିଁ । ବାଲ୍ୟ ବିବାହ କରି ଗାଁରେ ରହୁଥିବା ଝିଅର ପରିସ୍ଥିତି ଆନନ୍ଦୀ ପରି ନୁହେଁ କିମ୍ବା ଦ୍ୱିତୀୟ ବିବାହ କରିଥିବା ନିଜ ସ୍ୱାମୀ ପାଖରେ ରହୁଥିବା ପ୍ରଥମ ସ୍ତ୍ରୀର ମାନସିକ ଏବଂ ଶାରିରୀକ ଯନ୍ତ୍ରଣା ଧନୀର ଯନ୍ତ୍ରଣା ପରି ନୁହେଁ । ରଙ୍ଗ, ଯାକଯମକ ଏବଂ ଗ୍ଲାମରର ଆଢୁଆଳ ଭିତରେ ଏ ଯନ୍ତ୍ରଣା ମନୋରଞ୍ଜନ ହୋଇପାରେ । ବାସ୍ତବ ପୀଡ଼ିତାର ଦୁଃଖ କିନ୍ତୁ ନିଆରା ଓ ଅବର୍ଣ୍ଣନୀୟ ।

ସାମାଜିକ କୁପ୍ରଥାକୁ ଆଧାର କରି ହେଉଥିବା ଟିଭି ସିରିୟଲ ମାନଙ୍କରେ ନିଷେଧ କଥା ଉଠିଲେ ଭାରତବର୍ଷରେ ଦୁଇଟି ପରସ୍ପର ବିରୋଧୀ ମତ ଆସେ । ଗୋଟିଏ ମତ ହେଲା, ମତ ବ୍ୟକ୍ତ କରିବାର ଅଧିକାର ଏକ ମୌଳିକ ଅଧିକାର । ଏବଂ ଜଣେ ଦର୍ଶକର ମନୋରଞ୍ଜନ ଉପଭୋଗ କରିବା ମଧ୍ୟ ସେଇ ଅଧିକାର ଭୁକ୍ତ । ଭାରତ ସମ୍ବିଧାନ ୧୯ ଧାରାରେ ଏ ଅଧିକାର ଲେଖା ଅଛି ।

ଅନ୍ୟ ଏକ ଗୋଷ୍ଠୀ କିନ୍ତୁ ଏହାକୁ ବିରୁଦ୍ଧ କରି ଏକଥା କହେ ଯେ, କୌଣସି ମୌଳିକ ଅଧିକାର ନିରଙ୍କୁଶ ନୁହେଁ । ରାଷ୍ଟ୍ରର ସାର୍ବଭୌମତ୍ୱ, ସୁରକ୍ଷା, ଆଇନ ଶୃଙ୍ଖଳା, ବୈଦେଶିକ ରାଷ୍ଟ୍ର ସହ ସଂପର୍କ, ସାମାଜିକ ନୈତିକତା ଏବଂ ଶୋଭନୀୟତା ପାଇଁ ଏଇ ମତବ୍ୟକ୍ତ କରିବାର ଅଧିକାରକୁ ସଂକୁଚିତ କରାଯାଇପାରେ । ଯୁକ୍ତିଯୁକ୍ତ ନିୟନ୍ତ୍ରଣ ବା ରିଜନେବଲ ରିଷ୍ଟ୍ରେଣ୍ଟର ପରିସର ଭିତରକୁ ଏହାକୁ ଅଣାଯାଇପାରେ । ୧୯୯୫ ମସିହାରେ କେବୁଲ ସର୍ଭିସ୍ ନେଟ୍ୱାର୍କ ଆଇନରେ ଅଛି, ଯେଉଁ ସିରିୟଲରେ କିଛି ରୁଚିହୀନ ଦୃଶ୍ୟ ଥାଏ, ସାମାଜିକ କୁପ୍ରଥା ବା ଅନ୍ଧ ବିଶ୍ୱାସକୁ ପ୍ରଶଂସାକରି କିଛି କଥାବସ୍ତୁ ଥାଏ, ନୈତିକତା ତଥା ଶୋଭନୀୟତାର କୌଣସି ଠାରେ କ୍ଷୁଣ୍ଣ ହେଉଥାଏ, ଏହି ସବୁ ସିରିୟଲକୁ ନିଷେଧ କରିବାର ଅଧିକାର ରାଷ୍ଟ୍ରର ରହିଛି ।

ବାସ୍ତବରେ କିନ୍ତୁ ମତବ୍ୟକ୍ତ କରିବାର ଅଧିକାରକୁ ଏକ ନିରଙ୍କୁଶ ଅଧିକାର କହି ଯେ କୌଣସି ସାମାଜିକ କୁପ୍ରଥାର ମହିମାଗାନ କରିବା ଯେପରି ବିପଦପୂର୍ଣ୍ଣ, ଠିକ୍ ସେମିତି ଯୁକ୍ତିଯୁକ୍ତ ନିୟନ୍ତ୍ରଣ ନାଁରେ ମତବ୍ୟକ୍ତ କରିବାର ଅଧିକାରରେ ଅଙ୍କୁଶ ଲଗାଇବା ଗଣତନ୍ତ୍ର ପାଇଁ ଅଶୁଭକାରକ ।

ନୈତିକତା ତଥା ଶୋଭନୀୟତାର କୌଣସି ଏକ ଧାରାବାହିକକୁ ବନ୍ଦ କରିବା ନିମନ୍ତେ ଦାବି କରିବା ସହଜ ହୋଇପାରେ । ଏହାକୁ ପ୍ରକୃତରେ କାର୍ଯ୍ୟକାରୀ କରିବା କିନ୍ତୁ କଷ୍ଟ । କାରଣ ହେଉଛି, ନୈତିକତା ଏବଂ ଶୋଭନୀୟତା ଏତେ ନରମ କଥା ଯେ ଏହାକୁ ଯେ କୌଣସି ଭାବେ ପ୍ରସାରିତ କିମ୍ବା ସଙ୍କୁଚିତ କରାଯାଇପାରେ । ସମୟର ପରିବର୍ତ୍ତନ ସହ ଶୋଭନୀୟତାର ପରିବର୍ତ୍ତନ ଘଟିଥାଏ ଏବଂ ଗୋଟିଏ ସମାଜରେ ବି ନୈତିକତା ତଥା ଶୋଭନୀୟତାକୁ ନେଇ ଭିନ୍ନ ଭିନ୍ନ ମତ ଆସିପାରେ...।

ବିଖ୍ୟାତ ଔପନ୍ୟାସିକ ଡି.ଏଚ୍ ଲରେନ୍ସଙ୍କ ଲେଡି ଚାଟର୍ଲିସ ଲଭରସରେ ଥିବା ଯୌନକଥା ବା ସେକ୍ସର ଅବତାରଣାକୁ ନେଇ ଅନେକ ପଣ୍ଡିତ ଦ୍ୱିମତ ହୋଇଥିଲେ ଏବଂ ପ୍ରଶ୍ନ କରିଥିଲେ, ସାହିତ୍ୟରୁ ସେକ୍ସ କାଢ଼ି ନେଲେ କେବଳ ଧର୍ମକୁ ନେଇ କ'ଣ ସାହିତ୍ୟ ଲେଖା ହେବ ଏବଂ ଆତଙ୍କବାଦୀ ଧର୍ଷଣ, ଜାତିବାଦ ପରି ସାମାଜିକ ବିଘଟନକାରୀ କଥାବସ୍ତୁକୁ ନେଇ କ'ଣ ସିନେମା ତଥା ସିରିୟଲ ତିଆରି ହେବ ? ଏ ଲେଖକଙ୍କର ଏ ସଂପର୍କରେ ଏ ଶେଷ କଥା – ସାମାଜିକ କୁପ୍ରଥାର ମହିମାଗାନ କରି ହେଉଥିବା ମନୋରଞ୍ଜନ ଧର୍ମୀ ସିରିୟଲକୁ ନିରୁତ୍ସାହିତ କରିବା ଦରକାର – ତାହା ବାଳିକା ବଧୂ ହେଉକି ସାଜନ୍ ଘର ଜାନା ହୈ ହେଉ... ।



# ସୁଧୁରିବାର ବାଟ

ଓଡ଼ିଶାର ସରକାରୀ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ଉପରେ ଭାରତର ନିୟନ୍ତ୍ରକ ତଥା ମହାଲେଖା ପରୀକ୍ଷକ (ସି.ଏ.ଜି.)ଙ୍କର ସଦ୍ୟ ଏକ ଅଡ଼ିଟ୍ ରିପୋର୍ଟ ପ୍ରକାଶ ପାଉଛି । ଓଡିଶାର ସାଧାରଣ ତଥା ସାମାଜିକ କ୍ଷେତ୍ର ଅଡିଟ୍ ର ପ୍ରିନସିପାଲ ଆକାଉଟାଂଟ ଜେନେରାଲ ଏହି ରିପୋର୍ଟ ୨୦୧୫ ପାଇଁ ପେଶ୍ କରିଛନ୍ତି । ରିପୋର୍ଟରେ ଅଛି, ୨୦୦୯-୧୦ ମସିହାରେ ସରକାରୀ ପ୍ରାଥମିକ ସ୍କୁଲରେ ନାମ ଲେଖାଇଥିବା ପିଲାଙ୍କ ସଂଖ୍ୟା ୬୬ ଲକ୍ଷ ୨୧ ହଜାର ଥିବା ବେଳେ ୨୦୧୩-୧୪ ମସିହାରେ ଏଇ ସଂଖ୍ୟା ୬୩ ଲକ୍ଷ ୮୮ ହଜାରକୁ ଖସି ଆସିଛି । ଏଇ ସମୟ ଭିତରେ କିନ୍ତୁ ବେସରକାରୀ ସ୍କୁଲରେ ପିଲାଙ୍କ ସଂଖ୍ୟା ବଢ଼ିଛି । ସିଏଜି ଏକଥା ବି କହିଛନ୍ତି, ସରକାରୀ ସ୍କୁଲରେ ପିଲାଙ୍କ ମଧ୍ୟାହ୍ନ ଭୋଜନ, ମାଗଣା ପୋଷାକ ଏବଂ ମାଗଣା ପୁସ୍ତକର ଆକର୍ଷଣ କିଛି କାମ କରିନି । ପ୍ରଥମାବସ୍ଥାରେ ଏହି ମାଗଣା ଯୋଜନା ପ୍ରତି ପିଲା ଏବଂ ଅଭିଭାବକଙ୍କର ଯେଉଁ ଆଗ୍ରହ ଥିଲା, ତାହା କ୍ରମଶଃ ହ୍ରାସ ପାଇଛି ଏବଂ ସବୁଠାରୁ ବଡ଼କଥା ହେଲା, ୨୦୦୯ ମସିହାରୁ ୨୦୧୪ ମସିହା ମଧ୍ୟରେ ପ୍ରାୟ ୪ଲକ୍ଷ ପିଲାଙ୍କ ପାଇଁ କେବଳ ସ୍କୁଲ ପିଛା ଜଣେ ଶିକ୍ଷକ ନିଯୁକ୍ତି ପାଇଛନ୍ତି । ଏହା ସିଏଜି ରିପୋର୍ଟର ତଥ୍ୟ ।

ଭାରତର କମ୍ପ୍ଟ୍ରୋଲର ଆଣ୍ଡ ଅଡ଼ିଟର ଜେନେରାଲ (ସିଏଜି) ଏକ ସାମ୍ବିଧାନିକ ସ୍ୱାଧୀନ ସଂସ୍ଥା । ତାଙ୍କ ରିପୋର୍ଟ ଏକ ବିଶ୍ୱସନୀୟ ଦସ୍ତାବିଜ୍ । ସୁତରାଂ, ଏଇ ରିପୋର୍ଟ ଆସିବା ପରେ ଭାରତର ଶିକ୍ଷା ଅଧିକାର ଆଇନର ବିଧି ବ୍ୟବସ୍ଥା ଯେ ଓଡ଼ିଶାରେ ସେତେ ସଫଳ ଭାବେ କାମ କରିନି, ତା'ର ପ୍ରମାଣ ମିଳିଛି ।

ସର୍ବଶିକ୍ଷା ଯୋଜନା ଲାଗୁହେଲା ବେଳେ ଓଡିଶା ଶିକ୍ଷା ବ୍ୟବସ୍ଥାରେ ଏକ ନୂଆ ଆଶାର ସଂଚାର ହୋଇଥିଲା । ଏହି ଯୋଜନାର ଉଦ୍ଦେଶ୍ୟ ଥିଲା, ରାଜ୍ୟରେ ଏକ ଗୁଣାତ୍ମକ ପ୍ରାଥମିକ ଶିକ୍ଷା ପାଇଁ ଭଲ ସ୍କୁଲ ଗୃହ ଏବଂ ଭଲ ଶିକ୍ଷାଦାନ ଉପକରଣ ଉପଲବ୍ଧ ହେବ । ରାଜ୍ୟ ସରକାର ଏଥିପାଇଁ ୨୦୦୯ ମସିହାରେ ଏକ ଆକ୍ସନ ପ୍ଲାନ୍ ବି ପ୍ରସ୍ତୁତ କରିଥିଲେ । ପ୍ଲାନରେ ଥିଲା, ସବୁ ସରକାରୀ ପ୍ରାଥମିକ ସ୍କୁଲ ପାଇଁ ପକ୍କା ଘର, ପାଇଖାନା,ପିଇବା ପାଣି, ବିଜୁଳିବତୀ, ଖେଳ ପଡିଆ ରହିବ । ପିଲାଏ ସ୍କୁଲକୁ

ଆସିବାକୁ ଏଥିପାଇଁ ଆକର୍ଷିତ ହେବେ । ଏଇ ଆକ୍ସନ ପ୍ଲାନ କାର୍ଯ୍ୟକାରିତାର ବାସ୍ତବ ଚିତ୍ର ଓଡିଶାର ଏଜି ତାଙ୍କ ୨୦୧୫ ମସିହା ଅଡିଟ୍ ରିପୋର୍ଟରେ ପ୍ରକାଶ କରିଛନ୍ତି । ରିପୋର୍ଟ କହେ, ଏଠି ୨୫୧୬ ପ୍ରାଥମିକ ସ୍କୁଲର ନିଜସ୍ୱ ଘର ନାହିଁ । ୧୭୧୪ ସ୍କୁଲରେ ପିଇବା ପାଣିର ବ୍ୟବସ୍ଥା ନାହିଁ । ୨୫୭୮ରେ ପାଇଖାନା ନାହିଁ ଏବଂ ୪୧୬୪୩ ପ୍ରାଥମିକ ବିଦ୍ୟାଳୟରେ ପିଲାଙ୍କ ଖେଳିବା ପାଇଁ ଖେଳ ପଡ଼ିଆ ନାହିଁ । ଇଏ ହେଉଛି ଓଡ଼ିଶାର ସରକାରୀ ପ୍ରାଥମିକ ସ୍କୁଲ ର ଅବସ୍ଥା । ପ୍ରଶ୍ନ ଆସୁଛି, ଏ ଅବସ୍ଥାର ସୁଧାର ଆସିବ କେମିତି ?

ଏଇ କିଛି ଦିନ ତଳେ ଉତ୍ତରପ୍ରଦେଶର ସରକାରୀ ପ୍ରାଥମିକ ସ୍କୁଲର ଦୂରବସ୍ଥା ନେଇ ମାନ୍ୟବର ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟଙ୍କର ଏକ ରାୟ ଆସିଛି । ଏଇ ରାୟ କେବଳ ଏକ ଐତିହାସିକ ରାୟ ନୁହେଁ, ଏହା ଏକ ସଂସ୍କାରମୂଳକ ରାୟ ବି। ଉତ୍ତରପ୍ରଦେଶର ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ଉପରେ ଏକ ଜନସ୍ୱାର୍ଥ ମାମଲାର ବିଚାର କରି ମାନ୍ୟବର ଆହ୍ଲାବାଦ ହାଇକୋର୍ଟ ଏହି ରାୟ ଦେଇଛନ୍ତି ।

ଓଡ଼ିଶା ପରି ଉତ୍ତରପ୍ରଦେଶର ସରକାରୀ ପ୍ରାଥମିକ ବିଦ୍ୟାଳୟର ଅବସ୍ଥା ଭଲ ନାହିଁ। ଏହାର ସୁଧାର ପାଇଁ ଏକ ନିର୍ଦ୍ଦେଶ ଏବେ ଦେଇଛନ୍ତି ମାନ୍ୟବର ଆହ୍ଲାବାଦ କୋର୍ଟ । କୋର୍ଟଙ୍କ ରାୟ ହେଲା, ଏଣିକି ଯେପରି ଉତ୍ତରପ୍ରଦେଶର ସମସ୍ତ ସରକାରୀ କର୍ମଚାରୀ, ଅଫିସର, ଏମ୍.ପି., ତଥା ଏମ୍.ଏଲ୍.ଏ.ଙ୍କ ପରି ସମସ୍ତ ଲୋକ ପ୍ରତିନିଧି ଏବଂ ବିଚାରପତି ତାଙ୍କ ପିଲାମାନଙ୍କୁ ସରକାରୀ ପ୍ରାଥମିକ ସ୍କୁଲରେ ପାଠ ପଢ଼ାଇବେ, ଏକଥା ମୁଖ୍ୟ ଶାସନ ସଚିବ ଆଗାମୀ ଛଅ ମାସ ଭିତରେ ନିଶ୍ଚିତ କରିବେ । ସରକାରୀ ତହବିଲ ତଥା ଗରିବ ଟିକସଦାତାର ଅର୍ଥରୁ ଦରମା ପାଉଥିବା ସମସ୍ତ ବ୍ୟକ୍ତିଙ୍କ ପାଇଁ ଏଇ ନିର୍ଦ୍ଦେଶ ଉଦ୍ଦିଷ୍ଟ । ଏହାର ଖିଲାପ ହେଲେ ଖିଲାପକାରୀ କର୍ମଚାରୀ, ଅଫିସରଙ୍କ ପ୍ରମୋଶନ ତଥା ଇନକ୍ରିମେଣ୍ଟ ବନ୍ଦ ହେବ ଏବଂ ଏହି ନିର୍ଦ୍ଦେଶର ଅବମାନନା କରି ଘରୋଇ ପ୍ରାଥମିକ ସ୍କୁଲରେ ନିଜ ପିଲାଙ୍କୁ ପଢ଼ାଉଥିବା କର୍ମଚାରୀମାନେ ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ସରକାରଙ୍କୁ କ୍ଷତିପୂରଣ ଭାବେ ଦେବେ ବୋଲି ହାଇକୋର୍ଟଙ୍କ ରାୟରେ ଅଛି । ଏହା ଆସନ୍ତା ଶିକ୍ଷା ବର୍ଷରୁ ଉତ୍ତରପ୍ରଦେଶରେ ଲାଗୁ ହେବ ।

ମାନ୍ୟବର ଆହ୍ଲାବାଦ ହାଇକୋର୍ଟଙ୍କ ଏତାଦୃଶ ରାୟ ଏଠି ଅନେକଙ୍କୁ ଭଲ ଲାଗୁନି । ଅନେକ ଏଇ ରାୟକୁ ସମାଲୋଚନା କରି କହନ୍ତି, ମାନ୍ୟବର କୋର୍ଟଙ୍କ ଏ ରାୟ ବ୍ୟକ୍ତିର ପସନ୍ଦର ମୌଳିକ ଅଧିକାରକୁ ବିରୁଦ୍ଧ କରେ । କିଏ ତା' ପିଲାକୁ

କେଉଁ ସ୍କୁଲରେ ପଢ଼େଇବ, ଏହା ବ୍ୟକ୍ତିର ନିଜସ୍ୱ ଇଚ୍ଛା। ପିଲାଏ ହିଁ ପରିବାରର ଭବିଷ୍ୟତ । ସୁବିଧା ନଥିବା ଏବଂ ଭଲ ପଢ଼ା ହେଉ ନଥିବା ସରକାରୀ ସ୍କୁଲରେ ନିଜ ପିଲାଙ୍କୁ ପଢ଼ାଇ କୌଣସି ବାପ ମା ତାଙ୍କ ପିଲାଙ୍କ ଭବିଷ୍ୟତକୁ ନଷ୍ଟ କରିବାକୁ ଚାହେଁନି । ସୁତରାଂ ମାନ୍ୟବର କୋର୍ଟଙ୍କ ରାୟର ପୁନଃ ସମୀକ୍ଷା ହେବା ଦରକାର । ରାୟ ସଂପର୍କରେ ଆଲୋଚନା ଏବଂ ସମାଲୋଚନା ଯାହା ହେଉନା କାହିଁକି କୋର୍ଟଙ୍କ ରାୟ ଅନୁସାରେ ସରକାରୀ ପ୍ରାଥମିକ ସ୍କୁଲରେ ସରକାରୀ କର୍ମଚାରୀଙ୍କ ପିଲାଙ୍କ ନାମ ଲେଖା ବାଧ୍ୟତାମୂଳକ ହେଲେ, ସରକାରୀ ପ୍ରାଥମିକ ସ୍କୁଲର ଅବସ୍ଥା ଯେ ବଦଳିଯିବ, ଏହା ନିଶ୍ଚିତ।

ସରକାରୀ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ନେଇ କିଛି ସର୍ବେକ୍ଷଣ ରିପୋର୍ଟ ଆସେ। ଏଇ ରିପୋର୍ଟର ତଥ୍ୟ ଯେତିକି ଦୁଃଖଦାୟକ ସେତିକି ଆଶ୍ଚର୍ଯ୍ୟଜନକ। ସରକାରୀ ପ୍ରାଥମିକ ବିଦ୍ୟାଳୟରେ ପଞ୍ଚମ ଶ୍ରେଣୀରେ ପଢୁଥିବା ଅଧିକାଂଶ ପିଲା ତୃତୀୟ ଶ୍ରେଣୀର ପଢ଼ା ବହି ପଢ଼ି ପାରନ୍ତି ନାହିଁ। ତୃତୀୟ ଶ୍ରେଣୀର ଗଣିତ ଏମାନେ ଜାଣନ୍ତି ନାହିଁ। ପଞ୍ଚମ ଶ୍ରେଣୀ ପିଲାଏ ହରଣ ଗୁଣନ କରିବାରେ ଅସମର୍ଥ। ଶିକ୍ଷାର ମାନ ଏଇ ସ୍କୁଲମାନଙ୍କରେ ବହୁତ ନିମ୍ନ ସ୍ତରରେ ଅଛି। ଏଠି ଅନେକ ଉଚ୍ଚ ଶିକ୍ଷିତ ତଥା ଉତ୍ତମ ପ୍ରଶିକ୍ଷିତ ଶିକ୍ଷକ ଶିକ୍ଷୟିତ୍ରୀ ଥିଲେ ବି ଏମାନଙ୍କୁ ଶିକ୍ଷାଦାନ ବ୍ୟତୀତ ଅନ୍ୟ ସରକାରୀ କାମରେ ଲଗାଯାଏ। ଜନଗଣନା, ଭୋଟର ତାଲିକା ପରି କାର୍ଯ୍ୟରେ ଶିକ୍ଷକଙ୍କ ନିଯୁକ୍ତି ଶିକ୍ଷାଦାନକୁ ବ୍ୟାହାତ କରେ। ସ୍କୁଲମାନଙ୍କରେ ଗଦା ଗଦା ରେଜିଷ୍ଟର ପୂରଣ କରିଦେଲେ ପିଲାଙ୍କ ଶିକ୍ଷା ସମାପ୍ତ ହୋଇଗଲା ବୋଲି ଗଣାଯାଏ। ଅସଲ କଥା ହେଲା, ସରକାରୀ ଚାକିରୀରେ ନିରାପତ୍ତା ଥିବାରୁ ଶିକ୍ଷକ ଏବଂ ଶିକ୍ଷା ବିଭାଗର ପ୍ରଶାସକମାନେ ପ୍ରାଥମିକ ଶିକ୍ଷାର ମାନ ହ୍ରାସ ନେଇ କୌଣସି ଅଭିଯୋଗ ଆଣନ୍ତି ନାହିଁ।

ସର୍ଭେ କରୁଥିବା ସଂସ୍ଥାମାନେ ଏପରି ବି ପରିସଂଖ୍ୟାନ ଦିଅନ୍ତି, ସଂପ୍ରତି ସହରାଂଚଳରେ ଥିବା ସମୁଦାୟ ପ୍ରାଥମିକ ସ୍କୁଲର ପ୍ରାୟ ଅଧେ ହେଉଛି ଘରୋଇ ପ୍ରାଥମିକ ସ୍କୁଲ । ଗ୍ରାମାଞ୍ଚଳରେ ଏହି ଘରୋଇ ସ୍କୁଲର ସଂଖ୍ୟା ପ୍ରାୟ ପଚିଶ ପ୍ରତିଶତରେ ପହଞ୍ଚି ଗଲାଣି । ଶିକ୍ଷା ଅଧିକାର ଆଇନରେ ଥିବା ନିରନ୍ତର ତଥା ବ୍ୟାପକ ମୂଲ୍ୟାୟନ ପରୀକ୍ଷା (କଣ୍ଟିନ୍ୟୁୟସ ଆଣ୍ଡ୍ କଂପ୍ରେହେନସିଭ୍ ଏଭାଲ୍ୟୁଏସନ ଟେଷ୍ଟ) ଘରୋଇ ସ୍କୁଲମାନଙ୍କରେ ଭଲ ଭାବେ ଚାଲିଛି । ସରକାରୀ ସ୍କୁଲମାନଙ୍କରେ ଏହା ଭଲ ଚାଲୁନାହିଁ । କେବଳ ପ୍ରଶିକ୍ଷଣର ଅଭାବ ଯେ ଏହାର ଏକମାତ୍ର କାରଣ, ଏହା ଠିକ୍ ନୁହେଁ । ଏଥିପାଇଁ ନିଷ୍ଠାର ଅଭାବ ଏହାର କାରଣ ହୋଇପାରେ ।

ଅତୀତରେ ସରକାରୀ ପ୍ରାଥମିକ ଶିକ୍ଷା ପଦ୍ଧତି କେବେ ଏତେ ଅସଫଳ ନଥିଲା। ସରକାରୀ ସ୍କୁଲମାନଙ୍କରୁ ଅନେକ ମେଧାବୀ ଛାତ୍ର, ଡ଼ାକ୍ତର, ଇଞ୍ଜିନିୟର, ପ୍ରଶାସକ ଏବଂ ରାଜନୈତିକ ନେତାମାନେ ବାହାରୁଥିଲେ। ସ୍ୱାଭାବିକ ତେଣୁ ପ୍ରଶ୍ନ ଆସେ, ଏବେ ସରକାରୀ ପ୍ରାଥମିକ ବିଦ୍ୟାଳୟର ଏ ଦୂରବସ୍ଥା ପାଇଁ ଦାୟୀ କିଏ ? ଭାରତର କେନ୍ଦ୍ରୀୟ ବିଦ୍ୟାଳୟ ଏବଂ ସୈନିକ ବିଦ୍ୟାଳୟମାନଙ୍କର ଅବସ୍ଥା ସଂପ୍ରତି ସନ୍ତୋଷଜନକ ଅଛି। ଏଇ ସ୍କୁଲମାନଙ୍କର ଭିତ୍ତିଭୂମିର ସୁବିଧା ଏବଂ ଶିକ୍ଷକମାନେ ଯେ ଭଲ ଅଛନ୍ତି, ତାହା ଏକମାତ୍ର କାରଣ ନୁହେଁ। ଅନ୍ୟ କାରଣ ହେଲା, ଏଇ ସ୍କୁଲ ମାନଙ୍କରେ ବଡ଼ ବଡ଼ ସରକାରୀ କର୍ମଚାରୀ ଏବଂ ଧନୀମାନଙ୍କର ପିଲା ପଢ଼ନ୍ତି। ବିଦ୍ୟାଳୟର ପରିଚାଳନା ସଂପର୍କରେ ଏମାନଙ୍କର ସବୁବେଳେ ନଜର ଥାଏ। ଶିକ୍ଷକ - ଅଭିଭାବକ ମିଟିଂରେ ଅଭିଭାବକମାନଙ୍କର ସକ୍ରିୟ ଯୋଗଦାନ ରହିଥାଏ। ସୁତରାଂ ଏ ପ୍ରଶ୍ନ ତେଣୁ ସ୍ୱଭାବିକ ଯେ, ଯଦି ସରକାରୀ କେନ୍ଦ୍ରୀୟ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପାଠପଢ଼ା ଉନ୍ନତ ହୋଇପାରୁଛି, ରାଜ୍ୟ ସରକାରୀ ପ୍ରାଥମିକ ସ୍କୁଲରେ ସେମିତି ପଢ଼ା ହୋଇ ପାରିବନି କାହିଁକି ?

ପ୍ରାଥମିକ ଶିକ୍ଷା ହେଉଛି ଶିକ୍ଷାର ମୂଳ ପିଣ୍ଡ। ଏଇ ଶିକ୍ଷା ଦୁର୍ବଳ ହୋଇଗଲେ ସବୁ ଶିକ୍ଷା ଦୁର୍ବଳ ହୋଇଯାଏ। ଓଡ଼ିଶାରେ ପ୍ରାଥମିକ ସ୍କୁଲମାନଙ୍କୁ କେବଳ ଗରିବ ପିଲାଙ୍କ ଶିକ୍ଷାସ୍ଥଳ କରିଦେବାରେ ଶିକ୍ଷାର ଏଠି ହିତ ସାଧନ ହେଉନି।

ତେଣୁ ପ୍ରାଥମିକ ସ୍କୁଲ ଶିକ୍ଷା ଅବ୍ୟବସ୍ଥାର ସୁଧାର ପାଇଁ ମାନ୍ୟବର ଆହ୍ଲାବାଦ ହାଇକୋର୍ଟଙ୍କ ରାୟ ସର୍ବତ୍ର ଲାଗୁହେବାର ଆବଶ୍ୟକତା ଅଛି। କାରଣ ହେଉଛି, ସରକାରୀ ପ୍ରାଥମିକ ସ୍କୁଲରେ ଜିଲ୍ଲାପାଳଙ୍କ ପିଲା ପଢ଼ିଲେ, ଜନଗଣନାରେ ବ୍ୟସ୍ତତା ପାଇଁ ଶିକ୍ଷକମାନେ ସ୍କୁଲରେ ଅନୁପସ୍ଥିତ ରହନ୍ତେ ନାହିଁ କିମ୍ବା ଶିକ୍ଷକମାନଙ୍କୁ ସାମାଜିକ କର୍ମୀ କରି ଦେବାକୁ କେହି ସାହସ କରନ୍ତେନି। ଶିକ୍ଷା ସଚିବଙ୍କ ପିଲା ସରକାରୀ ସ୍କୁଲକୁ ପଢ଼ିବାକୁ ଆସିଲେ, ବିଦ୍ୟାଳୟରେ ଶିକ୍ଷକଙ୍କର ଅଭାବ ରହନ୍ତାନି। ଏମ୍.ପି. ଏମ୍.ଏଲ୍.ଏ. ଏବଂ ଇଞ୍ଜିନିୟରଙ୍କ ପିଲାଏ ସରକାରୀ ପ୍ରାଥମିକ ସ୍କୁଲରେ ଭର୍ତ୍ତି ହେଲେ, ସ୍କୁଲରେ ଭିତ୍ତିଭୂମିର ଅଭାବ ଅଛି ବୋଲି ଅଭିଯୋଗ ଆସନ୍ତାନି। ସ୍କୁଲ ଶିକ୍ଷାର ଉନ୍ନତି ପାଇଁ ଏଇଟା ହିଁ ଏବେ ଏକମାତ୍ର ବାଟ।

❑❑❑



# ସ୍କୁଲରେ ଶାରୀରିକ ଶାସ୍ତି

**ସା**ନୁ ଖାଁର ବୟସ ଏଗାର ବର୍ଷ । ଷଷ୍ଠ ଶ୍ରେଣୀର ସେ ପଢୁଥିଲା । ଦିନେ ଇଂରାଜୀ ସାର୍‌ଙ୍କ ପ୍ରଶ୍ନର ଉତ୍ତର ସାନୁ ଦେଇପାରିଲାନି । ସାର୍ ରାଗିଲେ । ତାକୁ ସେ ବାହାରକୁ ନେଇଗଲେ । ଦୁଇ କାନ୍ଧରେ ତାର ଦୁଇଟି ଇଟା ରଖିଲେ । ଖରାରେ ତାକୁ ଦୁଇ ଘଣ୍ଟା ଛିଡା କରାଇଲେ । ସାନୁ ଖରା ତାତି ସହି ନପାରି ଅଚେତ ହୋଇଗଲା । ଚବିଶ ଘଣ୍ଟା ଧରି ତାର ଚେତା ଫେରିଲାନି । ଗୋଟିଏ ଦିନ ପରେ କଅଁଳ ଝିଅ ସାନୁ ଖାଁର ମୃତ୍ୟୁ ହୋଇଗଲା ।

ସାନୁ ଆଇଏଏସ୍ ହେବାକୁ ସ୍ୱପ୍ନ ଦେଖିଥିଲା । ସେ ସ୍ୱପ୍ନ ତାର ପୂରଣ ହୋଇପାରିଲାନି । ସାନୁର ମୃତ୍ୟୁ ହେବା ବେଳେ ପାଖରେ ତାର ମା ବସି କାନ୍ଦୁ ଥିଲେ । ହତବାକ୍ ବାପା କଥା କହି ପାରୁ ନଥିଲେ । ଶିକ୍ଷା ବିଭାଗରେ ପଦାଧିକାରୀମାନେ କାର୍ଯ୍ୟାନୁଷ୍ଠାନ ହେବ ବୋଲି ପ୍ରତିଶ୍ରୁତି ଦେଉଥିଲେ ଏବଂ ଗଣମାଧ୍ୟମ ଏପରି ଘଟଣାକୁ ନିନ୍ଦାକରି କିଛି ଦିନ ପରେ ଚୁପ୍ ହୋଇଯାଇଥିଲେ ।

ଅସଂଖ୍ୟ ସାନୁମାନେ ସ୍କୁଲରେ ଏମିତି ତାଙ୍କ ଶିକ୍ଷକମାନଙ୍କ ଠାରୁ ମାଡ ଖାଆନ୍ତି । କାହାର କାନ ଫାଟେ ତ ଆଖି ଫୁଟେ । ଭାରତର ପ୍ରତି ବିଦ୍ୟାଳୟରେ ପିଲାଙ୍କ ପ୍ରତି ଶାରୀରିକ ଶାସ୍ତି ଏବେ ଏକ ନିତିଦିନିଆ ଘଟଣା ଯଦିଓ ସରକାରୀ ଭାବେ ସମସ୍ତ ଶିକ୍ଷାନୁଷ୍ଠାନକୁ ଦଣ୍ଡମୁକ୍ତ ଅଂଚଳ ଭାବେ ଘୋଷଣା କରାଯାଇଛି ।

ଏଇ କିଛି ଦିନ ତଳେ ଭାରତର ମାନ୍ୟବର ଉଚ୍ଚତମ ନ୍ୟାୟାଳୟ ଗୁଜୁରାଟର ଜଣେ ପ୍ରଧାନ ଶିକ୍ଷକଙ୍କ ଆବେଦନକୁ ଖାରଜ କରି ଏକ ଐତିହାସିକ ରାୟ ଦେଇଛନ୍ତି । ରାୟରେ ଅଛି ବିଦ୍ୟାଳୟରେ ପିଲାଙ୍କୁ ବାଡେଇବା, ଅପମାନିତ କରିବା ଏବଂ ଶାରୀରିକ ଯନ୍ତ୍ରଣା ଦେବା ଏକ ଧର୍ତ୍ତବ୍ୟ ଅପରାଧ । ଏପରି ଅପରାଧ ପ୍ରତି ଭାରତର ସିଭିଲ ସମାଜ କୋହଳ ହେବା ବି ଉଚିତ ନୁହେଁ ।

ସଂପୃକ୍ତ ପ୍ରଧାନ ଶିକ୍ଷକ ସଂପ୍ରତି ଆଜୀବନ କାରାଦଣ୍ଡ ଭୋଗୁଛନ୍ତି । ସେ ତାଙ୍କ ଦଣ୍ଡ କୋହଳ କରିବାକୁ ମାନ୍ୟବର ସୁପ୍ରିମକୋର୍ଟ ଯାଇଥିଲେ । ପ୍ରଧାନ ଶିକ୍ଷକଙ୍କ

ଅପରାଧ ଥିଲା, ସେ ସ୍କୁଲରେ ଜଣେ ଦଳିତ ପିଲାକୁ ତାଗିଦ୍ କରିବାକୁ ଯାଇ ମାଡ ଦେବାବେଳେ ପିଲାର ମୃତ୍ୟୁ ହୋଇଥିଲା । ଛାତ୍ରଟି ସାର୍‌ଙ୍କ ସ୍କୁଟରରେ ଖେଳି ତାକୁ ମଇଳା କରୁଥିଲା ।

ପ୍ରଧାନ ଶିକ୍ଷକ ତାଙ୍କ ଦଣ୍ଡ କୋହଳ ପାଇଁ ମାନ୍ୟବର କୋର୍ଟଙ୍କ ପାଖରେ ତାଙ୍କ ଆବେଦନ ପତ୍ରରେ ଯାହା ଉଲ୍ଲେଖ କରିଥିଲେ ତାହା ହିଁ ଏଠି ପ୍ରଣିଧାନଯୋଗ୍ୟ । ସେ ଶିକ୍ଷକଙ୍କ ଯୁକ୍ତି ଥିଲା, ପିଲାଙ୍କୁ ଶାସ୍ତି ଦେବା ଶିକ୍ଷକମାନଙ୍କ ଏକ ନୈତିକ କର୍ତ୍ତବ୍ୟ । ବର୍ବର ପରି ଏହା ଦିଶୁଥିଲେ ବି ଏହା ପବିତ୍ର । ବିଶୃଙ୍ଖଳିତ ପିଲାଙ୍କୁ ନିୟନ୍ତ୍ରଣରେ ଆଣିବାକୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ବେଳେବେଳେ ଟିକିଏ କଠୋର ହେବାକୁ ବାଧ ହୋଇଥାଆନ୍ତି । ଏହା ବିଦ୍ୟାଳୟରେ ଶୃଙ୍ଖଳା ରକ୍ଷାର ଏକ ଅଂଶ ଯାହା ସେ ପିଲାଟି ପ୍ରତି କରିବାକୁ ଗଲାବେଳେ ସ୍କୁଲରେ ଦୁର୍ଘଟଣାଟିଏ ଘଟିଗଲା ।

ମାନ୍ୟବର କୋର୍ଟ କିନ୍ତୁ ଶିକ୍ଷକଙ୍କର ଯୁକ୍ତିକୁ ଗ୍ରହଣ କଲେନାହିଁ । ବରଂ କଡା ଶବ୍ଦରେ ଶୁଣାଇଦେଲେ, ପାଠପଢା ଆଳରେ ପିଲାଙ୍କୁ ବାଡେଇବା, ଅପମାନିତ କରିବା ଏସବୁ ମଧ୍ୟଯୁଗୀୟ ବ୍ୟବସ୍ଥା । ଏଥିରେ ସାମନ୍ତବାଦୀ ଚିନ୍ତାଧାରାଟି ରହିଛି । ସବୁ ସ୍କୁଲରେ ଏହା ନିଷେଧ ହେବା ଦରକାର । ଏ କାମ ଉଭୟ ରାଜ୍ୟ ତଥା କେନ୍ଦ୍ର ସରକାରଙ୍କର ।

ପାଠପଢାରେ ଉନ୍ନତି ନାଁରେ ପିଲାଙ୍କୁ ଲଙ୍ଗଳାକରି ପିଟିବା, ମୁଣ୍ଡବାଳ ଧରି ଝିଙ୍କିବା ଭାରତର ବିଦ୍ୟାଳୟ ମାନଙ୍କରେ କାହିଁ କେଉଁ କାଳରୁ ରହିଛି । ପୁରାତନ ଯୁଗର ଏ ଶାସ୍ତି ବ୍ୟବସ୍ଥା ବର୍ତ୍ତମାନର ଏକବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବି ଗଡି ଆସିଲାଣି । କେତେବେଳେ କାଁ ଭାଁ କେମିତି ଗଣମାଧ୍ୟମ ଏବଂ ଅଭିଭାବକଙ୍କର ଚାପ ପଡିଲେ ସଂପୃକ୍ତ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବାର ଖବର ଆସେ ।

'ପାଥେର ପାଞ୍ଚାଳି' ସିନେମାରେ ଗୁରୁ ମାସ୍‌ଏ ପାଠଶାଳାରେ ଏକ ଦୃଶ୍ୟ ଥିଲା । ଗୁରୁଙ୍କ ଶିକ୍ଷା ଉପକରଣ ସହ ବେତଟିଏ ବି ରହୁଥିଲା । ଶିକ୍ଷକଙ୍କର ବେତ ନଥିଲେ ପାଠପଢା ସଂପୂର୍ଣ୍ଣ ହେଉନଥିଲା । 'ପାଥେର ପାଞ୍ଚାଳି'ର ଏ ସ୍କୁଲ ଦୃଶ୍ୟ ପୂର୍ବେ ଭାରତର ପ୍ରତି ସ୍କୁଲରେ ଦେଖିବାକୁ ମିଳୁଥିଲା । ଏବେ ଏହା କମି ଯାଇଥିଲେ ବି ବେତର ଭୟ ରହିଛି ।

ସ୍କୁଲମାନଙ୍କରେ ପିଲାଙ୍କୁ ଶାରୀରିକ ଶାସ୍ତି ଦେବା ଉପରେ ଗତ ଦୁଇ ଦଶନ୍ଧି

ଧରି ସର୍ବେକ୍ଷଣମାନ ହୋଇ ଆସୁଛି । ଏ ସର୍ବେକ୍ଷଣରେ ରହିଛି, ଗ୍ରାମାଞ୍ଚଳର ପ୍ରତି ସ୍କୁଲରେ ୬୦ ପ୍ରତିଶତରୁ ୯୦ ପ୍ରତିଶତ ପିଲାଙ୍କୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ଶାରୀରିକ ଶାସ୍ତି ଦିଅନ୍ତି । ଅଭିଭାବକମାନେ ଏପରି ଶାସ୍ତି ଦେବାକୁ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ଅନୁମତି ବି ଦେଇଥାଆନ୍ତି । ସହରୀ ବିଦ୍ୟାଳୟମାନଙ୍କରେ କିନ୍ତୁ ପିଲାମାନଙ୍କୁ ମାଡ ଦେବା ଘଟଣା ତୁଳନାତ୍ମକ ଭାବେ କମ୍ ।

ପିଲାଙ୍କୁ ଶାରୀରିକ ଶାସ୍ତି ଯେ କେବଳ ଗ୍ରାମାଞ୍ଚଳ ସରକାରୀ ସ୍କୁଲର ମନୋପଲି ବା ଏକଚାଟିଆ ଘଟଣା, ଏହା ବି ସତ ନୁହେଁ । ଅନେକ ଆଧୁନିକ ଘରୋଇ ସ୍କୁଲରେ ବି ଛୋଟ ଛୋଟ ପିଲାଙ୍କୁ ଦଣ୍ଡ ଦେବା ଘଟଣା ଖବରରେ ଆସେ । ପିଲାଙ୍କ ପାଠପଢା ପାଇଁ ଏଠି ଉତ୍ତମ ଶିକ୍ଷା ଉପକରଣ, କମ୍ପ୍ୟୁଟର, ଉଚ୍ଚଶିକ୍ଷିତ ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଭୂକମ୍ପ ନିରୋଧକ ସ୍କୁଲ କୋଠାଘର ଥାଇବି ପିଲାଙ୍କ ପ୍ରତି ମାଡ ଘଟଣା ତେଣୁ ଏକ ବିଡମ୍ବନା ହୋଇପାରେ ।

ଭାରତର ଶିକ୍ଷାଦାନ ବ୍ୟବସ୍ଥା ଗୁରୁକୁଳ ଆଶ୍ରମ ବ୍ୟବସ୍ଥାରୁ ଆରମ୍ଭ ହୋଇଛି । ଗୁରୁ ଶିଷ୍ୟର ପରମ୍ପରା, ସଂପର୍କ ପାରସ୍ପରିକ ବିଶ୍ୱାସ ତଥା ସମ୍ମାନକୁ ଆଧାର କରି ଶିକ୍ଷା ଦାନ ହେଉଥିଲା ଏବଂ ଶିକ୍ଷାପ୍ରାପ୍ତି ବେଳେ ଗୁରୁ ସେବାକୁ ବ୍ରତ କରି ଶିଷ୍ୟମାନେ ଗୁରୁଙ୍କ ପାଖରେ ଏକ ଉତ୍ସର୍ଗୀକୃତ ଆତ୍ମସମର୍ପଣ କରୁଥିଲେ । ଉଭୟ ଗୁରୁ ଏବଂ ଶିଷ୍ୟ ଶିକ୍ଷାଦାନ ବ୍ୟବସ୍ଥାରେ ଖୁସି ଥିଲେ । ମୁଣ୍ଡବାଳକୁ ଝିଙ୍କି ଆଣି ଶିଷ୍ୟକୁ ବାଡେଇବା କିମ୍ବା ପିନ୍‌ରେ ଛାତ୍ରର ଆଖି ଫୁଟାଇଦେବା ଗୁରୁଙ୍କ ପାଇଁ ସେତେ ଆବଶ୍ୟକ ପଡୁନଥିଲା । ଏବେ କିନ୍ତୁ ଏ ପରିବର୍ତ୍ତନ କାହିଁକି ? ବର୍ବରତା କହି ଅସଂଖ୍ୟ ସ୍କୁଲମାନଙ୍କରେ ଶିଷ୍ୟ ଏବଂ ଗୁରୁଙ୍କ ଭିତରେ ଏ ଅଘଟଣ ଘଟୁଛି କାହିଁକି ? ଏପରି ପ୍ରଶ୍ନ କଲେ କିଛି ଶିକ୍ଷକ ପ୍ରତିନିଧି ସଫେଇ ଦେଇ କହନ୍ତି, ବିଦ୍ୟାଳୟ ମାନଙ୍କରେ ଶିକ୍ଷକମାନଙ୍କ କାମ ଏବେ ବଢିଯାଇଛି । ଏମାନଙ୍କ ଉପରେ ସାମାଜିକ ଚାପ ବଢିଛି । ବିଦ୍ୟାଳୟରେ ପରୀକ୍ଷାରେ ଭଲ ଫଳ ନହେଲେ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଚାକିରି ଯିବାର ଭୟ ରହିଛି ଏବଂ ସବୁଠାରୁ ବଡ କଥା ହେଲା ଏବେ ବିଦ୍ୟାଳୟରେ ଦୁଷ୍ଟ ପିଲାଙ୍କ ସଂଖ୍ୟା ବେଶି । ଟିଭି, ସିନେମା ଆଲବମ୍, ଭିଡିଓ ଗେମ୍ ଦେଖି କିପରି ଜଣେ ଅନ୍ୟ ଜଣକୁ ଆକ୍ରମଣ କରିପାରିବ ସେକଥା ପିଲାଏ ଘରୁ ଶିଖି ସ୍କୁଲରେ ସାଙ୍ଗ ପିଲାଙ୍କ ଉପରେ ପ୍ରୟୋଗ କରୁଛନ୍ତି । ଏ ସବୁରେ ଦୁଷ୍ଟ ପିଲାକୁ ଶୃଙ୍ଖଳିତ କରିବା ବି ଶିକ୍ଷକଙ୍କର ଦାୟିତ୍ୱ ।

ବେଳେବେଳେ ବିଶୃଙ୍ଖଳିତ ପିଲାଙ୍କୁ ନିୟନ୍ତ୍ରିତ କରିବାକୁ ଯାଇ କିଛି ଅଘଟଣ ଘଟୁଛି । ଏହା ଏକ ବ୍ୟତିକ୍ରମ । କିଛି ବ୍ୟତିକ୍ରମକୁ ନିୟମ କହିବା ଶିକ୍ଷକ ସମାଜ ପ୍ରତି ଅବିଚାର ହେଉଛି ବୋଲି ଶିକ୍ଷକ ସମାଜରୁ ସଫେଇ ଆସେ ।

ଏପରି ତର୍କ ବି ସମାଜ ତତ୍ତ୍ୱବିତ୍ 'ମାଇକେଲ ଫକଲ' ସାହେବ ଦିଅନ୍ତି । ତାଙ୍କ ରଚିତ ପ୍ରବନ୍ଧ ଇଂଡିସିପ୍ଲିନ୍ ଆଣ୍ଡ ପନିଶମେଣ୍ଟରେ ଫକଲଙ୍କ ସ୍ପଷ୍ଟ ମତ ହେଲା, ସାମାଜିକ ଶୃଙ୍ଖଳା ପାଇଁ ଦଣ୍ଡ ବ୍ୟବସ୍ଥା ଜରୁରୀ । ସ୍କୁଲ ତ ବୃହତ ସାମାଜିକ ବ୍ୟବସ୍ଥାର ଏକ ସୂକ୍ଷ୍ମ ଅଂଶ,'ଏକ ସୋସିଆଲ ମାଇକ୍ରୋଜମ୍' । ସ୍କୁଲ ବ୍ୟବସ୍ଥା ଏଥିରୁ ବାଦ ଯିବ କିପରି ?

ହଁ ପାଠକ ବନ୍ଧୁ, ଏପରି ଯୁକ୍ତିରେ କିଛି ବିତର୍କର ପ୍ରଶ୍ନ ରହିଛି । ତଥାପି ଏହା ସତ ଯେ ସ୍କୁଲରେ ପିଲାଙ୍କୁ ଜାଣିଜାଣି ଶାସ୍ତି ଦେବା ଭାରତରେ ଏକ ସଂବେଦନଶୀଳ ପ୍ରଶ୍ନ । ଏଥିରେ କେତେକ ସମାଜ ଶାସ୍ତ୍ରୀୟ ଏବଂ ମନସ୍ତାତ୍ତ୍ୱିକ କାରଣ ଅନ୍ତର୍ଭୁକ୍ତ । ସମାଜଶାସ୍ତ୍ରୀୟ କାରଣରେ ରହିଛି, ସାଧାରଣତଃ ଭାରତରେ ବିଶେଷକରି ଗ୍ରାମାଞ୍ଚଳ ପିଲାମାନେ ଟିକିଏ ମାନ୍ଦା । ଟିକିଏ ଧୀର । ବୁଦ୍ଧିମତା ଏମାନଙ୍କର ସେତେ ପ୍ରଖର ବି ନୁହେଁ । ଏଥିପାଇଁ ଏଠି ଥିବା ସାମାଜିକ ବ୍ୟବସ୍ଥା ଦାୟୀ । ଅନେକ ପରିବାରରେ ପାଠପଢାର ପରିବେଶ ନଥାଏ । ଶିକ୍ଷିତ ଅଭିଭାବକଙ୍କ ସଂଖ୍ୟା କମ୍ । ପାଠପଢାରେ ତେଣୁ ପିଲାଟି ମାନ୍ଦା ହେବା ସ୍ୱାଭାବିକ ଏବଂ ପରିତାପର ବିଷୟ ହେଲା ସ୍କୁଲରେ ଶିକ୍ଷକମାନେ ପିଲାଙ୍କର ଦକ୍ଷତା ବୁଝିବାକୁ ଚେଷ୍ଟା କରନ୍ତି ନାହିଁ କିମ୍ବା ବୁଝି ପାରନ୍ତି ନାହିଁ । ଶିକ୍ଷାର ଉନ୍ନତି ଆଳରେ ଶିକ୍ଷକମାନେ ଅସହିଷ୍ଣୁ ହୋଇଯାଆନ୍ତି ଏବଂ ପିଲାଙ୍କୁ ଶାରୀରିକ ଶାସ୍ତି ଦିଅନ୍ତି ।

ଦ୍ୱିତୀୟ ସମାଜଶାସ୍ତ୍ରୀୟ କାରଣଟି କିନ୍ତୁ ଅତି ଜଘନ୍ୟ । ଏ କାରଣର ପ୍ରବକ୍ତାମାନେ କହନ୍ତି, ସ୍କୁଲ ମାନଙ୍କରେ ଏବେ ବି ଲିଙ୍ଗ, ଜାତି ଏବଂ ଶ୍ରେଣୀର ବିଭେଦ ରହିଛି । ଶିକ୍ଷକମାନେ ଧନୀ ଏବଂ ଉଚ୍ଚ ଜାତିର ପିଲାଙ୍କ ଅପେକ୍ଷା ଗରିବ ଏବଂ ଦଳିତ ପିଲାଙ୍କୁ ବେଶି ବାଡାନ୍ତି ଏବଂ ଝିଅ ପିଲା ଅପେକ୍ଷା ପୁଅ ପିଲା ବେଶି ମାଡ ଖାଆନ୍ତି ।

ଏ ହେଲା ବିଦ୍ୟାଳୟରେ ଶାରୀରିକ ଶାସ୍ତିର ସାମାଜିକ କାରଣ । ମନସ୍ତାତ୍ତ୍ୱିକ କାରଣରେ କିଛି ଭିନ୍ନ କଥା ଆସେ । ଏଥିରେ ଥାଏ, ଭାରତରେ ସାମାଜିକ ବ୍ୟବସ୍ଥାରେ

ଯେଉଁ ପରିବର୍ତ୍ତନ ଆସିଛି, ଏହା ମନସ୍ତାତ୍ତ୍ୱିକ ଭାବେ ବି ପିଲାଙ୍କୁ ପ୍ରଭାବିତ କରିଛି । ନିଜ ପସନ୍ଦର କାମ କରିବାକୁ ପିଲାଏ ଏବେ ଅଧିକାର ବୋଲି ଭାବନ୍ତି ଏବଂ ଦୁଷ୍ଟାମିକୁ ଗଣତାନ୍ତ୍ରିକ ଅଧିକାରର ରୂପ ଦିଅନ୍ତି । ନିଜ ଆଗରେ ଦୁଇଟି ପିଲାଙ୍କର ପରସ୍ପର ପ୍ରତି ଦୈହିକ ଆକ୍ରମଣକୁ ଦେଖି ଶିକ୍ଷକଟିଏ ପ୍ରତିକ୍ରିୟାଶୀଳ ହେଉଛି ବୋଲି ଏହା ମନସ୍ତତ୍ତ୍ୱବିତ୍‌ଙ୍କ ମତ ।

ବିଦ୍ୟାଳୟରେ ପିଲାଙ୍କୁ ଦୈହିକ ଦଣ୍ଡ ଦେବାର ସାମାଜିକ ତଥା ମନସ୍ତାତ୍ତ୍ୱିକ କାରଣ ଯାହା ହେଉନା କାହିଁକି ଏ ବ୍ୟବସ୍ଥା ଏକ ପୁରାତନ ବର୍ବର ବ୍ୟବସ୍ଥା ।

ଏଥିନେଇ ଉପାୟ ଚିନ୍ତା ହେବା ଦରକାର । ଏକ ସକରାତ୍ମକ ବିକଳ୍ପ ଦଣ୍ଡ ଉପାୟ ପୃଥିବୀ ସାରା ଏବେ ଖୋଜା ଚାଲିଛି ।

ବିକଳ୍ପ ଦଣ୍ଡ ବ୍ୟବସ୍ଥା ଖୋଜିବା ଅବଶ୍ୟ ଏହା ଏକ ଦୀର୍ଘକାଳୀନ କଥା । ତେବେ କେରଳରେ ଇଡୁକି ଜିଲ୍ଲାର ଗୋଟିଏ ସଂପ୍ରଦାୟର ପ୍ରତ୍ୟେକ ସଭ୍ୟ ବିଦ୍ୟାଳୟରେ ପିଲାଙ୍କ ପ୍ରତି ଶାରୀରିକ ଦଣ୍ଡର ସଂପୂର୍ଣ୍ଣ ଅବସାନ ପାଇଁ ଏବେ ଆନ୍ଦୋଳନ ଆରମ୍ଭ କରି ଦେଇଛନ୍ତି । ବର୍ଷକ ଭିତରେ ଏ ବ୍ୟବସ୍ଥା ଉଚ୍ଛେଦକରି ଦେବେ ବୋଲି ସେମାନେ ଶପଥ ନେଇଛନ୍ତି ।

ବାସ୍ତବରେ ସ୍କୁଲରେ ଶାରୀରିକ ଦଣ୍ଡ ବ୍ୟବସ୍ଥା ବିରୋଧରେ ଏହା ଚମତ୍କାର ସାମାଜିକ ଉଦ୍ୟମ । ଭାରତୀୟ ସମାଜ ଏବଂ ପରମ୍ପରା ଶିକ୍ଷକମାନଙ୍କୁ ସ୍କୁଲରେ ପିଲାଙ୍କୁ ମାଡ ଦେବା ପାଇଁ ଏକ ପବିତ୍ର କ୍ଷମତା ଦେଇଛି ବୋଲି କହି ବୁଲିବା ଆଉ କେତେଦିନ ଚାଲିବ ? ଇଏତ ଏକ ରକ୍ଷଣଶୀଳ ଚିନ୍ତା । ଏହା ତେଣୁ ବନ୍ଦ ହେବା ଦରକାର । ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଇଁ ଏହା ଏକ ବଡ ଆହ୍ୱାନ ।



# ଭିଆଇପି ସଂସ୍କୃତି

ଆଜିର ଏ ଆଲୋଚନା ଦୁଇଟି ଛୋଟ ଖବରକୁ ନେଇ ଆରମ୍ଭ କରାଯାଇପାରେ । ଖବର ଛୋଟ ହେଲେ ବି ସାଂପ୍ରତିକ ଭାରତୀୟ ସମାଜରେ ଅଭ୍ୟୁଦୟ ହୋଇଥିବା ନୂଆ ଏକ ସଂସ୍କୃତି ସହ ଏହାର ପ୍ରାସଙ୍ଗିକତା ଅଛି ।

ପ୍ରଥମ ଖବରଟି ହେଲା - କୌଣସି ଏକ ପୁସ୍ତକ ଉନ୍ମୋଚନ ଉତ୍ସବକୁ ଜଣେ ପ୍ରତିଷ୍ଠିତ ମନ୍ତ୍ରୀ ଆସିଥିଲେ । ମନ୍ତ୍ରୀଙ୍କ ସହ ପାଇଲଟିଂ କରୁଥିବା ନିରାପତ୍ତା ରକ୍ଷୀ ଏବଂ ଦୁଇଟି ପୋଲିସ୍ ଭ୍ୟାନ୍ ଥିଲା ।

ପାଇଲଟ୍ ଗାଡି ଏତେ ଜୋର୍‌ରେ ସେ ଦିନ ଆସିଥିଲା ଯେ ଏହା ନିୟନ୍ତ୍ରଣ ହରାଇ ସଭାସ୍ଥଳରେ ଏକ ଛୋଟ ପିଲାକୁ ଧକ୍କା କଲା ଏବଂ ପିଲାଟି ଗୁରୁତରଭାବେ ଆହତ ହୋଇଥିଲା ।

ଏବଂ ଦ୍ୱିତୀୟ ଖବରଟି ଠିକ୍ ଏମିତି - ସ୍ଥାନୀୟ ଏକ ମହାବିଦ୍ୟାଳୟରେ ଇତିହାସ ବିଭାଗ ଦ୍ୱାରା ଅନୁଷ୍ଠିତ ହେଉଥିବା ଇତିହାସ ସେମିନାରକୁ ଜଣେ ବିଧାୟକ ମୁଖ୍ୟ ଅତିଥି ଭାବେ ଆସିଥିଲେ । ବିଧାୟକ ସେଠି ଓଡିଆରେ ବଡ ପାଟିରେ କହିଲେ । ଠିକ୍ ଯେପରି ନିର୍ବାଚନ ପ୍ରଚାର ହୁଏ । ଇତିହାସ ଏବଂ ସଂସ୍କୃତି ସହ ସେ କଥାର କିଛି ସାମଞ୍ଜସ୍ୟ ନଥିଲା ଏବଂ ଭାଷଣ ଶେଷ କଲା ବେଳେ ବିଧାୟକଙ୍କ ମନ୍ତବ୍ୟ ଥିଲା - ଆଜି ଏତିକି ଥାଉ, ଇତି..... ।

ଇତିହାସ ସେମିନାରରେ ସେଦିନ ପ୍ରାୟ ଶହେ ଅଧ୍ୟାପକ, ଅଧ୍ୟାପିକା ଏବଂ ଏକ ହଜାରରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଉପସ୍ଥିତ ଥିଲେ ।

ଏଇଠି ପ୍ରଶ୍ନ ଆସୁଛି, ଛୋଟ ଏକ ପୁସ୍ତକ ଉନ୍ମୋଚନ ଉତ୍ସବକୁ ଆସୁଥିବା ଅତିଥିଙ୍କର ସୁରକ୍ଷା ପାଇଁ ଯଦି ଏତେ ନିରାପତ୍ତା ରକ୍ଷୀ ଦରକାର, ସେ ଏ ଉତ୍ସବକୁ ଆସୁଛନ୍ତି କାହିଁକି ? ଏବଂ ଇତିହାସ ସେମିନାରରେ ସେତେ ଉଚ୍ଚଶିକ୍ଷିତ ହୋଇନଥିବା ବିଧାୟକଙ୍କ ଆବଶ୍ୟକତା କ'ଣ ?

ଉତ୍ତର ହେଲା – ଏମାନେ ସମାଜର ପ୍ରତିଷ୍ଠିତ ବ୍ୟକ୍ତି. ଭିଆଇପି । ଭାରତୀୟ ସମାଜରେ ଏମାନଙ୍କ ସ୍ଥାନ ସ୍ୱତନ୍ତ୍ର । ଏମାନେ ଏକ ପୃଥକ୍ ଗୋଷ୍ଠୀ । ର୍‍ୟାଙ୍କ୍ ଏବଂ ଗ୍ରେଡରେ ଏମାନେ ଅଲଗା ଏବଂ ଏମାନଙ୍କୁ ନେଇ ଏବେ ସଂସ୍କୃତିଟିଏ ଗଢି ଉଠିଛି, ନାଁ ତା'ର ଭିଆଇପି ସଂସ୍କୃତି । ଡିଗ୍ନୀଟାରୀ ବା ଭିଆଇପି କଲ୍‌ଚର ପଦବୀ ବା ଷ୍ଟାଟସ୍‌କୁ ନେଇ ରାଷ୍ଟ୍ରର ଅନୁମୋଦନ କ୍ରମେ ସୁବିଧା ଏବଂ ମର୍ଯ୍ୟାଦା ଉପଭୋଗ କରୁଥିବା ବ୍ୟକ୍ତିଙ୍କୁ ଆଧାର କରି ଏଇ ସଂସ୍କୃତି ପୁଷ୍ଟ ଏବଂ ବଳିଷ୍ଠ ହୋଇଥାଏ ।

ସାମାଜିକ ପଦବୀ ଦୁଇ ପ୍ରକାର । ପ୍ରଥମଟି ହେଉଛି, ଯାହା ବ୍ୟକ୍ତିଗତ ପରାକାଷ୍ଠାରେ ହାସଲ କରାଯାଏ । ଏହା ଆଚିଭଡ୍ ଷ୍ଟାଟସ୍ । ସାମାଜିକ ସ୍ତରରେ କ୍ଷମତା ଏବଂ ଅଥରିଟିକୁ ଜାହିର କରିବାକୁ ରାଷ୍ଟ୍ର ଯେଉଁ ଢାଞ୍ଚା ତିଆରି କିରିଛି ଏଥିରେ ଏମାନଙ୍କର ଭୂମିକା ବେଶି । ରାଜନୀତି, ସଂସ୍କୃତି, ଶାସନ, ନ୍ୟାୟ ପ୍ରଦାନ ବ୍ୟବସ୍ଥାକୁ ଏମାନେ ଚଳାନ୍ତି ଏବଂ ନିୟନ୍ତ୍ରଣ କରନ୍ତି । ମନ୍ତ୍ରୀ, ପ୍ରଶାସକ, ବିଚାରପତି, ପ୍ରଫେସର ସବୁ ଏଇ ଗୋଷ୍ଠୀର ।

ଅନ୍ୟ ପଦବୀଟି ହେଉଛି, ଯାହା ଉତ୍ତରାଧିକାରୀ ସୂତ୍ରରେ ଅଣାଯାଏ । ଜନ୍ମ ଏବଂ ପାରିବାରିକ ପୃଷ୍ଠଭୂମି ଏଇ ପଦବୀର ମୂଳ ପିଣ୍ଡ । ଏହା ଇନହେରିଟେଡ୍ ଷ୍ଟାଟସ୍ ।

ସାଂପ୍ରତିକ ଭାରତୀୟ ସମାଜରେ ଏଇ ଦୁଇ ଗୋଷ୍ଠୀ ପଦବୀଧାରୀ ବ୍ୟକ୍ତି ହେଉଛନ୍ତି ଭିଆଇପି । ପ୍ରତିଷ୍ଠିତ ବ୍ୟକ୍ତିତ୍ୱ । ଅନ୍ୟ କଥାରେ ଡିଗ୍ନିଟାରୀ । ସାମାଜିକ ସ୍ତରର ଏମାନେ ହେଉଛନ୍ତି ପ୍ରତୀକ । ଏଠି ସମସ୍ତେ ସମାନ ବୋଲି କୁହାଯାଉଥିଲେ ବି ଏମାନେ କିନ୍ତୁ ପ୍ରକୃତରେ ସମାନ ନୁହନ୍ତି । ବିଶିଷ୍ଟ ରାଜନୀତି ବିଜ୍ଞାନ ଦାର୍ଶନିକ ଏ.ମ.ମାକାଇଭରଙ୍କ ଭାଷାରେ ଏମାନେ ମୋର୍ ଇକ୍ୱାଲ୍ସ । ସୁତରାଂ ଏମାନଙ୍କ ଆଚାର ଏବଂ ବ୍ୟବହାରକୁ ନେଇ ଗଢି ଉଠିଥିବା ସଂସ୍କୃତି ସାଧାରଣ ସଂସ୍କୃତି ଠାରୁ ପୃଥକ୍ ହେବା ସ୍ୱାଭାବିକ ।

ଭାରତୀୟ ଭିଆଇପି ସଂସ୍କୃତିର ସ୍ଥିତି ପ୍ରଥମେ ବ୍ରିଟିଶ ସାମ୍ରାଜ୍ୟରେ ଉପଲବ୍ଧ ହୋଇଥିଲା । ରାଷ୍ଟ୍ର ତଥା ଆଇନ ସମ୍ମତ କ୍ଷମତା ଏବଂ ଅଥରିଟିକୁ ଆଧାର କରି କିଛି ବ୍ୟକ୍ତି ସେତେବେଳେ ସମାଜରେ ସ୍ୱତନ୍ତ୍ର ଏକ ଗୋଷ୍ଠୀର ପ୍ରତିନିଧି ବୋଲି ପରିଚୟ ଦେଉଥିଲେ ଏବଂ ଅଧିକ ସାମାଜିକ ସମ୍ମାନ ପାଇଁ ଦାବି କରୁଥିଲେ ।

ବାପୁଜୀ କିନ୍ତୁ ଥିଲେ ଏହି ଭିଆଇପି ସଂସ୍କୃତିର ବିରୋଧୀ । ପରିବର୍ତ୍ତେ ସେ ଏକ ନୂଆ ସାଧାରଣ ଲୋକ ସଂସ୍କୃତିର କଥା କହୁଥିଲେ । ସେ ସଂସ୍କୃତି ହେଲା ଯେଉଁଠି ଧନୀ ଦରିଦ୍ରର ବାଛ ବିଚାର ନ ଥିବ; ସାମାଜିକ ପଦବୀ ନେଇ ନୂଆ ଶ୍ରେଣୀ ସୃଷ୍ଟି ହେଉନଥିବ ଏବଂ ରାଷ୍ଟ୍ର ପ୍ରଦତ୍ତ କ୍ଷମତାକୁ ଆଧାର କରି ଆତ୍ମାଭିମାନ ନଥିବ । ଗାନ୍ଧିଜୀ କିନ୍ତୁ ଏଥିରେ ସଫଳ ହେଲେନି । ଇଂରେଜମାନେ ଚାଲିଗଲା ପରେ ଭିଆଇପି ସଂସ୍କୃତି ଏଠି ଏବେ ତିଷ୍ଠି ରହିଛି ଏବଂ ଏହାର ବିସ୍ତାର ମଧ୍ୟ ହୋଇଛି ।

ଭାରତରେ ଭିଆଇପି ସଂସ୍କୃତିର ସ୍ଥିତି ଏବଂ ବୃଦ୍ଧି ପାଇଁ ତିନୋଟି ଗୋଷ୍ଠୀର ଅବଦାନ ରହୁଛି । ପ୍ରଥମଟି ହେଉଛି, ଭିଆଇପି ଷ୍ଟାଟସ୍‌ରେ ଥିବା ବ୍ୟକ୍ତିମାନେ ନିଜେ । ଦ୍ୱିତୀୟ ଗୋଷ୍ଠୀ ହେଲେ, ସାଧାରଣ ଜନତା ଏବଂ ତୃତୀୟ ଗୋଷ୍ଠୀ ହେଉଛନ୍ତି, ଅନୁଷ୍ଠିତ ହେଉଥିବା ଉତ୍ସବମାନଙ୍କର ସଂଗଠକ ବୃନ୍ଦ ଯେଉଁମାନେ ଉତ୍ସବମାନଙ୍କରେ ଭିଆଇପିମାନଙ୍କ ଉପସ୍ଥିତିକୁ ଏକ ଆଳଙ୍କରିକ ଉପାଦାନ କହି ଭିଆଇପି ସଂସ୍କୃତିକୁ ବାହାବା ଦିଅନ୍ତି ।

ଏହା ସତ, ଗଣତନ୍ତ୍ରର ମାନେ ନୁହେଁ ଯେ ସମାନତା ଆଳରେ ଏଠି ସମାଜରେ ଥିବା ବିଭିନ୍ନ ପଦବୀର ପ୍ରତିଷ୍ଠାକୁ ଧ୍ୱଂସ କରିଦେଇ ସମତଳ କରିଦେବା । ଗଣତାନ୍ତ୍ରିକ ଶାସନ ମଧ୍ୟ ସାମାଜିକ ପ୍ରତିଷ୍ଠାସମ୍ପନ୍ନ ବ୍ୟକ୍ତିଙ୍କୁ ସମ୍ମାନ ଦେବାକୁ ଆଗ୍ରହ ରଖେ । ଏଥିରେ ସାମାଜିକ ସ୍ଥିତି ସୁଦୃଢ଼ ହୁଏ ଏବଂ କ୍ଷମତା ତଥା ପ୍ରଭାବକୁ ନେଇ ତିଆରି ହେଉଥିବା ସାମାଜିକ ସ୍ତର ଅନ୍ୟ କଥାରେ ହାଇଆର୍କି ଚଳଚଞ୍ଚଳ ହୁଏ ।

ବିଚାରପତି, ମନ୍ତ୍ରୀ, ପ୍ରଶାସକ, ବିଧାୟକ, ଅଭିନେତା-ଅଭିନେତ୍ରୀଙ୍କ ପାଇଁ କୌଣସି ଉତ୍ସବରେ ସ୍ୱତନ୍ତ୍ର ଚର୍ଚ୍ଚା ବା ଅଭ୍ୟର୍ଥନା ହେଉ, ଏଥିରେ କାହାରି ଆପତ୍ତି ନାହିଁ । ରହିବା ବି ଉଚିତ ନୁହେଁ । କିନ୍ତୁ ବିଡମ୍ବନା ଯେ, ଭିଆଇପି ସଂସ୍କୃତିର ବାହକ ଏଇ ଭିଆଇପିମାନେ ସାଧାରଣ ଜନତାଙ୍କ ପ୍ରତି ଆଚରଣରେ ସେମାନଙ୍କର ଯେଉଁ ସକାରାତ୍ମକ ମନୋବୃତ୍ତି ଦେଖାଇବା କଥା ତାହା କରନ୍ତି ନାହିଁ ।

ଭିଆଇପିଙ୍କ ଯାତ୍ରା ବେଳେ ଟ୍ରାଫିକ୍ ପରିଚାଳନାରେ ଅବ୍ୟବସ୍ଥା ହୁଏ । ବାଟରେ ଲୋକ ଘଣ୍ଟା ଘଣ୍ଟା ଅଟକନ୍ତି । ଏ ଯାତ୍ରା ଛୋଟ ଏକ ସୋରୁମ୍ ଉଦ୍‌ଘାଟନ ପାଇଁ ବି ହୋଇପାରେ ।

ଉତ୍ସବକୁ ଭିଆଇପିମାନେ ମଧ୍ୟ ବିଳମ୍ବରେ ଆସନ୍ତି । ସଭାସ୍ଥଳ ଛାଡି ଏମାନେ

ଶୀଘ୍ର ଚାଲିଯାଆନ୍ତି । ବିଳମ୍ବରେ ଆସୁଥିବା ଭିଆଇପିଙ୍କ ପାଇଁ ଉପସ୍ଥିତ ଦର୍ଶକଙ୍କୁ ସଭାରେ ଅପେକ୍ଷା କରିବାକୁ ବାଧ୍ୟ କରାଯାଏ । ସଭା କାର୍ଯ୍ୟକ୍ରମରେ ବି ପରିବର୍ତ୍ତନ ଅଣାଯାଏ ।

ଏପରି କରିବା ପଦବୀ ଅଧିକାରୀଙ୍କ ବର୍ତ୍ତମାନ ଏକ ଅଭ୍ୟାସ ହୋଇଗଲାଣି । ଏହାକୁ ସେମାନଙ୍କର ଏକ ଅଧିକାର ବୋଲି ସେମାନେ ଭାବନ୍ତି ଏବଂ ଭାରତୀୟ ସମାଜ ବି ଏହାକୁ ସହ୍ୟ କରେ । କାରଣ ଏହା ଏକ ସାମାଜିକ ସଂସ୍କୃତି ଏବଂ ଏଥିରେ ପଦାଧିକାରୀମାନେ ଜଡିତ ।

ଭିଆଇପି ଜଣକ ବୟସରେ ଯେତେ ଛୋଟ ହେଲେ ବି ଏହାଙ୍କ ପାଇଁ ଦେହରକ୍ଷୀ, ପାଇଲଟ୍ ଏବଂ ସୁରକ୍ଷା ବଳୟ ତିଆରିରେ କିଛି ଅଭାବ ନଥାଏ । କାରଣରେ କୁହାଯାଏ, ପ୍ରତିଷ୍ଠିତ ବ୍ୟକ୍ତିର ସୁରକ୍ଷା ଦାୟିତ୍ୱ ହେଉଛି ରାଷ୍ଟ୍ରର । ଏହା ଜରୁରୀ ବି ଏବଂ ଖାସ୍ ସେଇଥିପାଇଁ ବୋଧେ ଭିଆଇପିଙ୍କ ସୁରକ୍ଷା ଖର୍ଚ୍ଚ ଭାରତରେ ପ୍ରତି ବର୍ଷ ବଢିବାରେ ଲାଗିଛି । ପଦ ତଥା ଷ୍ଟାଟସକୁ ଦେଖି ବି ସୁରକ୍ଷାର ପ୍ରକାରଭେଦ ଏଠି ଅଛି । ଏପରିକି କେତେକ ରେଳ ଷ୍ଟେସନ ଏବଂ ଏୟାର ପୋର୍ଟରେ ଭିଆପିଙ୍କ ଗାଡ଼ି ରହିବା ଏବଂ ବିଶ୍ରାମ ନେବାକୁ ସ୍ୱତନ୍ତ୍ର ସୁବିଧା ରହିଛି ।

ଏବେ ଭିଆଇପି ସଂସ୍କୃତିର ଅନ୍ୟ ଏକ କର୍ତ୍ତା. ସାଧାରଣ ଜନତାଙ୍କ ଭୂମିକା କଥା ଆଲୋଚନାକୁ ଅଣାଯାଇପାରେ ।

କୌଣସି ଏକ ଉତ୍ସବରେ ଭିଆଇପିଙ୍କ ଉପସ୍ଥିତିକୁ ମଧ୍ୟ ସାଧାରଣ ଜନତା ଆଗ୍ରହ ସହ ଚାହାଁନ୍ତି । ପଦ ପଦବୀରେ ଥିବା ବ୍ୟକ୍ତି କୌଣସି ଉତ୍ସବରେ ମୁଖ୍ୟ ଅତିଥି ନହେଲେ ଯେ ଉତ୍ସବ ଅସମ୍ପୂର୍ଣ୍ଣ ଏମିତି ସଫେଇ ଦିଆଯାଏ । କ୍ରୀଡା ପ୍ରତିଯୋଗିତା,ରିଲିଫ୍ କ୍ୟାମ୍ପ, ସଙ୍ଗୀତ ସମାରୋହ, ସାହିତ୍ୟ ତଥା ବୌଦ୍ଧିକ ସମ୍ମିଳନୀ ଏପରିକି ବିବାହ ଉତ୍ସବରେ ଏମାନଙ୍କ ଯୋଗଦାନକୁ ମଧ୍ୟ ସାଧାରଣ ଲୋକେ ଗୌରବ ବୋଲି ଭାବନ୍ତି । ଭିଆଇପିଙ୍କ ଉପସ୍ଥିତି ଉତ୍ସବର କୁଆଡେ ଗ୍ଲାମୋର୍ ବଢାଏ ।

ଏଇଠି ମଧ୍ୟ ପ୍ରଶ୍ନ ଆସେ, କଲେଜ ତଥା ବିଶ୍ୱବିଦ୍ୟାଳୟ ପ୍ରଫେସରମାନେ ସେମାନଙ୍କ ବୌଦ୍ଧିକ ସେମିନାର୍‌ମାନଙ୍କୁ ପ୍ରଶାସକ, ମନ୍ତ୍ରୀ ବିଧାୟକ ଅଭିନେତା ଅଭିନେତ୍ରୀମାନଙ୍କୁ ଡାକନ୍ତି କାହିଁକି ? ଶାସନ ଏବଂ ଏଷ୍ଟାବ୍ଲିସ୍‌ମେଣ୍ଟ ବିରୁଦ୍ଧରେ ଏଇ ପ୍ରଫେସରମାନେ ବହୁତ କଥା କହନ୍ତି ଏବଂ ଲେଖନ୍ତି ବି । ଭିଆଇପି ସଂସ୍କୃତିକୁ

ଏମାନେ ବିରୁଦ୍ଧ କରନ୍ତି । ତଥାପି କିନ୍ତୁ ଉତ୍ସବ ଆଳରେ ଭିଆଇପିଙ୍କୁ ମୁଖ୍ୟ ଅତିଥି କରି ପ୍ରଫେସରମାନେ କାହିଁକି ଯେ ତାଙ୍କର ନିକଟତର ହେବାକୁ ଚାହାଁନ୍ତି, ଏହା ବି ପ୍ରଶ୍ନ ହୁଏ ।

ଏବଂ ଶେଷରେ ଭିଆଇପି ସଂସ୍କୃତିକୁ ବଞ୍ଚେଇ ରଖିଥିବା ତୃତୀୟ ପକ୍ଷ ହେଉଛନ୍ତି କୌଣସି ଉତ୍ସବର ଆୟୋଜକ ବୃନ୍ଦ । ସମ୍ମିଳନୀ, ସେମିନାର, ବକ୍ତୃତାମାଳାକୁ ଆକର୍ଷଣୀୟ କରିବାକୁ ସମସ୍ତଙ୍କର ଏବେ ଇଚ୍ଛା । ସେମିନାରରେ ପଢାଯାଉଥିବା ପେପର୍ ଅପେକ୍ଷା ପ୍ରତିଷ୍ଠିତ ଅତିଥିଙ୍କୁ ନେଇ ସେମିନାର ଉଦ୍‌ଘାଟନ କିପରି ଭଲ ହେବ ଏଥିନେଇ ଆୟୋଜକଙ୍କ ଚିନ୍ତା ବେଶି । ଭିଆଇପିଙ୍କୁ ଫୁଲ ତୋଡା, ଉପହାର, ଉପଢୌକନ ଦେବାରେ ଏବଂ ସଭାରେ ଭାଷଣ ତଥା ଉଦ୍‌ଘାଟନ କରିବାରେ ଅତିଥିଙ୍କ କାର୍ଯ୍ୟସୂଚୀ ଯେପରି ତାଙ୍କର ପଦବୀ ଏବଂ ଷ୍ଟାଟସ୍‌ର ଅନୁରୂପ ହୁଏ, ଆୟୋଜକମାନେ ଏକଥା ବି ସତର୍କତାର ସହ ଦେଖନ୍ତି । ଏଥିରେ ବିଚ୍ୟୁତି ଆସିଲେ ଉପସ୍ଥିତ ପଦାଧିକାରୀଙ୍କୁ ନେଇ ଗଣମାଧ୍ୟମରେ ହୁଏତ ଚର୍ଚ୍ଚା ହୋଇପାରେ ।

ହଁ, ପାଠକ ବନ୍ଧୁ ! ଏହା ହିଁ ସାଂପ୍ରତିକ ଭାରତୀୟ ସମାଜର ଭିଆଇପି ସଂସ୍କୃତି । ସାଧାରଣ ଲୋକ ସଂସ୍କୃତି ବା ପବ୍ଲିକ କଲ୍‌ଚରଠାରୁ ଏହା ପୃଥକ୍ ହେଲେ ବି ଏବଂ ଏପରି ସଂସ୍କୃତି ପ୍ରତି ସାଧାରଣରେ ବିତୃଷ୍ଣା ଥିଲେ ବି ଏହାକୁ ଛାଡିବା କଷ୍ଟ, କାରଣ ରାଷ୍ଟ୍ର ନିଜେ ହିଁ ଏଇ ସଂସ୍କୃତିର ପୃଷ୍ଠପୋଷକତା କରେ ।

କୌଣସି ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ଏହି ଭିଆପି ସଂସ୍କୃତିର ସମାପ୍ତିହେବା କଷ୍ଟ ।



# ଜନସଂଖ୍ୟା ବିସ୍ଫୋରଣ

'ଅଧରାତି ପର୍ଯ୍ୟନ୍ତ ଟିଭି ଦେଖିଲେ ଜନସଂଖ୍ୟା କମିବ । ଡେରିରେ ଶୋଇବାକୁ ଯିବା ଭଲ । କଣ୍ଟ୍ରାସେପ୍ଟିଭ୍ ଏକ ଉତ୍ତମ ଗର୍ଭ ନିରୋଧକ ।' ଜନସଂଖ୍ୟା ବିସ୍ଫୋରଣ ପ୍ରସଙ୍ଗରେ ଏଇ କିଛି ବର୍ଷ ତଳେ ୟୁପିଏ ସରକାରର ଭାରତର ତତ୍କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ଗୁଲାମନବୀ ଆଜାଦଙ୍କ ମନ୍ତବ୍ୟକୁ ନେଇ ବେଶ୍ କିଛି ଦିନ ଧରି ଚର୍ଚ୍ଚା ଏଠି ଚାଲିଥିଲା ।

ଭାରତରେ ଜନସଂଖ୍ୟା ବୃଦ୍ଧି ପ୍ରସଙ୍ଗ ଏକ ରାଜନୈତିକ ସମ୍ବେଦନଶୀଳ ପ୍ରଶ୍ନ । ଏହାର ଗମ୍ଭୀରତା ଉପଲବ୍ଧି କରୁଥିଲେ ବି ଅନେକ ରାଜନେତା ଏବଂ ରାଜନୈତିକ ଦଳ ସାଧାରଣରେ ଏ ସଂପର୍କରେ ଖୋଲାଖୋଲି କିଛି କହନ୍ତି ନାହିଁ । କାରଣ ଅନେକ ସମୟରେ ରାଜନେତାଙ୍କ ମନ୍ତବ୍ୟ କିଛି ପ୍ରତିକୂଳ ପ୍ରତିକ୍ରିୟା ଆଣିଥାଏ । ଏଥିନେଇ କିଛି ରାଜନୈତିକ ମୂଲ୍ୟ ବି ତାଙ୍କୁ ଦେବାକୁ ହୁଏ ।

ସତ କଥା ହେଲା, ବର୍ତ୍ତମାନ ଭାରତ ବର୍ଷର ଜନସଂଖ୍ୟା ବୃଦ୍ଧି ଏକ ଆଗ୍ନେୟଗିରି ଉପରେ ବସିଛି ଏବଂ ଆଗ୍ନେୟଗିରି ଯେତେବେଳେ ଜୀବନ୍ତ ଏବଂ ଉଦବାୟୀ ହୋଇଯାଏ, ସେତେବେଳେ ଏଥିରୁ ଉଦ୍‌ଗୀରଣ ହୁଏ । ଭାରତର ଏବେ ସେଇ ଅବସ୍ଥା । ସୁତରାଂ ତିରିଶ ବର୍ଷରେ ବିବାହ କରିବା ଭଲ, ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଟିଭି ଦେଖି ଶୋଇବାକୁ ଯିବା ଭଲ । ଏଥିରେ ଜନସଂଖ୍ୟା କମିବ । ନଚେତ୍ ଯୋଜନା ପାଇଁ ଆବଶ୍ୟକ ଜମି ମିଳିବ ନାହିଁ । ଜମି ହ୍ରାସ ହେତୁ ଉତ୍ପାଦନ କମ ହେବ । ଦାରିଦ୍ର୍ୟ ଏବଂ ବେରୋଜଗାରୀ ବଢିବ । ଆଇନଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବ । ଏ ସବୁ ଯାହା ଭାରତରେ ସଂପ୍ରତି ହେଉଛି ଏବଂ ଏହା ଆହୁରି ତୀବ୍ରତର ହେବ । ଇଏ ଥିଲା ଆଜାଦଙ୍କ କଥା । ଥୋମାସ୍ ରବର୍ଟ ମାଲଥସ ପ୍ରାୟ ଦୁଇଶହ ବର୍ଷ ତଳେ ଜନସଂଖ୍ୟା ବୃଦ୍ଧିର ଶକ୍ତି ପୃଥିବୀର ଉତ୍ପାଦନ କରିବା ଶକ୍ତି ଠାରୁ ଅସଂଖ୍ୟ ଗୁଣରେ ଅଧିକ ହେବ ବୋଲି ଏପରି ଭବିଷ୍ୟବାଣୀ ବି ଦେଇଥିଲେ ।

୧୯୭୦ ଦଶକରୁ ଭାରତରେ ଜନସଂଖ୍ୟା ବୃଦ୍ଧି ନେଇ ଚିନ୍ତାପ୍ରକଟ ପାଉଛି । ଭିନ୍ନ ଭିନ୍ନ ଭାଷା ଦେଇ ଜନସଂଖ୍ୟା ବୃଦ୍ଧିକୁ ସଂବୋଧିତ କରାଯାଇଛି । ୧୯୭୦ ଦଶକରେ ଏହାକୁ ଏକ ବୋମା ବିସ୍ଫୋରଣ ସହ ତୁଳନା କରାଯାଇଥିଲା । ଅନ୍ୟ କେତେକ ଏହାକୁ ଆଗ୍ନେୟଗିରି ଉଦ୍‌ଗୀରଣ ବୋଲି କହିଲେଣି । କିନ୍ତୁ ପୃଥିବୀ ସାରା ଜନସଂଖ୍ୟାକୁ ମାନବ ସମ୍ବଳ ଏବଂ ସାମାଜିକ ସଂପଦ ବୋଲି କହିବା ବେଳେ କିଛି ବ୍ୟକ୍ତି ଜନସଂଖ୍ୟା ବୃଦ୍ଧିନେଇ ଏ ସଂଜ୍ଞା କେଉଁଠୁ ଆଣିଲେ, ଏହା ଆଶ୍ଚର୍ଯ୍ୟ ଲାଗେ ।

ସ୍ପଷ୍ଟ କହିଲେ, ଭାରତରେ ଜନସଂଖ୍ୟା ଅସ୍ୱାଭାବିକ ଭାବେ ବଢ଼ିଛି । ସ୍ୱାଧୀନତା ବେଳର ତେତିଶି କୋଟି ଲୋକ ଆଜି ଶହେ ତିରିଶି କୋଟିରେ ପହଞ୍ଚି ସାରିଲେଣି । ଅନେକ ଆତଙ୍କିତ ହୋଇ କହିଲେଣି, ଏହା ଜନସଂଖ୍ୟା ବୃଦ୍ଧିର ଶେଷ ସ୍ପର୍ଶକାତର ବିନ୍ଦୁ - ଟିପିଙ୍ଗ୍ ପଏଣ୍ଟ । ଟିପିଙ୍ଗ୍ ପଏଣ୍ଟର ଅର୍ଥ ହେଲା, ଯେତେବେଳେ ବିଶୃଙ୍ଖଳା ଶୃଙ୍ଖଳାକୁ ଅତିକ୍ରମ କରାଯାଏ ; ଯେତେବେଳେ ଖାଦ୍ୟ ପାଇଁ ଅରାଜକତା ଆସିଯାଏ । ଭାରତର ସହର ମାନଙ୍କରେ ଶେଷ ବିନ୍ଦୁର ସ୍ପର୍ଶ ବି ଅନୁଭୂତ ହେଲାଣି । ଗାଁର ଲୋକେ ସହରକୁ ଦୌଡ଼ୁଛନ୍ତି । ସହର ସଙ୍କୋଚିତ ହେଉଛି । ରହିବାକୁ ଜାଗା ମିଳୁନି । ରାସ୍ତାଘାଟ, ଗମନାଗମନ, ପାଣି, ସ୍ୱାସ୍ଥ୍ୟ ସବୁଥିରେ ଏଠି ଅଭାବ । କୋଡ଼ିଏ ବର୍ଷ ତଳେ ଯେଉଁ ସହରକୁ ଭଲ ଭାବେ ପରିଚାଳିତ କରିହେଉଥିଲା, ଏହା ଆଉ ସେପରି କରିବା ସମ୍ଭବ ହେଉନାହିଁ । ସହର ଯେପରି ଯେ କୌଣସି ସମୟରେ ଫାଟି ଯାଇପାରେ ।

ଜନସଂଖ୍ୟା ବୃଦ୍ଧିର ଏ ହେଉଛି ହତାଶାର ଛବି । ପରିଣତିକୁ ସମସ୍ୟା କୁହାଯାଇ ପ୍ରକୃତ କାରଣ ଠାରୁ ଦୂରରେ ଯିବାକୁ ଏହା ଏକ ସୁନ୍ଦର ରାସ୍ତା । ଏଇ ଯେମିତି ଗୁଲାମନବୀ ଆଜାଦଙ୍କର ଲଘୁ ମନ୍ତବ୍ୟ - ଟିଭି ଦେଖ, ଜନ୍ମ କମାଅ ।

ବାସ୍ତବତା ହେଉଛି, ଗତ ଦୁଇ ଦଶନ୍ଧି ଧରି ପୃଥିବୀ ବ୍ୟାପି ଜନସଂଖ୍ୟା ବୃଦ୍ଧି ଏବଂ ପ୍ରଗତି ନେଇ ଆଲୋଚନା ଆରମ୍ଭ ହୋଇଛି । ଜନ୍ମ ନିୟନ୍ତ୍ରଣ ପରି ଶବ୍ଦ ଆଉ ବ୍ୟବହୃତ ନହୋଇ ଏହା ବଦଳରେ ପରିବାର ମଙ୍ଗଳ ଏବଂ ପ୍ରଜନନକ୍ଷମ ସ୍ୱାସ୍ଥ୍ୟ ତଥା ଅଧିକାର ନେଇ ଯୋଜନା ତିଆରି ହେଉଛି ।

୧୯୯୪ ମସିହାରେ ମିଶରର କାଇରୋ ଠାରେ ଜନସଂଖ୍ୟା ବୃଦ୍ଧି ନେଇ ଜାତିସଂଘର ଏକ ସମ୍ମିଳନୀ ବସିଥିଲା । ଏଥିରେ ଭାରତ ବି ଉପସ୍ଥିତ ଥିଲା ।

ଜନସଂଖ୍ୟା ନେଇ ଏଥିରେ ଏକ କାର୍ଯ୍ୟକାରୀ ଯୋଜନା ବା ଆକ୍ସନ ପ୍ଲାନ ପ୍ରସ୍ତୁତ ହୋଇଥିଲା । ଏ ଯୋଜନାରେ ଥିଲା, ମହିଳାଙ୍କ ସାମାଜିକ ତଥା ଆର୍ଥିକ ସ୍ଥିତି ଉନ୍ନତ ହେଲେ; ଏମାନଙ୍କ ସାକ୍ଷରତା ହାର ବଢ଼ିଲେ ଏବଂ ଅର୍ଥନୈତିକ ଅଭିବୃଦ୍ଧି ହୋଇ ଅଧିକ ଲୋକ ମଧ୍ୟବିତ୍ତ ଶ୍ରେଣୀ ସ୍ତରକୁ ଚାଲି ଆସିଲେ ଜନସଂଖ୍ୟା ବୃଦ୍ଧି ଆଉ ହେବ ନାହିଁ । ଏହା ଆପେ ଆପେ ହ୍ରାସ ପାଇଯିବ ।

୧୯୯୪ ର ସେଇ ଆକ୍ସନ ପ୍ଲାନ ଅନୁସାରେ ଭାରତରେ ମଧ୍ୟ ଯୋଜନା ଚାଲିଛି । ପରିବାର କଲ୍ୟାଣ ନାଁରେ ଏବେ ଅନେକ ଯୋଜନା । ନାରୀ ଶିକ୍ଷାର ଉନ୍ନତି ପାଇଁ ଅନେକ ପ୍ଲାନ । ଏଇ ଯୋଜନା ଯେ ଶତ ପ୍ରତିଶତ କାର୍ଯ୍ୟକାରୀ ହୋଇପାରୁନାହାନ୍ତି ଏହା ସତ । ଏହା ସଫଳ ହୋଇଥିଲେ ବୋଧେ ଭାରତରେ ଜନସଂଖ୍ୟାର ଛବି ବଦଳି ଯାଇଥାଆନ୍ତା । ଜବରଦସ୍ତ ଜନ୍ମ ନିୟନ୍ତ୍ରଣ ପାଇଁ ଆଉ ଆହ୍ୱାନ ଆସିନଥାନ୍ତା ଏବଂ ବିଳମ୍ବିତ ରାତି ପର୍ଯ୍ୟନ୍ତ ଟିଭି ଦେଖିବାକୁ ଆଉ ପ୍ରସ୍ତାବର ଅବକାଶ ବି ନଥାନ୍ତା ।

ଆର୍ଥିକ ଅଭିବୃଦ୍ଧି ଏବଂ ସାମାଜିକ ସ୍ଥିତିରେ ଉନ୍ନତି ଆସିଲେ ଏବଂ ବିଶେଷ କରି ଏଇ ଅଭିବୃଦ୍ଧି ମହିଳାଙ୍କ ଭିତରେ ଆସିଲେ କିପରି ଜନସଂଖ୍ୟା କମେ, ଏ ସଂପର୍କରେ ଏଠି ଏକ ଅବତାରଣା କରିବାକୁ ଇଚ୍ଛା । ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେ ବା ନ୍ୟାସନାଲ ଫ୍ୟାମିଲି ହେଲ୍‌ଥ ସର୍ଭେ ଦେଇଥିବା ତଥ୍ୟ ଏଠାରେ ବି ଦିଆଯାଇପାରେ । ଏଇ ସର୍ବେକ୍ଷଣରେ ତଥ୍ୟ ଅନୁଯାୟୀ ଭାରତରେ ଜାତୀୟ ଶିଶୁ ଜନ୍ମହାର ବର୍ତ୍ତମାନ ହେଉଛି ଦୁଇ ଦଶମିକ ସାତ । ୧୯୯୩ ମସିହାରେ ଭାରତରେ ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେ ତାର ପ୍ରଥମ ସର୍ଭେକ୍ଷଣ ଆରମ୍ଭ କରିଥିଲା ।

ଭାରତ ବର୍ଷରେ ବି ଏବେ ଅନେକ ରାଜ୍ୟ ଅଛନ୍ତି ଯେଉଁଠି ଏଇ ଶିଶୁ ଜନ୍ମହାର ଜାତୀୟ ଜନ୍ମହାର ଠାରୁ ବି କମ୍ । ସେ ରାଜ୍ୟମାନଙ୍କ ଭିତରେ ଅଛନ୍ତି ମହାରାଷ୍ଟ୍ର, କେରଳ, ତାମିଲନାଡୁ, କର୍ଣ୍ଣାଟକ, ଗୋଆ, ଆନ୍ଧ୍ରପ୍ରଦେଶ , ହିମାଚଳ ପ୍ରଦେଶ , ଦିଲ୍ଲୀ ଏବଂ ପଞ୍ଜାବ । ଏଠାରେ ୧୯୯୩ ମସିହାରୁ ଶିଶୁ ଜନ୍ମହାର ଦୁଇ ପ୍ରତିଶତ ଏକରୁ ଖସି ଆସି ସଂପ୍ରତି ଏକ ଦଶମିକ ଆଠରେ ପହଞ୍ଚିଛି । ଏହାର ଏକମାତ୍ର କାରଣ ହେଉଛି ଏସବୁ ରାଜ୍ୟ ମାନଙ୍କରେ ସାମାଜିକ ତଥା ଆର୍ଥିକ ସ୍ଥିତି ଭଲ । ମହିଳା ସାକ୍ଷରତା ହାର ଅନ୍ୟ ସବୁ ରାଜ୍ୟ ମାନଙ୍କଠାରୁ ଅଧିକ ।

ଭାରତରେ ଅନ୍ୟ ଦୁଇଟି ରାଜ୍ୟ ଅଛନ୍ତି ଯେଉଁଠି ଜନ୍ମଶିଶୁ ହାର ଜାତୀୟହାର

ଠାରୁ ବେଶି ଅଧିକ । ସେ ରାଜ୍ୟ ହେଉଛି ଉତ୍ତର ପ୍ରଦେଶ ଓ ବିହାର । ଉତ୍ତର ପ୍ରଦେଶରେ ଶିଶୁ ଜନ୍ମହାର ୧୯୯୩ ରେ ଥିବା ଚାରି ଦଶମିକ ଆଠରୁ ସାମାନ୍ୟ ହ୍ରାସ ପାଇ ଏବେ ତିନି ଦଶମିକ ଆଠରେ ରହିଛି ଏବଂ ବିହାରରେ ଏହା ତିନି ଦଶମିକ ଚାରି ନଅରୁ ବୃଦ୍ଧି ପାଇଁ ଚାରି ଦଶମିକରେ ପହଞ୍ଚି ସାରିଲାଣି । ଏହାର ଅସଲ କାରଣ ହେଉଛନ୍ତି, ଏଇ ଦୁଇ ରାଜ୍ୟରେ ମହିଳାଙ୍କ ସାମାଜିକ ତଥା ଆର୍ଥିକ ସ୍ଥିତି ଭଲ ନାହିଁ ଏବଂ ସାମାଜିକ ତଥା ଆର୍ଥିକ ସ୍ଥିତିରେ ଉନ୍ନତି ନିମନ୍ତେ କୌଣସି ବିସ୍ତୃତ ଯୋଜନା କରି ତାର କାର୍ଯ୍ୟକାରୀ ନକରି ଯେତେବେଳେ ଜନସଂଖ୍ୟା ନିୟନ୍ତ୍ରଣ ପାଇଁ କିଛି ଦଣ୍ଡନୀୟ ତଥା ଦମନମୂଳକ ନିୟମ ବି କରାଯାଏ, ଏହାର ମଧ୍ୟ ବିପରୀତ ପରିଣତି ଅନୁଭୂତ ହୁଏ । ଏ ପରିଣତି ଏବେ ବି ଅନୁଭୂତ ହେଉଛି । ପ୍ରଥମେ ଭାରତ ବର୍ଷରେ ଅନେକ ରାଜ୍ୟରେ ପଞ୍ଚାୟତ ନିର୍ବାଚନ ପାଇଁ କଟକଣା ଥିବା ଦୁଇଟି ସନ୍ତାନର ନିୟମ କଥା ଦେଖାଯାଉ । ପଞ୍ଚାୟତ ନିର୍ବାଚନରେ ଅନେକ ପୁରୁଷ ଏବଂ ମହିଳା ପ୍ରତିଯୋଗିତା କରିବାକୁ ଇଚ୍ଛୁକ । ରାଜନୀତିକୁ ଅନେକ ବି କ୍ୟାରିୟର କରିବାକୁ ଚାହାଁନ୍ତି । ନିର୍ବାଚନ ନିମନ୍ତେ ଏଇ ଦୁଇଟି ସନ୍ତାନର ନିୟମ ସଂପ୍ରତି ଅନେକଙ୍କୁ ଗର୍ଭପାତ ଏବଂ ଲିଙ୍ଗ ନିରୂପଣ କରି ଏହାକୁ ନଷ୍ଟ କରିବାକୁ ବାଧ୍ୟ କରୁଛି । ଦୁଇଟି ସନ୍ତାନ ନିମନ୍ତେ ଅନେକ୍ କେବଳ ଦୁଇଟି ପୁଅକୁ ଚାହୁଁଛନ୍ତି କିମ୍ବା ଗୋଟିଏ ପୁଅ ଏବଂ ଗୋଟିଏ ଝିଅରେ ସନ୍ତୁଷ୍ଟ ହେଉଛନ୍ତି । ନିଜ ପସନ୍ଦର ଏପରି ସମତୁଲ ପରିବାର ପାଇଁ ଅନେକ ତେଣୁ ଭ୍ରୂଣ ଚିହ୍ନଟ କରୁଛନ୍ତି ଏବଂ ଗର୍ଭପାତର ଆଶ୍ରୟ ନେଉଛନ୍ତି ।

ଜାତୀୟ ପରିବାର ସ୍ୱାସ୍ଥ୍ୟ ସର୍ଭେର ଅନ୍ୟ ଏକ ପରିସଂଖ୍ୟାନ ବି ଏଠାରେ ଉଲ୍ଲେଖ କରାଯାଇପାରେ । ଏହା ବେଶ ଗୁରୁତ୍ୱପୂର୍ଣ୍ଣ ତଥ୍ୟ । ଭାରତରେ ମାତୃ ମୃତ୍ୟୁ ହେଉଛି । ପ୍ରସବ ବେଳେ ଚିକିତ୍ସା ଅଭାବରୁ ଏ ମୃତ୍ୟୁ ହେଉଛି ଏବଂ ପ୍ରସବ ବେଳେ ଅନେକ ମା'ଙ୍କର ପୁଷ୍ଟିହୀନତା ଯୋଗୁ ମୃତ୍ୟୁ ହେବା କଥା ସର୍ବେକ୍ଷଣରେ ରହିଛି । ଗ୍ରାମାଞ୍ଚଳରେ ତ ଅନେକ ଜାଗାରେ ମା ଏବଂ ଛୁଆ ଜନ୍ମ ବେଳେ ବଞ୍ଚିବେ କି ନା, ଏଥିନେଇ ସନ୍ଦେହ ପ୍ରକାଶ ପାଉଛି ।

ଭାରତର ପଡୋଶୀ ରାଷ୍ଟ୍ର ଚୀନରେ ଅନେକ ବର୍ଷ ଧରି ସେଠି ଗୋଟିଏ ସନ୍ତାନ ନିୟମ ରହିଛି । ଏକାଧିକ ସନ୍ତାନର ଜନକ ବା ଜନନୀ ହେବା ଏଠି ଏକ ଦଣ୍ଡନୀୟ ଅପରାଧ । ପରିଣତି ଏପରି ହେଲାଣି, ବୃଦ୍ଧମାନେ ଏଠାରେ ଯୁବକମାନଙ୍କ

ଠାରୁ ଅଧିକ ହୋଇଗଲେଣି । ଖୁସିର କଥା ଯେ ଭାରତରେ ବର୍ତ୍ତମାନ ଯୁବକଙ୍କ ସଂଖ୍ୟା ବେଶି । ଭାରତକୁ ଏକ ଯୁବକର ଦେଶ ବୋଲି କୁହାଯାଉଛି । କୌଣସି କାମକୁ ରିସ୍କି ନେଇ କରିବାକୁ ହେଲେ ଯୁବକଟିଏ ହିଁ ଦରକାର । ପୃଥିବୀରେ ଯେଉଁ ଉନ୍ନତ ରାଷ୍ଟ୍ରକୁ ଲକ୍ଷ୍ୟ କରି ମାଲଥସ୍ ତାଙ୍କ ଜନସଂଖ୍ୟା ଥିଓରି ଲେଖିଥିଲେ, ସେଇ ସବୁ ଦେଶ ମାଲଥସ୍‌ଙ୍କ ଏଇ ତତ୍ତ୍ୱକୁ ଏବେ ଏକ ପୁରୁଣା ଅର୍ଥହୀନ ତତ୍ତ୍ୱ କହି ପ୍ରତ୍ୟାଖ୍ୟାନ କରିଦେଲେଣି । ସୁତରାଂ ଜନସଂଖ୍ୟା ବୃଦ୍ଧି, ପ୍ରକୃତରେ ଏକ ସମସ୍ୟା ନୁହେଁ । ସମସ୍ୟା ରହିଛି ପ୍ରସବ ମା'ମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ନେବାରେ, ମହିଳାଙ୍କ ସାକ୍ଷରତା ହାର ବୃଦ୍ଧି କରିବାରେ ଏବଂ ଏମାନଙ୍କର ସାମାଜିକ ତଥା ଆର୍ଥିକ ସ୍ଥିତି ଉନ୍ନତ କରିବାରେ । ଜନସଂଖ୍ୟା ଏବଂ ପ୍ରଗତି ଭିତରେ ସମନ୍ୱୟ ରଖି ତେଣୁ ଯୋଜନା ହେବା ଦରକାର ।

ଜନସଂଖ୍ୟା ହ୍ରାସ ପାଇଁ ଶୟନ କକ୍ଷକୁ ଡେରିରେ ଯିବାପରି ପ୍ରସ୍ତାବ କିପରି ତେଣୁ ଅପରିପକ୍ୱ ଲାଗୁଛି ।



# ଭିକାରୀ ଓ ଭିକ୍ଷାବୃତ୍ତି

**ସ**କାଳେ କଲିଙ୍ଗ୍ ବେଲରେ ଶବ୍ଦ ଶୁଣି ଦୁଆର ଖୋଲିଲି । ଦୁଆର ଆଗରେ ମଇଳା ଲୁଗା ପିନ୍ଧି ହାତରେ ଥାଳି ଧରିଥିବା ଲୋକଟିକୁ ଦେଖିଲି । ପଚାରିଲି, କ'ଣ ହେଲା ? ସେ ଉତ୍ତର ଦେଲା, 'ବାବୁ ଭିକ ଦିଅନ୍ତୁ । ଗେଟ୍ ବାଡେଇଲି । କିଏ ଶୁଣିଲେ ନାହିଁ । ଗେଟ୍ ଖୋଲି ତେଣୁ ଭିତରକୁ ଆସିଲି ।' ଏକଥା କହିବାରେ ଭିକାରୀଟିର ଭୟ ନଥିଲା । ଏପରି ଅନୁଭୂତି କେବଳ ଏ ଲେଖକର ଏକକ ଅନୁଭୂତି ନୁହେଁ । ଏପରି ଅନୁଭୂତି ଏଠି ଅନେକଙ୍କର ଥିବ । ଭିକ ମାଗୁଥିବା ଭିକାରୀ ପାଇଁ ସ୍ଥାନ-କାଳ-ପାତ୍ରର କଟକଣା ଯେପରି କିଛି ନାହିଁ । ଏହା ଯେମିତି ଏକ ଅଧିକାର ହୋଇଯାଇଛି ।

ଯାହା ଜଣାଯାଏ, ଏଇ କିଛି ବର୍ଷ ଭିତରେ ଭାରତରେ ଭିକାରୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ଏଠି ଜନ ସଂଖ୍ୟାର ବେଶ୍ ବଡ ଭାଗଟିଏ ଭିକାରୀଙ୍କ ସଂଖ୍ୟା ହୋଇଗଲାଣି । ବାସ୍ତବରେ ଭିକାରୀ ବୃଦ୍ଧିରେ କୌଣସି ରାଷ୍ଟ୍ରର ଗର୍ବ କରିବାର କିଛି ନଥାଏ । ଏହାକୁ ବରଂ ଏକ କଳଙ୍କ ଭାବେ ଧରି ନିଆଯାଏ ।

ଗତ ରାଜ୍ୟ ଗୋଷ୍ଠୀ କ୍ରୀଡାବେଳେ ଦିଲ୍ଲୀକୁ ଭିକାରୀ ମୁକ୍ତ କରିବାକୁ ହଜାର ହଜାର ଭିକାରୀଙ୍କୁ ଦିଲ୍ଲୀ ବାହାରେ ଜବରଦସ୍ତ ଛାଡି ଦିଆଯାଇଥିଲା । ଏସବୁ ଦୃଶ୍ୟ ବି ଗଣମାଧ୍ୟମରେ ଆସିଥିଲା । ଭିକାରୀମାନେ ଯେ ଦେଶର ନାଗରିକ ଏ ଦେଶର ଶାସକ ବର୍ଗ ଏକଥା ବୋଧେ ଭୁଲି ଯାଇଥିଲେ । ଏଥିରେ ମାନବ ଅଧିକାର କ୍ଷୁଣ୍ଣ ହୋଇଥିଲା କି ନା ଏସବୁର ବିଚାର ହୋଇନଥିଲା ସେତେବେଳେ ।

ଭାରତରେ ହୁ ହୁ ହୋଇ ଭିକାରିଙ୍କ ସଂଖ୍ୟା ବଢ଼ିବାର କିଛି କାରଣ ଦିଆଯାଏ । ପ୍ରଥମ କାରଣ ହେଲା, ଆର୍ଥିକ ଅଭିବୃଦ୍ଧି ହେତୁ ଧନୀଙ୍କ ସଂଖ୍ୟା ଏଠି ବୃଦ୍ଧି ପାଇଥିଲେ ବି ଆର୍ଥିକ ଅସମାନତା ବଢ଼ିଛି । ଏଇ ଆର୍ଥିକ ଅସମାନତା ଗରିବ ସୃଷ୍ଟି କରିଛି । ରୋଜଗାର ପାଇଁ କାମ ମିଳୁନାହିଁ । ମଣିଷ ବଦଳରେ ଅନେକ କାମ ଏଠି ମେସିନ୍‌ରେ

ହେଉଛି। ପ୍ରାକୃତିକ ବିପର୍ଯ୍ୟୟ ଏବଂ ବିସ୍ଥାପନ ଅନେକ ଥିଲା ବାଲାଙ୍କୁ ଭିକାରୀ କରିଦେଉଛି।

ଏକ ସର୍ବେକ୍ଷଣ ଅନୁସାରେ, ଭାରତର ଗ୍ରାମାଂଚଳରେ ଗରିବ ଲୋକଙ୍କ ସଂଖ୍ୟା ପଚାଶ ପ୍ରତିଶତରୁ ଉର୍ଦ୍ଧ୍ୱ ହେଲାଣି। ଦୈନିକ କୋଡିଏ ଟଙ୍କା ରୋଜଗାର ପାଇଁ ବି ଏମାନଙ୍କ ନିମନ୍ତେ କାମ ନାହିଁ। ଗ୍ରାମାଞ୍ଚଳରେ କାମ ନଥିବାରୁ ଅନେକ ତେଣୁ କାମ ପାଇଁ ସହରମୁହାଁ ହୋଇଛନ୍ତି। ସହରରେ ବି କାମ ମିଳିବାର ପ୍ରାୟ ସେଇ ଏକା ଅବସ୍ଥା।

ଭିକାରୀ ବୃଦ୍ଧିର ଅନ୍ୟ ଏକ କାରଣଟି ହେଲା, ଏଠି ଥିବା ଧାର୍ମିକ ତଥା ସାମାଜିକ ପ୍ରଥା । ପୃଥିବୀର ସବୁ ଧର୍ମରେ ଦାନକୁ ପୂଣ୍ୟ କାର୍ଯ୍ୟ ଭାବେ ଧରାଯାଏ। ଭିକାରୀକୁ ଭିକ ଦେବା ମଧ୍ୟ ପୂଣ୍ୟ କାମ ଭିତରେ ଯାଏ।

ଭାରତରେ ଭିକାରୀଙ୍କ ସଂଖ୍ୟା ନେଇ ଗତ ଜନଗଣନାରେ ଏକ ପରିସଂଖ୍ୟାନ ରହିଛି। ଏଇ ହିସାବ ଅନୁସାରେ ଏ ଦେଶରେ ସମୁଦାୟ ଭିକାରୀଙ୍କ ସଂଖ୍ୟା ସଂଖ୍ୟା ହେଉଛି ୬ ଲକ୍ଷ ୨୭ ହଜାର। ଏଥିରୁ ୩ ଲକ୍ଷ ୭୫ ହଜାର ଅଛନ୍ତି କେବଳ ମୁମ୍ବାଇରେ। ଦିଲ୍ଲୀରେ ୬୦ ହଜାର ଏବଂ କଲିକତାରେ ଅଛନ୍ତି ପ୍ରାୟ ୫୭ ହଜାର। ଭାରତର ପ୍ରାୟ ସବୁ ଧାର୍ମିକ ସହର ମାନଙ୍କରେ ଭିକାରୀଙ୍କ ସଂଖ୍ୟା କ୍ରମଶଃ ବଢୁଛି। ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଭିକ ମାଗିବାକୁ ଲୋକେ ବି ଯାଉଛନ୍ତି। ଭିକାରୀମାନଙ୍କର ଭିକ ମାଗିବାରେ ଆଉ ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ। ଏମାନେ ଏକ ପ୍ରକାରର ଯାଯାବର ହୋଇଗଲେଣି।

ଭିକାରୀଙ୍କ ସ୍ଥିତି ସଂପର୍କରେ ଏକ ରିପୋର୍ଟ ଦେଇ ଏବେ ମହାରାଷ୍ଟ୍ର ସରକାର କହନ୍ତି, ମହାରାଷ୍ଟ୍ରରେ ଭିକାରୀମାନେ ଯେଉଁ ଭିକ ମାଗନ୍ତି ତାର ମୂଲ୍ୟ ହେବ ପ୍ରାୟ ଏକଶହ ଅଶିକୋଟି ଟଙ୍କା। ଜଣେ ଭିକାରୀ ଦୈନିକ କୋଡିଏ ଟଙ୍କାରୁ ଅଶି ଟଙ୍କା ପର୍ଯ୍ୟନ୍ତ ରୋଜଗାର କରେ।

ଏ ହେଉଛି ଭିକାରୀଙ୍କ ସ୍ଥିତି ନେଇ ଭାରତୀୟ ଚିତ୍ର। ଭାରତରେ ଭିକ୍ଷାବୃତ୍ତି ନିରୋଧ ଆଇନ ଥିଲେ ବି ଭିକମଗା ପ୍ରବୃତ୍ତି ଏବଂ କାର୍ଯ୍ୟକୁ ରୋକାଯାଇ ପାରୁନାହିଁ।

ଭାରତ ବର୍ଷରେ ଦୁଇ ପ୍ରକାର ଭିକାରୀ ଅଛନ୍ତି। ଦଳେ ଅଛନ୍ତି ଯେଉଁମାନେ ବଚିଂବା ପାଇଁ ଭିକ ମାଗନ୍ତି। ଇଏ ତାଙ୍କ ଜୀବନ ଧାରଣର ଏକ ଉପାୟ। କାମ

ନକରି ବଚିଂବାର ଏହା ଏମାନଙ୍କ ପାଇଁ ଏକ ସହଜ ବାଟ। ଖାଇବାକୁ କିଛି ମିଳିଗଲେ ଏମାନେ ସନ୍ତୁଷ୍ଟ ହୋଇଥାଆନ୍ତି। ଭିକମଗା ବ୍ୟତୀତ ଅନ୍ୟ କିଛି କାମ କରିବାକୁ ଏମାନଙ୍କର ଇଚ୍ଛା ମଧ୍ୟ ନଥାଏ।

କିନ୍ତୁ ଅନ୍ୟ ଏକ ଗୋଷ୍ଠୀ ଅଛନ୍ତି ଯେଉଁମାନେ ଭିକ ମାଗିବାକୁ ଏକ ବୃତ୍ତି ଭାବେ ଗ୍ରହଣ କରନ୍ତି। ଅନ୍ୟ କଥାରେ କହିଲେ ଇଏ ତାଙ୍କର ଏକ ପ୍ରଫେସନ୍। ଏମାନେ ନିଜର ଭିକମଗା ଅର୍ଥକୁ ସଞ୍ଚୟ କରି ରଖନ୍ତି। ସୁଧ ଲଗାନ୍ତି। ବ୍ୟବସାୟରେ ଖଟାନ୍ତି। ଗରିବ ପରି ଦେଖା ଯାଉଥିବା କିଛି ଲୋକ ସଂଗଠିତ ହୋଇ ଏପରି ବୃତ୍ତିକୁ ଚଲାଇ ରଖିବାକୁ ର୍‍ୟାକେଟ୍ ବି କରି ଦେଇଛନ୍ତି।

ଭିକ୍ଷାବୃତ୍ତିର ଏ ର୍‍ୟାକେଟ୍ ପୃଥିବୀର ପ୍ରାୟ ସବୁ ଦେଶର ରହିଛି। ଏଇ ର୍‍ୟାକେଟ ଚଳାଇବା ନିମନ୍ତେ ମାଫିଆ ମଧ୍ୟ ଅଛନ୍ତି। ଏଇ ମାଫିଆ ଦଲାଲମାନେ ପିଲାଙ୍କୁ ଅପହରଣ କରି ବିକଳାଙ୍ଗ କରିଦିଅନ୍ତି ଏବଂ ବିକଳାଙ୍ଗ ପିଲାଙ୍କୁ ଭିକ୍ଷାବୃତ୍ତିର ପ୍ରଶିକ୍ଷଣ ଦିଅନ୍ତି। ଅକ୍ରମଣ୍ୟ ସ୍ତ୍ରୀ ଲୋକ, ବୃଦ୍ଧ-ବୃଦ୍ଧା ଏବଂ ଅନେକ ସମୟରେ ସୁସ୍ଥ ସବଳ ଲୋକଙ୍କୁ ଭିକାରୀ ବେଶରେ ସଜାଇ ଏଇ ମାଫିଆମାନେ ଭିକ୍ଷା ସଂଗ୍ରହ କରନ୍ତି। ଭିକ ମାଗୁଥିବା ଲୋକଙ୍କୁ ଅବଶ୍ୟ କିଛି କମିଶନ ମିଳେ। ଭିକାରୀର ର୍‍ୟାକେଟ ତିଆରି କରିଥିବା ମାଫିଆମାନେ ଏଇ ଭିକାରୀଙ୍କ ଦ୍ୱାରା ଅପରାଧ, ଚୋରି, ଅପହରଣ ଏପରିକି ନିଶା ବ୍ୟବସାୟ କରନ୍ତି। ଏ ଲେଖକ ଏଠି କୌଣସି ସିନେମାର କାହାଣୀ କଥା କହୁନାହିଁ। ଇଏ ଏବର ଏକ ସାମାଜିକ ବାସ୍ତବତା।

ଭିକ୍ଷାବୃତ୍ତି ନିରୋଧ ଆଇନରେ ଭିକାରୀର ଏକ ସଂଜ୍ଞା ରହିଛି। ଭିକାରୀର ଅର୍ଥ ହେଲା, ଯେଉଁମାନେ ଏଣେ ତେଣେ ବୁଲୁଥିବେ। ଗରିବ ପରି ଦେଖାଯାଉଥିବେ। ବଚିଂବା ପାଇଁ ସେମିତି କିଛି ଦୃଶ୍ୟମାନ ରୋଜଗାରର ପନ୍ଥା ଏମାନଙ୍କର ନଥିବ। ଯଦିଓ ଏହା ଏକ ଘୃଣ୍ୟ କାମ, ତଥାପି ଏମାନଙ୍କର ଏଥି ପ୍ରତି ଦୁଃଖ କିମ୍ୱା ଅନୁତାପ ନଥିବ।

ସବୁ ଭିକାରୀ ଯେ ଗରିବ ଏକଥା ବି ଠିକ୍ ନୁହେଁ। ଭିକ୍ଷା ବୃତ୍ତିରେ ବ୍ୟସ୍ତ ଥିବା ଅନେକ ଭିକାରୀ କୋଟିପତି ଅଛନ୍ତି। କିନ୍ତୁ ବଡ କଥା ହେଲା, ଏମାନଙ୍କ ପାଖରେ ଧନ ଥିଲେ ବି ଏମାନେ ତାଙ୍କ ଧନକୁ ଲୁଚାଇ ରଖନ୍ତି। ଏହାର ପ୍ରଦର୍ଶନ ଏମାନେ କରିପାରନ୍ତି ନାହିଁ।

ଇରାନରେ ଏକ ଭିକାରୀ କଥା ଏବେ ଗଣମାଧ୍ୟମରେ ଆସିଥିଲା । ପଶ୍ଚିମ ଇରାନରେ ଏକ ଭିକାରୀ ଥିଲା । ନାଁ ତାର 'ଇଲା ତଲବ' । ତଲବ ଗୋଟିଏ ଝୁମ୍ପୁଡ଼ି ଘରେ ରହୁଥିଲା । ତାର ପରିବାର ନଥିଲା । ସେ ଭିକ ମାଗି ଚଳୁଥିବାର ଦେଖା ଯାଉଥିଲା । ତଲବ ଯେଉଁ ଦିନ ମରିଗଲା ତାର ଶବ ବାହାର କରିବାକୁ କେହି ନଥିଲେ । ପୋଲିସ ଶବ କାଢ଼ିବାକୁ ଗଲାବେଳେ ସେ ଘରେ ଯାହା ଦେଖିଲା ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଗଲା । ତଲବ ତା ଘରେ ଦଶ ହଜାର ଡଲାରର ନଗଦ ଟଙ୍କା ରଖିଥିଲା । କେଜି କେଜି ଓଜନର ଗହଣା, ଅଳଙ୍କାର ତା' ଘରେ ଥିଲା । ଉଣେଇଶି ଶତାବ୍ଦୀର ପୁରୁଣା ଇଅରିଙ୍ଗ୍ ରଖିଥିଲା । ସେ କିଣିଥିବା ଅନେକ ଜମି ବାଡିର କାଗଜ ପତ୍ର ତା ପାଖରେ ଥିଲା । ଏ ସମସ୍ତ ସମ୍ପତ୍ତିର ମୂଲ୍ୟ ହେବ କୁଆଡେ ଦଶଲକ୍ଷ ଡଲାର । ତଲବ ଏତେ ସମ୍ପତ୍ତି କିପରି ସଞ୍ଚୟ କରିପାରିଲା, ଏଇ ଧନକୁ ଜମି କିଣାରେ ବିନିଯୋଗ କରିବାକୁ କିଏ ସାହାଯ୍ୟ କରିଥିଲା ଏବଂ ତଲବର ଏ ଭିକମଗା ଧନକୁ କିପରି ବାଜ୍ୟାପ୍ତ କରାଯିବ ଏଥିନେଇ ଇରାନ୍‌ରେ ଏବେ ବିଚାରପତି ସ୍ତରୀୟ କମିଟି ବସଛି ।

ମନୋସ୍ତତ୍ତ୍ୱବିତ୍‌ଙ୍କ ପାଇଁ ତଲବ ଉଦାହରଣ ଏକ ଉତ୍ତମ କେଶ ଷ୍ଟଡି । ଭାରତରେ ବି ତଲବ ପରି ଭିକ ମାଗି ଧନ ସଂଗ୍ରହ କରିବା ନିଶାରେ ଅନେକ ଭିକାରୀ ଅଛନ୍ତି । ଅବଶ୍ୟ ଧନ ସଂଗ୍ରହ କରିବା ଏକ ପ୍ରବୃତ୍ତି । ମାଧ୍ୟମ ଯାହା ହେଉନା କାହିଁକି ।

ସତ କହିବାକୁ ଗଲେ ଭାରତରେ ଭିକାରୀଙ୍କ ଅବସ୍ଥା ଏବେ ଆଉ ଭଲ ନାହିଁ । ସେମାନେ ଆଉ ଦୟାର ପାତ୍ର ନୁହନ୍ତି । ସେମାନଙ୍କ ଉପରେ ଆକ୍ରମଣ ଆରମ୍ଭ ହେଲାଣି । ସେମାନଙ୍କୁ ହତ୍ୟା କରାଗଲାଣି ଏବଂ ଲୁଟ୍ ବି କରାଗଲାଣି ।

ଏଇ କିଛି ଦିନ ତଳେ ପଶ୍ଚିମବଙ୍ଗରେ ଲାଲଗଡ ଅଚଂଳରେ ଭିକାରୀ ଏବଂ ଅର୍ଦ୍ଧ ପାଗଳ ହୋଇ ବୁଲୁଥିବା ବ୍ୟକ୍ତିକୁ ହତ୍ୟା କରାଗଲା । ପୋଲିସ ଉତ୍ତର ହେଲା - ଏସବୁ ମାଓବାଦୀଙ୍କ କାମ । ପୋଲିସକୁ ସୂଚନା ଦେବା ସନ୍ଦେହ ରେ ଏଇ ଭିକାରୀ ଏବଂ ପାଗଳମାନଙ୍କୁ ହତ୍ୟା କରିବା ବର୍ବୋରିଚତ ଏବଂ ନିନ୍ଦନୀୟ ଘଟଣା । ମାନବାଧିକାର ଉଲ୍ଲଘଂନର ସମସ୍ତ ସୀମାକୁ ଏହା ନିଶ୍ଚିତ ଟପି ଯାଇଛି ଏବଂ ସବୁଠାରୁ ବଡ ଆଶ୍ଚର୍ଯ୍ୟର କଥା ହେଲା, ଓଡିଶାରେ ଏବେ ଜଣେ ଭିକାରୁଣୀକୁ ଲୁଟ କରି ତା' ଠାରୁ ୬ ହଜାର ଟଙ୍କା କିଛି ଦୁର୍ବୃତ୍ତ ଜବରଦସ୍ତ ଛଡାଇନେବା

ଖବର କାଗଜରେ ଆସିଥିଲା। ଭିକାରୀମାନେ ଯେ ସଂପ୍ରତି ସହଜ ଟାର୍ଗେଟ୍, ଏହା ତାର ହିଁ ସୂଚନା।

ସଂକ୍ଷିପ୍ତରେ କହିଲେ, ଭାରତରେ ଭିକାରୀ ଏବଂ ଭିକ୍ଷାବୃତ୍ତି ଏକ ସାମାଜିକ ଆର୍ଥିକ ସମସ୍ୟା। ଲକ୍ଷ ଲକ୍ଷ ଲୋକଙ୍କୁ ଏଠି ମାନବସମ୍ବଳ ଅଭିବୃଦ୍ଧିରେ ଲଗାଯାଇ ପାରୁନାହିଁ। ଅନେକ ଭିକାରି ଭିକ ମାଗୁଥିଲେ ବି ଏହାକୁ ସେମାନେ ମର୍ଯ୍ୟାଦାପୂର୍ଣ୍ଣ କାମ ବୋଲି ଭାବନ୍ତି ନାହିଁ। ଅନେକଙ୍କର ଆତ୍ମହତ୍ୟାର ପ୍ରବଣତା ମଧ୍ୟ ଆସିଥାଏ। ଅନେକ ଭିକାରୀ ବି ଏ କାମ ପାଇଁ ନିଜକୁ କିପରି ଦୋଷୀ ବୋଲି ଭାବନ୍ତି।

ସୁତରାଂ ଏପରି ଏକ ସାମାଜିକ ସମସ୍ୟାକୁ ଏ ସମାଜ ଏବଂ ସରକାର ଗମ୍ଭୀରତାର ସହ ନେବା ଉଚିତ। ଭିକାରୀଙ୍କ ଥଇଥାନ ପାଇଁ ବିସ୍ତୃତ କାର୍ଯ୍ୟକ୍ରମ ପ୍ରସ୍ତୁତ ହେବା ଦରକାର। ସରକାରୀ ଭାବେ କିଛି କାର୍ଯ୍ୟକ୍ରମ ଏଠି ହାତକୁ ନିଆଯାଇଥିଲେ ବି ପ୍ରକୃତରେ ଏହା ପ୍ରଭାବଶାଳୀ ଭାବେ କାର୍ଯ୍ୟକାରୀ ହେଉନାହିଁ। ପରିଣତି ତେଣୁ ଏହା ହେଉଛି, ଯେଉଁ ସ୍ତ୍ରୀ ଲୋକ ଦିନେ ହାତରେ ଥାଳି ଧରି ଏବଂ ଚିରା ଲୁଗା ପିନ୍ଧି ଭିକ ମାଗୁଥିଲା, ସେ ଏବେ ତା' ଟିକି ଛୁଆକୁ ଧରି ଭିକ ମାଗୁଛି ଏବଂ ପିଲାକୁ ଭିକ ମଗା ଶିଖାଉଛି।

ଏହା ନିଶ୍ଚିତ ଯେ, ସମସ୍ତ ସଚେତନ ନାଗରିକ ଏଠି ଏକ ଭିକାରୀମୁକ୍ତ ସମାଜ ଦେଖିବକୁ ଚାହାନ୍ତି। ଭାରତ ଯେ ଏକ ଭିକାରୀଙ୍କ ଦେଶ ଅନ୍ତତଃ ଏ କଳଙ୍କ ଆଉ ବେଶିଦିନ ଏଠାରେ ଲାଗି ନରହୁ ।



# ଗଣତନ୍ତ୍ର ଓ ଗଣଦାରିଦ୍ର୍ୟ

ଗତ ଜାନୁଆରୀ ୨୬, ଗଣତନ୍ତ୍ର ଦିବସ ଉପଲକ୍ଷେ ହୋଇଥିବା ଏକ ସର୍ବେକ୍ଷଣର ଫଳାଫଳ ନଜରକୁ ଆସିଲା । ସର୍ଭେରେ ପ୍ରଶ୍ନ ଥିଲା - ଭାରତୀୟ ଗଣତନ୍ତ୍ର ପ୍ରତି ଆପଣ ଖୁସି କି ? ୬୮ ପ୍ରତିଶତ ଉତ୍ତରକର୍ତ୍ତା ଉତ୍ତର ଦେଲେ - ହଁ । କହିଲେ, ଭାରତୀୟ ଗଣତନ୍ତ୍ର ଠିକ୍ ଚାଲିଛି ଏବଂ ଅନ୍ୟ ୩୨ ପ୍ରତିଶତ ଖୁସି ନଥିବା କଥା ପ୍ରକାଶ କଲେ ।

ଗାଣିତିକ ସଂଖ୍ୟା ଦେଖିଲେ, ଏଇ ୩୨ ପ୍ରତିଶତ ଲୋକ କିଛି କମ୍ ସଂଖ୍ୟା ନୁହେଁ । ଭାରତର ଜନସଂଖ୍ୟାର ଏମାନେ ପ୍ରାୟ ଚାଳିଶି କୋଟିରୁ ଅଧିକ । ଯଦିଓ ଗଣତନ୍ତ୍ରରେ ଏମାନଙ୍କୁ ସଂଖ୍ୟା ଗରିଷ୍ଠ କୁହାଯାଏନି, ତଥାପି ଏମାନଙ୍କ ମତାମତକୁ ଅବଜ୍ଞା କରାଯାଇ ନପାରେ । ଏମାନେ ହୁଏତ ସଂଖ୍ୟାଲଘୁ ବା ମାଇନରଟି ହୋଇପାରନ୍ତି ।

ଭାରତୀୟ ଗଣତନ୍ତ୍ର ପ୍ରତି ଅସୁଖୀ ଥିବା ଏମାନଙ୍କ ଭିତରୁ କିଛି ଯୁକ୍ତି କରି କହନ୍ତି - ଭାରତରେ ଗଣତନ୍ତ୍ର ସେତେ ସଫଳ ହୋଇନାହିଁ । ଏହା ସତ ଯେ ୧୯୪୦ ଦଶକରେ ଭାରତ ସହ ପୃଥିବୀର ଅନ୍ୟ ପ୍ରାୟ ୧୦୦ ଟି ରାଷ୍ଟ୍ର ଯେଉଁ ସ୍ୱାଧୀନତା ପାଇଥିଲେ, ସେଥିରୁ ଅର୍ଦ୍ଧାଧିକ ରାଷ୍ଟ୍ରରେ ଏବେ ଆଉ ଗଣତନ୍ତ୍ର ନାହିଁ । ସଂସଦ ଭବନକୁ ସେଠାରେ ଶାସକମାନେ ତାଲା ପକାଇ ବନ୍ଦ କରିଦେଇଛନ୍ତି । ଭାରତରେ କିନ୍ତୁ ଗଣତନ୍ତ୍ର ଅଛି । ଏ ହେଉଛି ଭାରତୀୟ ଗଣତନ୍ତ୍ରର ଗତ ଛ ଦଶନ୍ଧିରୁ ଊର୍ଦ୍ଧ୍ୱ ବର୍ଷର ଅବଧି ଭିତରେ ଏକମାତ୍ର ସଫଳତା । ଅଥଚ ଏହି ସମୟ ଭିତରେ ଏଠି ଦାରିଦ୍ର୍ୟ ବଢ଼ିଛି । ଯେଉଁ ଆର୍ଥିକ ଅଭିବୃଦ୍ଧି କଥା କୁହାଯାଉଛି ସେ ସେମିତି କିଛି ସୁଖବର ବି ନୁହେଁ । ସିଙ୍ଗାପୁର, ମାଲେସିଆ, ଚୀନରେ ତ ଆର୍ଥିକ ଅଭିବୃଦ୍ଧିର ହାର ଅଧିକ । ଅବଶ୍ୟ ଏଇ ଦେଶରେ ଭାରତ ପରି ପୂର୍ଣ୍ଣ ଗଣତନ୍ତ୍ର ନାହିଁ ।

ଆର୍ଥିକ ଉନ୍ନତି ଏବଂ ଦାରିଦ୍ର୍ୟ ଦୂରିକରଣ ନିମନ୍ତେ କେଉଁ ଶାସନ ପଦ୍ଧତିଟି ବେଶି ଉପଯୋଗୀ, ସେଥିନେଇ ତର୍କ ଅନେକ ଦିନ ଧରି ଚାଲିଛି । ଅନେକ କହନ୍ତି, ଏଥିପାଇଁ ଗଣତନ୍ତ୍ର ଭଲ । ଅନେକ କିନ୍ତୁ ଏଥିପାଇଁ ଏକଛତ୍ରବାଦୀ ଉପରେ ବେଟ୍ ଲଗାନ୍ତି । ଭାରତରେ ଏପରି ତର୍କ ଏବେ କିନ୍ତୁ ସରୁନାହିଁ । କାରଣ ହେଉଛି, ଦରିଦ୍ରଙ୍କ ସଂଖ୍ୟା ଏଠି ବେଶି ଏବଂ ଏଠି ବି ଯେଉଁମାନେ ନିଜକୁ ଧନୀ ବୋଲି କହୁଛନ୍ତି, ପଶ୍ଚିମ ଉନ୍ନତ ରାଷ୍ଟ୍ରର ଷ୍ଟାଣ୍ଡାର୍ଡକୁ ନେଲେ ଏମାନଙ୍କୁ ମଧ୍ୟ ଦରିଦ୍ର କୁହାଯିବ ।

ରାଜନୈତିକ ସ୍ୱାଧୀନତା ଏବଂ ଆର୍ଥିକ ଚାହିଦାର ପୂର୍ତ୍ତି,ଏଇ ଦୁଇ ଆବଶ୍ୟକତା ଭିତରେ ଦ୍ୱନ୍ଦ୍ୱ ଆସିଲେ ତିନୋଟି ପ୍ରସଙ୍ଗ ଆଲୋଚନାକୁ ଆସେ । ପ୍ରଥମଟି ହେଲା, ସିଭିଲ୍ ଏବଂ ରାଜନୈତିକ ସ୍ୱାଧୀନତା । ଏହି ସ୍ୱାଧୀନତା ଆର୍ଥିକ ଅଭିବୃଦ୍ଧି ହାରକୁ ପ୍ରଭାବିତ କରେ । ତଥାପି ମୁକ୍ତ ରାଜନୀତି ନଥିଲେ ବି ପୃଥିବୀର ଅନେକ ରାଷ୍ଟ୍ରରେ ଅର୍ଥନୈତିକ ବିକାଶ ଘଟୁଛି । ଏଇ ଯେମିତି ସିଙ୍ଗାପୁର, ମାଲେସିଆ, ଚୀନ୍ କଥା କୁହାଯାଇପାରେ ।

ଦ୍ୱିତୀୟଟି ହେଲା, କୌଣସି ଲୋକକୁ ଯଦି ପ୍ରଶ୍ନ କରାଯାଏ, ସେ କେଉଁ ଜିନିଷ ପ୍ରଥମେ ଚାହିଁବେ - ଆର୍ଥିକ ଉନ୍ନତି ନା ରାଜନୈତିକ ସ୍ୱାଧୀନତା ? ଉତ୍ତର ଆସିବ, ସେ ପ୍ରଥମେ ନିଜର ଆର୍ଥିକ ଉନ୍ନତି ଚାହିଁବେ, ପରେ ରାଜନୈତିକ ସ୍ୱାଧୀନତା ।

ତୃତୀୟ ପ୍ରସଙ୍ଗ ହେଲା, ଚର୍ଚ୍ଚାରେ ଥିବା ଏ ଗଣତନ୍ତ୍ର ତଥା ରାଜନୈତିକ ସ୍ୱାଧୀନତା । ଏସବୁ ଭାରତୀୟ ରାଜନୈତିକ ମୂଲ୍ୟବୋଧ ତଥା ଅନୁଶାସନ ଉପରେ ଗୁରୁତ୍ୱ ଦିଏ । ସୁତରାଂ ଭାରତରେ ଯେଉଁ ଗଣ ଦାରିଦ୍ର୍ୟ ଅଛନ୍ତି, ସେଥିପାଇଁ ଗଣତାନ୍ତ୍ରିକ ଦୁର୍ବଳତା ହିଁ ଦାୟୀ । ଖାଲି ଭାରତ କାହିଁକି, ପୃଥିବୀରେ ଅନେକ ଗଣତନ୍ତ୍ର ମଧ୍ୟ ଭାରତ ପରି ଆର୍ଥିକ ଭାବେ ଦୁର୍ବଳ ।

ଗଣତନ୍ତ୍ର ଏବଂ ଗଣନା ଦାରିଦ୍ର୍ୟ ସମ୍ପର୍କରେ ଅନେକ ଅର୍ଥଶାସ୍ତ୍ରୀ ତାଙ୍କର ମୌଳିକ ଚିନ୍ତାଟିଏ ଦେଇଛନ୍ତି । ସମାନେ କହନ୍ତି - କୌଣସି ଗଣତନ୍ତ୍ରରେ ଅନାହାରକୁ ସହ୍ୟ କରାଯାଏନି । ଦାରିଦ୍ର୍ୟ କିନ୍ତୁ ସହ୍ୟ କରାଯାଏ । ଯେତେବେଳେ ଅନାହାର ବା ଅନାହାର ମୃତ୍ୟୁ ଖବର ଆସେ, ଗଣତନ୍ତ୍ରର ମୁକ୍ତ ଗଣମାଧ୍ୟମଗୁଡ଼ିକ ତତ୍ପର ହୋଇଉଠନ୍ତି । ବିରୋଧୀ ଦଳ ପାଟି କରନ୍ତି । ନ୍ୟାୟାଳୟ ପିଡ଼ୀତଙ୍କ ଦୁଃଖ ଲାଘବ ପାଇଁ ସରକାରଙ୍କୁ ନିର୍ଦ୍ଦେଶ ଦିଅନ୍ତି ଏବଂ ଶାସନରେ ଥିବା ରାଜନୈତିକ ଦଳ ଅନାହାର ଜନିତ ଗୁରୁତର

ଅବସ୍ଥା ସୁଧାରିବାରେ ଲାଗିପଡ଼ନ୍ତି । ତଥାପି ମଧ୍ୟ ଅନାହାର ମୃତ୍ୟୁ ହୁଏ । କାରଣ ଏଠି ଦରିଦ୍ର୍ୟ ଅଛି ଏବଂ ଦାରିଦ୍ର୍ୟ ହିଁ ଅନାହାର ସୃଷ୍ଟି କରେ ।

ଦାରିଦ୍ର୍ୟ ପ୍ରତି ଗଣତନ୍ତ୍ର ଏତେ ସହିଷ୍ଣୁ କାହିଁକି, ଏହାର ଉତ୍ତର ଖୋଜିବାକୁ ଗଲେ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କର ଏକ ତାଲିକା ଦେଖିବାକୁ ମିଳେ, ଯେଉଁଠି ଦଶନ୍ଧି ଦଶନ୍ଧି ଧରି ଗଣତାନ୍ତ୍ରିକ ଶାସନ ଚାଲିଥିଲେ ବି ଦାରିଦ୍ର୍ୟର ସ୍ତର କମି ନାହିଁ ।

ଏଇ ତାଲିକା ଠିକ୍ ଏମିତି – ଦାରିଦ୍ର୍ୟ ସୀମାରେଖା ତଳେ ଭାରତର ୩୫ ପ୍ରତିଶତ ଲୋକ ଅଛନ୍ତି । ଶ୍ରୀଲଙ୍କାରେ ଏହା ୨୫ ପ୍ରତିଶତ । ଫିଲିପାଇନ୍ସରେ ଏଇ ସଂଖ୍ୟା ୩୭ ପ୍ରତିଶତ ଥିବା ବେଳେ ଜାମାଇକାରେ ଏହା ୩୪ ପ୍ରତିଶତ । ତ୍ରିନିଦାଦ୍, କୋଷ୍ଟାରିକା ଏବଂ ଭେନେଜୁଏଲାରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ସଂଖ୍ୟା ଯଥାକ୍ରମେ ୨୧, ୨୨ ଏବଂ ୩୩ ପ୍ରତିଶତ । (ସୌଜନ୍ୟ : ଏ. ଭର୍ସନେ – ହ୍ୱାଇ ହାବ୍ ପୋର୍ ଡେମୋକ୍ରାସିସ୍ ନଟ୍ ଏଲିମିନଟେଡ୍ ପଭର୍ଟି – ଏସିଆନ୍ ସର୍ଭେ)

ଦାରିଦ୍ର୍ୟ ସୀମାରେଖା ତଳେ ଏତେ ପ୍ରତିଶତ ଲୋକ ରହିବା ହେଉଛି ଗଣ ଦାରିଦ୍ର୍ୟର ସୂଚନା । ବର୍ଷ ବର୍ଷର ଗଣତନ୍ତ୍ର ଏବଂ ଗଣତାନ୍ତ୍ରିକ କମିଟ୍‌ମେଣ୍ଟ ଦାରିଦ୍ର୍ୟ ଦୂରୀକରଣକୁ ଶୂନ୍ କରିପାରିନାହିଁ । କାରଣ କ'ଣ ବୋଲି ପ୍ରଶ୍ନ ତେଣୁ ଆସେ ।

ମୁଖ୍ୟ କାରଣଟି ହେଉଛି, ଗଣତନ୍ତ୍ରରେ ରାଜନୈତିକ ଶାସକମାନେ ଦାରିଦ୍ର୍ୟର ବିନାଶ ପାଇଁ ଦାରିଦ୍ର୍ୟ ଉପରେ ପ୍ରତ୍ୟକ୍ଷ ଆକ୍ରମଣ କରନ୍ତି । ପରୋକ୍ଷ ଆକ୍ରମଣ ନୁହେଁ । ଯେହେତୁ ପ୍ରତ୍ୟକ୍ଷ ଆକ୍ରମଣ ଦୀର୍ଘ ସ୍ଥାୟୀ ନୁହେଁ କିମ୍ବା ଶକ୍ତ ବା ପ୍ରଭାବଶାଳୀ ନୁହେଁ, ସେଇଥିପାଇଁ ଦାରିଦ୍ର୍ୟର ସ୍ତର ହ୍ରାସ ହୁଏ ନାହିଁ । ପରୋକ୍ଷ ଆକ୍ରମଣରେ କିନ୍ତୁ ଦାରିଦ୍ର୍ୟ କମେ ।

ପ୍ରତ୍ୟକ୍ଷ ଆକ୍ରମଣରେ ସାମିଲ ଅଛି ସବ୍‌ସିଡି, ଚାକିରି ସଂରକ୍ଷଣ, ଗରିବ ଲୋକଙ୍କୁ ସମ୍ପତ୍ତି ବା ଆସେଟ୍ ହସ୍ତାନ୍ତର ଏବଂ ଶସ୍ତା ଋଣ ସ୍କିମ୍ । ୧୯୫୦ ମସିହାରୁ ଏଇ କାର୍ଯ୍ୟକ୍ରମ ଭାରତରେ ଚାଲିଛି । ୧୯୭୦ ଦଶକରେ ଏଇ ପ୍ରୋଗ୍ରାମକୁ ଇନ୍ଦିରା ଗାନ୍ଧୀ ଗରିବୀ ହଟାଓ ଡାକରା ଦେଇ ତ୍ୱରାନ୍ୱିତ ବି କରିଥିଲେ । ଗରିବୀ ହଟିନାହିଁ ।

ଏଇ ସ୍କିମ ସବୁ ନିଷ୍ଠାର ସହ ଲାଗୁ ହେଲେ ଦାରିଦ୍ର୍ୟ କମି ପାରନ୍ତା । ବିଡମ୍ବନା ଯେ ଏ ଯୋଜନାର ସଫଳ ରୂପାୟନ ଏବଂ ଏହାର ସାମାଜିକ ଉଦ୍ଦେଶ୍ୟ ପୂରଣ ପାଇଁ ସ୍ୱାର୍ଥହୀନ ପ୍ରତିବଦ୍ଧତା ଗଣତାନ୍ତ୍ରିକ ରାଜନୀତିରେ ପ୍ରାୟ ନାହିଁ ।

ଯାହା ଜଣାଯାଏ, ସରକାରୀ ସବ୍‌ସିଡିକୁ ବେଶି ଅଣଗରିବ ଲୋକ ଉପଭୋଗ କରନ୍ତି ଏବଂ ଆର୍ଥିକ ପପୁଲିଜିମ୍ ଆଳରେ ଯେଉଁ ରିହାତି ଛାଡ ଏବଂ ଅନୁଦାନ ବିପିଏଲ୍‌ମାନଙ୍କୁ ଦିଆଯାଏ ତାକୁ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ଲୋକମାନେ ହିଁ ପାଆନ୍ତି ।

ଚାକିରୀ ସଂରକ୍ଷଣର ଅବସ୍ଥା ମଧ୍ୟ ଠିକ୍ ସେଇଆ । ପ୍ରକୃତରେ ଏହାର ସୁବିଧା ଦରକାର କରୁଥିବା ଏବଂ ଦାରିଦ୍ର୍ୟର ଅକ୍ଟୋପାସ୍‌ରେ ବାନ୍ଧି ହୋଇପଡିଥିବା ସଂରକ୍ଷିତ ବ୍ୟକ୍ତିକୁ ମିଳେ ନାହିଁ । ଚାକିରି ସଂରକ୍ଷଣ ନେଇ ଯେଉଁ ହିତାଧିକାରୀ ମାନଙ୍କର ଆର୍ଥିକ ଉନ୍ନତି ହୋଇ ସାରିଥାଏ, ଅନ୍ୟ ଭାଷାରେ ଯାହାକୁ କ୍ରିମିଲେୟାର୍ କହନ୍ତି ସେମାନେ ଏଇ ସଂରକ୍ଷଣର ଫାଇଦା ନିଅନ୍ତି ।

ଦାରିଦ୍ର୍ୟ ଦୂରୀକରଣ ଯୋଜନା ସମ୍ପର୍କରେ କିଛି ପ୍ରତିକୂଳ ସୂଚନା ଆସେ । ସତକଥା ହେଲା, ଏଇସବୁ କାର୍ଯ୍ୟକ୍ରମରେ ଏଠି ଅପଚୟ ବେଶି । ଭ୍ରଷ୍ଟାଚାର ଗୁରୁତର ଏବଂ ଏଇ ପ୍ରୋଗ୍ରାମର ଛିଦ୍ର ଏତେ ଅଧିକ ଯେ ଏଇ ଛିଦ୍ର ଦେଇ ଅନେକ ସୁବିଧା ଅଣ ହିତାଧିକାରୀଙ୍କ ପାଇଁ ବାହାରକୁ ବାହାରିଯାଏ ।

ସବୁଠାରୁ ବଡ କଥା ହେଲା - ଭାରତୀୟ ରାଜନେତାମାନେ ତାଙ୍କ ଭୋଟରମାନଙ୍କୁ ଘରୋଇକରଣ, ଉଦାରୀକରଣ ଏବଂ ଜଗତୀକରଣ ପ୍ରଭାବ, ଅଭାବ ଏବଂ ପରିଣତି ସମ୍ପର୍କରେ କିଛି କହନ୍ତି ନାହିଁ । ବରଂ ସବ୍‌ସିଡି, ଋଣଛାଡ଼, ଚାକିରି ସଂରକ୍ଷଣ ଉପରେ ସେମାନେ ଭୋଟଦାତାଙ୍କୁ ସବିସ୍ତୃତ ବିବରଣୀ ଦେଇ ଦିଅନ୍ତି । ଏଥିପାଇଁ ଯେ କେଉଁ ଦଳ କେଉଁଥିରେ କେତେ ଛାଡ କଲା ଏବଂ କେଉଁ ଦଳ କେତେ ଶସ୍ତା ପ୍ୟାକେଜ୍ ତଥା ରିଜର୍ଭେସନ୍ ଦେଲା ଏହାକୁ ଆଧାର କରି ଏଠି ଭୋଟରମାନେ ରାଜନୈତିକ ଦଳ ତଥା ରାଜନେତାଙ୍କୁ ଚିହ୍ନନ୍ତି ଏବଂ ସେମାନଙ୍କୁ ମନେ ରଖି ନିର୍ବାଚନରେ ଭୋଟ ଦିଅନ୍ତି ।

ଗଣତାନ୍ତ୍ରିକ ରାଜନେତାମାନେ ତେଣୁ ଦାରିଦ୍ର୍ୟର ଅବସାନ ପାଇଁ ଦାରିଦ୍ର୍ୟ ଉପରେ କୌଣସି ସ୍ଥାୟୀ ଆକ୍ରମଣକୁ ପସନ୍ଦ କରନ୍ତି ନାହିଁ । ସ୍ଥାୟୀ ଆକ୍ରମଣ କହିଲେ ଯାହା ପରୋକ୍ଷ ଆକ୍ରମଣରେ ଥାଏ, ଯେଉଁଠି ଆର୍ଥିକ ଅଭିବୃଦ୍ଧି ହାର କିପରି ବଢ଼ିବ ତା ଉପରେ ଗୁରୁତ୍ୱ ଥାଏ ଏବଂ ଶିକ୍ଷା ତଥା ସ୍ୱାସ୍ଥ୍ୟ କ୍ଷେତ୍ରରେ ପୁଞ୍ଜିନିବେଶ ନେଇ ଯେଉଁଠି ବ୍ୟବସ୍ଥା ଥାଏ । ଭାରତର ଶିକ୍ଷା ଏବଂ ସ୍ୱାସ୍ଥ୍ୟ ସେକ୍ଟରର ଭିତ୍ତିଭୂମି ଗଠନ

ନିମନ୍ତେ ପୁଞ୍ଜି ବିନିଯୋଗ ଅଧିକ ହୋଇଥିଲେ ବି ଏହାର ଲିକେଜ୍ ଏତେ ଅଧିକ ଯେ ଯୋଜନାର ସୁଫଳ ମିଳେ ନାହିଁ । ଗଣତାନ୍ତ୍ରିକ ଭାରତରେ ଦାରିଦ୍ର୍ୟ ଦୂରୀକରଣ ପାଇଁ ଯେଉଁ ପ୍ରତ୍ୟକ୍ଷ ଆକ୍ରମଣ ହୁଏ ଏହା କେବଳ ଦାରିଦ୍ର୍ୟର ଯନ୍ତ୍ରଣାକୁ ଉପଶମ କରେ; ମାତ୍ର ଦାରିଦ୍ର୍ୟକୁ ଭଲ କରେ ନାହିଁ ।

ଏ ଯୁକ୍ତି ଜାଣି ସାରିବା ପରେ ଗଣତନ୍ତ୍ର ପ୍ରତି ବିମୁଖ ଥିବା କିଛି ବିଶ୍ଳେଷକ କହିପାରନ୍ତି, ଦାରିଦ୍ର୍ୟ ଦୂରୀକରଣ ପାଇଁ ତେଣୁ ଏକଛତ୍ରବାଦୀ ଶାସନ ଦରକାର । ଠିକ୍ ଯେମିତି ଚୀନ, ସିଙ୍ଗାପୁର, ମାଲେସିଆରେ ହେଉଛି ।

ଏହା କିନ୍ତୁ ସାର୍ବଜନୀନ ସତ୍ୟ ନୁହେଁ । ଉତ୍ତର କୋରିଆ, ପାକିସ୍ତାନ, ମିଆଁମାର, ଆଫ୍ରିକା ଏବଂ ଲାଟିନ୍ ଆମେରିକାର ଅନେକ ରାଷ୍ଟ୍ରରେ ଏକଛତ୍ରବାଦୀ ଶାସନ ଥିଲେ ବି ଏ ଦେଶରୁ ଦାରିଦ୍ର୍ୟ କମିନାହିଁ । ଅଥଚ ଆଫ୍ରିକାର ବୋଷ୍ଟୱାନାରେ କେବଳ ଗଣତନ୍ତ୍ର ଯୋଗୁଁ ହିଁ ଏଠି ହୋଇଥିବା ଆର୍ଥିକ ବିକାଶ ଯେକୌଣସି ଉନ୍ନତ ରାଷ୍ଟ୍ର ଠାରୁ ଅଧିକ । କଥା କହିବାର ଅଧିକାର ମାଗିଲେ ଚୀନ୍‌ରେ ଟିନାନ୍‌ମେନ ସ୍କୋୟାରରେ ଦିନେ ହଜାର ହଜାର ଆନ୍ଦୋଳନକାରୀଙ୍କ ଉପରେ ଟ୍ୟାଙ୍କ ଚଢ଼ାଇ ତାଙ୍କୁ ମାରିଦିଆଯାଇଥିଲା । ଆର୍ଥିକ ସ୍ୱାଧୀନତାର ସେଠି ମାନେ ତେଣୁ କ'ଣ ?

ସୁତରାଂ ଭାରତର ସର୍ବାଙ୍ଗୀନ ବିକାଶ ପାଇଁ ଗଣତନ୍ତ୍ରର ବିକଳ୍ପ କିଛି ନାହିଁ । କିନ୍ତୁ କେବଳ ମୁକ୍ତ ଭୋଟ ଏବଂ ନିର୍ବାଚନ ଯେ ଗଣତନ୍ତ୍ର ତାହା ବି ଠିକ୍ ନୁହେଁ । ଗରିବଙ୍କ ଏଠି ସଶକ୍ତିକରଣ ହେବା ଜରୁରୀ । ସଶକ୍ତିକରଣ ଅର୍ଥ ଯେଉଁ ଅନୁଷ୍ଠାନମାନ ସାଧାରଣ ଲୋକର ଜୀବନ ଶୈଳୀକୁ ପ୍ରଭାବିତ କରେ ସେଥିରେ ଗରିବଙ୍କର ଅଂଶଗ୍ରହଣ, ପ୍ରଭାବ ଏବଂ ନିୟନ୍ତ୍ରଣ ରହିବା ଦରକାର । ଏଇଟା ହିଁ ସାମାଜିକ ଗଣତନ୍ତ୍ର – ସୋସିଆଲ୍ ଡେମୋକ୍ରାସି । ରାଜନୈତିକ ସ୍ୱାଧୀନତା ଏବଂ ଅର୍ଥନୈତିକ ସ୍ୱାଧୀନତାର ଏଠି ସୁସ୍ଥ ସହାବସ୍ଥାନ ହୋଇଥାଏ । ଏହା ଗଣ ଦାରିଦ୍ର୍ୟର ଶତ୍ରୁ ।



## ଲେଖକ ପରିଚିତି :

| | |
|---|---|
| ନାମ | : ଗୌରାଙ୍ଗ ଚରଣ ପରିଡ଼ା |
| ପିତା | : ସ୍ୱର୍ଗତ ଚିନ୍ତାମଣି ପରିଡ଼ା |
| ମାତା | : ସ୍ୱର୍ଗତା ନିଶାମଣି ଦେବୀ |
| ଜନ୍ମସ୍ଥାନ | : ବରକେରା, ଡ଼େଲାଙ୍ଗ, ଜି.: ପୁରୀ |
| ବର୍ତ୍ତମାନ ବାସସ୍ଥାନ | : ସର୍ବୋଦୟ ନଗର, ପୁରୀ |
| ଜନ୍ମ ତାରିଖ | : ଫାଲଗୁନ ଶୁକ୍ଳ ଦ୍ୱିତୀୟା, ୧୯୫୪ ମସିହା |
| ଶିକ୍ଷାଗତ ଯୋଗ୍ୟତା | : ଏମ୍.ଏ., ଏଲ୍.ଏଲ୍.ବି. |
| ବୃତ୍ତି | : ଆଡ଼ଭୋକେଟ୍ |

ସାହିତ୍ୟ କୃତି : ସମୟ ସୁଅ, ଗାନ୍ଧୀ ଚର୍ଚ୍ଚା, ମୋହନରୁ ମହାତ୍ମା ।

ସାଂଗଠନିକ ପଦବୀ : ଜାତୀୟ ଅଡ଼ିଟ୍ ମହାସଂଘର ପ୍ରାକ୍ତନ ରାଷ୍ଟ୍ରୀୟ ଅଧ୍ୟକ୍ଷ ଓ ପ୍ରାକ୍ତନ୍ ରାଷ୍ଟ୍ରୀୟ ମହାସଚିବ

ପୁରସ୍କାର ଓ ସମ୍ମାନ : ସ୍ତମ୍ଭ ଲେଖା ତଥା ସାମାଜିକ ସେବା ପାଇଁ ଉତ୍କଳ ନକ୍ଷତ୍ର ସମ୍ମାନ-୨୦୦୯, ପ୍ରିୟପତ୍ର ସମ୍ମାନ - ୨୦୦୯

ପୁରୀ ଜିଲ୍ଲା ସାମ୍ବାଦିକ ସଂଘ ସମ୍ମାନ : ୨୦୧୨, ଶ୍ରୀଜଗନ୍ନାଥ ସଂସ୍କୃତି ସୁରକ୍ଷା ବାହିନୀ ପ୍ରଦତ୍ତ ପ୍ରାଇଡ୍ ଅଫ୍ ଶ୍ରୀକ୍ଷେତ୍ର ସମ୍ମାନ-୨୦୧୩ , ପ୍ରତିଭା ପୂଜା ପରିଷଦ, ପୁରୀ ସମ୍ମାନ ଏବଂ କିଛି ସାମାଜିକ ଅନୁଷ୍ଠାନ ଦ୍ୱାରା ବିଶେଷ ସମ୍ବର୍ଦ୍ଧିତ ।